ହୀରକ ଲିପି

ପ୍ରକାଶକ:
ପୁରାତନ ଛାତ୍ର ସଂସଦ
ଫକୀରମୋହନ ମହାବିଦ୍ୟାଳୟ
ବାଲେଶ୍ୱର

୨୧ ମାର୍ଚ୍ଚ, ୨୦୦୪

ଅକ୍ଷରସଜ୍ଜା:
ସୃଜନୀ, ବାଲେଶ୍ୱର

ମୁଦ୍ରଣ:
ସମର୍ ଗ୍ରାଫିକ୍ସ
ସହଦେବଖୁଣ୍ଟା,ବାଲେଶ୍ୱର




Cover art: Late Gopal Kanungo

**HIRAKA LIPI**

Publisher:
**ALUMNI ASSOCIATION**
**Fakir Mohan College**
**Balasore**

**21 March, 2004**

Editor in Chief
**Chandra Kumar Mohanty**



D.T.P. :
**Srujani, Balasore**

Printed by
**Samar Graphics**
Sahadevkhunta, Balasore

## ପ୍ରଚ୍ଛଦ ଚିତ୍ର :

ଫକୀରମୋହନ କଲେଜର ମୁଖପତ୍ର The Fakirର

୧୯୬୭-୬୮ ସଂଖ୍ୟାରେ ପ୍ରକାଶିତ ପ୍ରଚ୍ଛଦଚିତ୍ରର ପୁନର୍ମୁଦ୍ରଣ

● ●

## ପ୍ରଚ୍ଛଦ-ପାଦଟୀକା

ଚିତ୍ତଚୋର ଚୋରଗଙ୍ଗଙ୍କ ପାଇଁ
ପ୍ରେମ-ପୂଜାରିଣୀ ରାଜନନ୍ଦିନୀ ନନ୍ଦିକାଙ୍କ ଅଭିସାର
ଶିଳ୍ପୀ : ଗୋପାଳ କାନୁନ୍‌ଗୋ

''ନିଃଶଙ୍କେ ସମର୍ପି ଦେଲି ମୁଁ ସକଳ
ପ୍ରତିଦାନେ ପ୍ରେମ ମାଗୁଛି କେବଳ''
**(ନନ୍ଦିକେଶ୍ୱରୀ : କବିବର ରାଧାନାଥ ରାୟ)**

''ନାରୀ ସଦା ନାରୀ
ଏଇ ମନ୍ତ୍ର ଇତିହାସେ ହେ ରାଜକୁମାରି !
ଦେଇଅଛ ତୁମେ ଉପହାର
ଏଇ ତମ ବଞ୍ଚିବାର ଚରମ କୌଶଳ ।

ହେ ନନ୍ଦିକା ! ରାଜାର ନନ୍ଦିନି !
ବ୍ୟର୍ଥ ପୂଜାରିଣି !
ତୁମେ କି ଜାଣିଚ ନିଜେ
କେବେ ତୁମେ ଯାଇଅଛ ମରି,
ତୁମ ସାଥେ ମରିଅଛି
ଅଚକିତେ ଶତାବ୍ଦୀ ତୁମରି !''
**(ଅସମାପିକା : ସଚ୍ଚି ରାଉତରାୟ)**

Reprinted
from 'The Fakir' - 1967-68

# THE COVER PAGE

The picture on the cover depicts a scene from Nandikeswari a long narrative poem by Radhanath Ray (1848-1908), the pioneer of modern Oriya poetry. Nandika, the tragic heroine of the poem was a victim of unrequited love. The only daughter of Subarna Kesari, she fell madly in love with Choraganga who had laid siege to her father' fortress at Bidanasi. The story commences with the composition of the armies and the description of the fierce fight and the long-drawn-out siege. After repeated reverses, Subarna Kesari confined himself to the fort which was rendered impregnable by a magic jewel, the gift from Goddess Chandika. No wonder, the king wore the charm on his crown and would not part with it for life. Sorely disappointed the prince from the south at last decided to give up the siege and return home. Throughout the night he sat brooding as he waited for the morning .

The news of Chorogangas' projected withdrawal and departure fill the heart of Subarna Kesari and his followers with joy. There was great jubilation everywhere. But Nandika was plunged in immeasurable sadness. For, watching from her attic the battle, her eyes has fallen on the handsome prince and she had unwittingly given her heart away to him. She had nourished a fond hope that, some day, Choroganga would be able to enter the fort and take her as the prize of victory. But alas ! This was not to be; because her father as well as the fortress was fortified by the divine charm. The infatuated princess suddenly lighted upon a strange and rash plan and determined to meet the young prince in his camp. She cast off her jingling anklets and stealthily entering into the king's bed chamber stole the gem away from the crown of her father which has made him invincible. She had in her possession the key to the secret passage that led to the river which was used by women-folk. She wanted to make a gift of the gem to the brave hero to enable him to conquer the fort. Casting aside all sense of shame and fear (such is a woman in love !) the doting lady went out regardless of consequences and hazards.

It was past mid-night. The world was plunged in gloom and silence. Love had made Nandika bold. Her soft feet trod upon thorny paths. Undaunted, she proceeded in darkness like a column of water-fire in the dark-blue sea. Holding the magic gem in hand, as she approached the enemy camp, the moon rose and the eastern horizon was soon aglow with moonshine. She looked an embodiment of beauty created out of moonlight. She far surpassed the beauty and freshness of autumn dawn. Being scantily ornamented, she appeared like the full moon heaven that adorns herself with only a few stars. She was like a moving **sal** sprout, young, tall and slender. Narrow her was waist, smooth and tapering like plantain trees were her thighs and lotus-buds were her bosoms. Her feet were tinged red and her hairs were dark-blue, her body exhaled fragrance of the autumnal breeze heavy with the scent of Gangaseuli flowers.

Such was the charming heroine of Radhanath's poem. The rest of the story is easily told. The noble prince spurned the mad girl's overtures of love, called her a traitor to the king, country and father and sent her back with the gem to her father in a palanquin duly escorted. The shock proved too much for the girl to bear and she was found cold and dead.

The picture on the cover shows Nandika going to meet Choroganga. It is reproduced from a coloured painting by Sri Gopal Chandra Kanungo, the most outstanding artist and painter of Orissa. He was an art teacher of the Balasore Zilla School (now Fakir Mohan college) and had probably made a presentation of the painting to the institution. The editors found it in soiled and near-moth-eaten condition and chose to preserve it in the college magazine in the same way as his painting of 'Usha' another heroine of Radhanath is preserved in the cover page of the school magazine named after her.

While acknowledging our deep debt of gratitude to the master artist and painter we apologize to him for our small acts of vandalism perpetrated on his picture by cutting it to size and changing the soft and mellow tone and colour of the original to deeper shades to favour good reproduction.

**Basant Kumar Satpathy**

# SUCCESSION LIST OF PRINCIPALS
## F. M. COLLEGE, BALASORE

| No. | Name | From | | To |
|---|---|---|---|---|
| 1. | Shri B. N. Rohatgi | 1944 July | to | 1944 August |
| 2. | Shri K. M. Dwivedi | 1944 Sept. | to | 1947 July |
| 3. | Shri G. S. Roy | 1947 July | to | 1948 May |
| 4. | Shri B. N. Rohatgi | 1948 May | to | 1948 November |
| 5. | G. S. Dash | 1948 Nov. | to | 1948 December |
| 6. | Mr. V.V. John | 1948 Dec. | to | 1950 Sept. |
| 7. | Mr. P. S. Sundaram | 1950 Sept. | to | 1953 May |
| 8. | Dr. D. Mishra | 1953 May | to | 1954 July |
| 9. | Sardar G. Singh | 1954 June | to | 1957 August |
| 10. | Dr. P. Pradhan | 1955 June | to | 1957 August |
| 11. | Shri G. Mishra | 1957 August | to | 1957 Nov. |
| 12. | Mr. M. A. John | 1957 Nov. | to | 1962 July |
| 13. | Shri A.C. Bir | 1962 July | to | 1965 Sept. |
| 14. | Shri R. C. Rajguru | 1965 Sept. | to | 1967 July |
| 15. | Sri K. P. A. Pilai | 1967 July | to | 1971 August |
| 16. | Major R. C. Pattinaik | 1971 August | to | 1973 Feb. |
| 17. | Shri K. P. Nigam | 1973 Feb | to | 1975 July |
| 18. | Mr. S. A Mannan | 1975 July | to | 1983 Jan. |
| 19 | Shri K. K. Mukherjee | 1983 March | to | 1983 July |
| 20. | Shri B. Jena | 1983 July | to | 1985 June |
| 21. | Shri P. K. Rath | 1985 July | to | 1987 Oct. |
| 22. | Shri R. C. Sahoo | 1987 Oct. | to | 1991 Jan. |
| 23. | Prof. K. C. Chatterjee | 1991 Jan. | to | 1993 Oct. |
| 24. | Prof. N. Das Basu | 1993 Oct. | to | 1993 Dec. (Officiating) |
| 25. | Prof. Gopal Ghosh | 1993 Dec. | to | 1997 April |
| 26. | Prof. K. K. Das | 1997 July | to | 1999 Jan. |
| 27. | Prof. T. K. Sinha | 1999 April | to | 1999 July |
| 28. | Prof. R. C. Samantaray | 1999 Oct. | to | 2000 Jan. |
| 29. | Prof. T. K. Sinha | 2000 March | to | 2001 Dec. |
| 30. | Prof. D. N. Rout | 2002 Feb. | to | 2003 Jan. |
| 31. | Smt. L.P. Mohanty (I/C) | 2003 Feb. | to | 2003 Nov. |
| 32. | Sri S. K. Singh (I/C) | 2003 Nov. | | continuing |

# ପୁରାତନ ଛାତ୍ର-ସଂସଦର କାର୍ଯ୍ୟନିର୍ବାହୀ ସମିତି

## ଆସନାଧୀଶ : ଅଧକ୍ଷ ପ୍ରଫେସର ସରୋଜ କୁମାର ସିଂହ

•

| | |
|---|---|
| ଶ୍ରୀ ସୁଦର୍ଶନ ନାୟକ | କାର୍ଯ୍ୟକାରୀ ସଭାପତି |
| ଶ୍ରୀ ହିଂମାଶୁ ଦାସ | ଉପସଭାପତି |
| ଶ୍ରୀ ସୁବାସ ଚନ୍ଦ୍ର ପାତ୍ର | ସଂପାଦକ |
| ଶ୍ରୀ ସତ୍ୟପ୍ରିୟ ଦାସ | ଯୁଗ୍ମସଂପାଦକ |
| ଶେଖ ସହିରୁଲ୍ ହକ୍ | ଯୁଗ୍ମସଂପାଦକ |
| ଶ୍ରୀ ଜୟନ୍ତ କୁମାର ମହାପାତ୍ର | କୋଷାଧକ୍ଷ |

•

### ସଦସ୍ୟବୃନ୍ଦ

ଶ୍ରୀ ବ୍ରଜନାଥ ରଥ
ଶ୍ରୀ ଚନ୍ଦ୍ର କୁମାର ମହାନ୍ତି
ଏମ୍.ଏ. ୱାହିଦ୍
ଶ୍ରୀ ମହେଶ୍ୱର ବାଗ୍
ଡକ୍ଟର ହରିଶ୍ଚନ୍ଦ୍ର ଜେନା
ଡକ୍ଟର ଭାଗୀରଥି ନାୟକ
ଡକ୍ଟର ରାଧା ଦେବୀ
ସୁଶ୍ରୀ ସମଲେଶ୍ୱରୀ ବର୍ଦ୍ଧନ
ଡକ୍ଟର ପ୍ରହ୍ଲାଦ ଚରଣ ମହାନ୍ତି
ଶ୍ରୀ ଚଣ୍ଡୀ ଚରଣ କର
ଡକ୍ଟର ରମାକାନ୍ତ ନାୟକ
ଶ୍ରୀମତୀ ଅନସୂୟା ନାୟକ
ଶ୍ରୀ ପ୍ରସନ୍ନ ପାଣିଗ୍ରାହୀ
ଶ୍ରୀ ଉମେଶ ଚନ୍ଦ୍ର ବାରିକ
ଡକ୍ଟର ହରିଶ୍ଚନ୍ଦ୍ର ବେହେରା
ଶ୍ରୀ ହେମେନ୍ଦ୍ର ମହାପାତ୍ର
ଶ୍ରୀ ପ୍ରବୋଧ ମହାନ୍ତି
ଶ୍ରୀ ରାମଚନ୍ଦ୍ର ନାୟକ
ଶ୍ରୀ ରଘୁନାଥ ଲେଙ୍କା
ଶ୍ରୀ ସୌରଜିତ୍ ମହାପାତ୍ର
ଶ୍ରୀ ଦେବବ୍ରତ ମହାନ୍ତି
ଶ୍ରୀ ସରୋଜ ଦାସ
ଶ୍ରୀ ନୃସିଂହ ନାୟକ
ଶ୍ରୀ ଚନ୍ଦ୍ରାଂଶୁ ବାନାର୍ଜୀ

"My Dear, it's years between; we've grown up fast
Each differently, each striving by itself.
I see you now a grey man without dreams,
Without a living, or an overcoat:
But sealed in struggle now, we are more close
Than if our bodies still were sealed in love."

**Comrade - Dorothy Livesay**



ପ୍ରତିଷ୍ଠାତା ସଭାପତି ସ୍ୱର୍ଗତ ପ୍ରଫୁଲ୍ଲ କୁମାର ରଥଙ୍କୁ ବିନମ୍ର ଶ୍ରଦ୍ଧାଂଜଳି

– ହୀରକ ଲିପି

# ସ୍ମୃତିର ଚିତ୍ରଲିପି



ଫକୀରମୋହନ ମହାବିଦ୍ୟାଳୟର ସମ୍ମୁଖ ଭାଗ



ସୁବର୍ଣ୍ଣ ସ୍ମାରକୀ ଭବନ

(ପୁରାତନ ଛାତ୍ର ସଂସଦ ତଥା କଲେଜର ଶିକ୍ଷକ-ଅଣଶିକ୍ଷକ କର୍ମଚାରୀଙ୍କ ଆର୍ଥିକ ସହାୟତା ଓ ସାଂସଦ ପାଣ୍ଠି ସାହାଯ୍ୟରେ ନିର୍ମିତ)

## ସ୍ମୃତିର ଚିତ୍ରଲିପି

# ପୁରାତନ ଛାତ୍ର ସଂସଦର ମୁଖ୍ୟ କର୍ମକର୍ତ୍ତାଗଣ



ଶ୍ରୀ ସୁଦର୍ଶନ ନାୟକ
ସଭାପତି



ଶ୍ରୀ ହିମାଂଶୁ ଦାସ
ଉପ-ସଭାପତି



ଶ୍ରୀ ଚନ୍ଦ୍ର କୁମାର ମହାନ୍ତି
ମୁଖ୍ୟ ସଂପାଦକ



ଶ୍ରୀ ସୁବାସ ଚନ୍ଦ୍ର ପାତ୍ର
ସଂପାଦକ



ଶେଖ୍ ସହିରୁଲ୍ ହକ୍
ଯୁଗ୍ମ-ସଂପାଦକ



ଶ୍ରୀ ସତ୍ୟପ୍ରିୟ ଦାଶ
ଯୁଗ୍ମ-ସଂପାଦକ



ଶ୍ରୀ ଜୟନ୍ତ କୁମାର ମହାପାତ୍ର
କୋଷାଧ୍ୟକ୍ଷ

# ସ୍ମୃତିର ଚିତ୍ରଲିପି



କଲେଜ ଡାକଘର

(ପୁରାତନ ଛାତ୍ର ସଂସଦ ଆନୁକୁଲ୍ୟରେ ବିଧାୟକ ପାଣ୍ଠିର ସହାୟତାରେ ନିର୍ମିତ)



ପୁରାତନ ଛାତ୍ର ସଂସଦ ଆନୁକୁଲ୍ୟରେ ସାଂସଦ ପାଣ୍ଠିରୁ ନିର୍ମିତ ବିଜ୍ଞାନ ଭବନ ସଂଲଗ୍ନ ନିର୍ମାଣାଧୀନ ଉତ୍ତରାୟଣ ମଂଚ

# ସୂଚୀପତ୍ର

## ଉତ୍ସବର ଅନ୍ତରାଳେ

ଆଜିକୁ ଠିକ୍ ଦଶବର୍ଷତଳେ ଆମର ପୁରାତନ ଛାତ୍ର ସଂସଦ ପକ୍ଷରୁ ଉତ୍ସାହ ଓ ଉଦ୍ଦୀପନାର ସହିତ ପାଳିତ ହୋଇଯାଇଛି ଏହି ଅନୁଷ୍ଠାନର 'ସୁବର୍ଣ୍ଣ ଜୟନ୍ତୀ' । ଏହାକୁ ସାର୍ଥକ ଓ ସ୍ମରଣୀୟ କରିବାପାଇଁ ସେମାନେ ଛାଡ଼ି ଯାଇଛନ୍ତି ସଜଡ଼ା ସ୍ମୃତିର ସ୍ନିଗ୍ଧ ସ୍ମୃତିଲିପି -'ସୁବର୍ଣ୍ଣ ସ୍ମାରକୀ' । ତାପରେ କେତେ ଘଟଣା ଓ ଅଘଟଣ ମଧ୍ୟରେ ଦଶ ବର୍ଷ ପୂରି ଗଲାଣି; ମାତ୍ର ସବୁଠୁଁ ଉଲ୍ଲେଖନୀୟ ଘଟଣାଟି ହେଲା ୨୦୦୦-୨୦୦୧ ଶିକ୍ଷାବର୍ଷରେ ଏହି ଅନୁଷ୍ଠାନଟି ସ୍ୱୟଂଶାସିତ ମହାବିଦ୍ୟାଳୟର ମାନ୍ୟତା ପାଇଛି ।

ବିଶିଷ୍ଟ ଐତିହାସିକ ଆର୍ନୋଲ୍ଡ ଟୟେନବିଙ୍କ ଭାଷାରେ ସଭ୍ୟତା ଏକ ଯାତ୍ରା; ଏହା ଏକ ବନ୍ଦର ନୁହେଁ -"Civilization is a movement and not a condition, a voyage and not a harbour."

ଆମର ଏଇ ଅନୁଷ୍ଠାନ ତାର ଷାଠିଏ ବର୍ଷ ସମୟଖଣ୍ଡ ଭିତରେ ସ୍ଥାଣୁ ହୋଇ ରହିନାହିଁ । ତାର ଅବାରିତ ଯାତ୍ରାପଥରେ ଇଏ ଗଢ଼ି ହୋଇଛି; ଆଧୁନିକ ମନର ବିକାଶ ଘଟେଇ ଗଢ଼ି ପାରିଛି କ୍ରମବର୍ଦ୍ଧିଷ୍ଣୁ ଉନ୍ନତ ସାମାଜିକତା ଏବଂ ଚଖେଇ ପାରିଛି ଶିକ୍ଷା ଓ ସଂସ୍କୃତିର ସ୍ୱାଦୁ । ଆଗଭର ହୋଇ କେତେବେଳେ ଐତିହାସିକ ଆବଶ୍ୟକତା ପୂରଣ କରିଛି ତ କେତେବେଳେ ସକ୍ରିୟ ଭାବରେ ଶିକ୍ଷା, ସାହିତ୍ୟ, ସଂସ୍କୃତି ଓ ପରମ୍ପରାର ଅଗ୍ରପଥିକ ହୋଇ ବାଟ କଢ଼େଇ ନେଇଛି ସଭ୍ୟତାର ସ୍ରୋତରେ । ତାର ଏ ଯାତ୍ରାପଥରେ ଆମର ପୁରାତନ ଛାତ୍ର ସଂସଦ କେତେବେଳେ ରେଳଧାରଣାରେ ପଏଣ୍ଟମ୍ୟାନ୍ ହୋଇ ନାଲି-ନୀଳ ବତି ଦେଖେଇଛି ତ କେତେବେଳେ ମାଣିକଗଉଡୁଣୀ ସାଜି ଦହି ପିଆଇ କାଞ୍ଚି ବିଜୟର ଗାଥା ଗାଇଛି ।

ହୀରକ ଜୟନ୍ତୀରେ ନିଜର ପଛବେଳର କଥାଗୁଡ଼ିକ ସାଉଁଟି ସଜାଡ଼ି ରଖିବାକୁ ଗଲାବେଳେ ଅନୁଷ୍ଠାନର ଏହି ଯାତ୍ରାର ବିବରଣୀ ଦେବାକୁ ଚେଷ୍ଟାକରି ଶତାଧିକ ପୁରାତନ ଛାତ୍ରଛାତ୍ରୀ ଶିକ୍ଷକମାନଙ୍କୁ ସେମାନଙ୍କର ସ୍ମୃତିଲିପି ପଠାଇବାପାଇଁ ଯଥାସାଧ ଚେଷ୍ଟା କରିଥିଲୁଁ । ଠିକଣା ଅଜଣା ଥିବାରୁ ଅନେକଙ୍କ ସହ ମଧ ଯୋଗାଯୋଗ କରାଯାଇ ପାରିନାହିଁ । ଯୋଗାଯୋଗ କରାଯାଇ ପାରିଥିଲେ ଉଦ୍ୟମଟି ନିଶ୍ଚୟ ଅଧିକ ସଫଳ ହୋଇ ପାରିଥାଆନ୍ତା; ଦୁଃଖ ରହିଗଲା । ଅତ୍ୟନ୍ତ କ୍ଷୋଭର ସହ ଏକଥା ମଧ କହିବାକୁ ପଡୁଛି ଯେ ଯୋଗାଯୋଗ କରାଯାଇଥିବା ଶତାଧିକ ଛାତ୍ରଛାତ୍ରୀ ଓ ଶିକ୍ଷକଙ୍କଠାରୁ ଆଶାଜନକ ସଂଖ୍ୟାରେ ଲେଖା ମଧ ମିଳିଲା ନାହିଁ । ଯାହା ବା ମିଳିଲା ଠିକ୍ ସମୟରେ ନମିଳିବାରୁ ଉତ୍ସବ ତାରିଖକୁ ଆଖିରେ ରଖି ପ୍ରକାଶନ ତାରିଖ ଘୁଞ୍ଚେଇ ନପାରି ତରବରରେ ପୁସ୍ତକଟିକୁ ପ୍ରକାଶ କରିବାକୁ ବାଧହେଲୁ । ଫଳରେ ଭୁଲତ୍ରୁଟି ରହିବାର ସମ୍ଭାବନାକୁ ଏଡ଼ାଇ ପାରିଲୁନି । ଗୁଣଗ୍ରାହୀ ପାଠକେ ଓ ବଂଧୁମାନେ ନିଜଗୁଣରେ କ୍ଷମା ଦେବାକୁ ଅନୁରୋଧ ।

ଏକଥା ମଧ ସତ୍ୟ ଯେ ଯେଉଁ ଉଦ୍ଦେଶ୍ୟ ନେଇ ଏହି ପୁସ୍ତକଟି ସଂକଳନ କରାଯାଇଥିବାର ସୂଚନା ଆଗରୁ ଦିଆଯାଇଛି ତାହା କିୟତ୍ ପରିମାଣରେ ପୂରଣ ହୋଇପାରିଛି ବୋଲି ସୁଧୀ ସୁହୃଦ୍‌ପାଠକମାନେ ସ୍ୱୀକାର କରିବେ ।

ଆଉ ଚାଳିଶ ବର୍ଷପରେ ପୁଣି ପାଳିତ ହେବ ଏହି ଅନୁଷ୍ଠାନର ଶତାବ୍ଦୀ ସମାରୋହ । ସେତେବେଳକୁ କାଳର ନିୟମରେ ଆମ ଭିତରୁ ଅନେକ ଦିବଂଗତ ହୋଇ ସାରିଥିବେ । ମାତ୍ର ଆମର ଏହି ସ୍ମୃତିବିଜଡ଼ିତ 'ହୀରକ ଲିପି'ହିଁ ସେତେବେଳେ ଆମର ଉତ୍ତରପିଢ଼ିଙ୍କୁ ଶୁଣେଇବ ଆମର ସ୍ମୃତିମର୍ମର ସଂଗୀତ ଓ ଚିହ୍ନେଇବ ଏହାର ଗାରିମାମୟ ଇତିହାସ ଏବଂ ଆଗକୁ ଯିବାପାଇଁ ଯୋଗାଇବ ଉତ୍ତାପ ଓ ଅମାପ ଉତ୍ସାହ ।

ଆଜି ଏମିତି ଉଲ୍ଲାସଉଚ୍ଛଳ ମଧୁର ସ୍ମୃତି ବିଜଡ଼ିତ ସ୍ୱପ୍ନାଚ୍ଛାଦିତ ଭାବାବେଶ ଭିତରେ ଆଗାମୀ ଦିନଗୁଡ଼ିକୁ ଅନେଇଲେ ସବୁ ଲାଗୁଛି ମଧୁମୟ । ସେଇଥିପାଇଁତ ଏମିତି ଏକ ପରିବେଶରେ ସେଦିନ ବିଖ୍ୟାତ ଇଂରାଜୀ କବି ତାଙ୍କର "The light of other days" କବିତାରେ ଲେଖିଥିଲେ -"Fond Memory brings the light of other days around me."

ଏହି ମଧୁମୟ ମୁହୂର୍ତ୍ତରେ ନିଜର ପଦପଦବୀ ଓ ଅଛିନାହିଁକୁ ଭୁଲି ଲାଗୁଛି ଆମେ ଫେରି ପାଇଛୁ ଏଇଠି ଛାଡ଼ି ଆସିଥିବା ସ୍ମୃତିସଙ୍କୁଳ ଆମର ଛାତ୍ରଜୀବନ; ଏଇଠି ବୁଝି ପାରୁଛୁ ସାମାଜିକ ସଂହତି ବା ପରସ୍ପର ପ୍ରତି ଶ୍ରଦ୍ଧା, ସମ୍ମାନ, ଆଦର । ଏହାହିଁ ମନକୁ କରି ପାରିଛି ବିକଶିତ ଏବଂ ମନରେ ଭରି ଦେଇଛି ସାମାଜିକ ପ୍ରତିବଦ୍ଧତା : ଏ ଉତ୍ସବର ସକଳ ସଫଳତା ।

ଏହି ସଫଳତା ରୂପାୟନର ନେପଥ୍ୟରେ ସମସ୍ତ ସହଯୋଗୀଙ୍କୁ ଆମେ ଆଜି ଗଭୀର ଶ୍ରଦ୍ଧା ଓ କୃତଜ୍ଞତାର ସହ ସ୍ମରଣ କରୁଛୁଁ ।

ବାଲେଶ୍ୱର
ତା୨୧.୦୩.୨୦୦୪

**ଚନ୍ଦ୍ର କୁମାର ମହାନ୍ତି**
ମୁଖ୍ୟ ସଂପାଦକ

## ସ୍ମୃତିର ଚିତ୍ରଲିପି



୮ମ ବାର୍ଷିକ ସମାରୋହ ଅବସରରେ ମୁଖ୍ୟ ଅତିଥି ସୌମ୍ୟରଂଜନ ପଟ୍ଟନାୟକଙ୍କ ଦ୍ୱାରା
ପ୍ରଫେସର ଚିନ୍ତାମଣି ବେହେରାଙ୍କୁ 'ଛାତ୍ର ଗୌରବ' ସମ୍ମାନ ପ୍ରଦାନ



୮ମ ବାର୍ଷିକ ସମାରୋହ ଅବସରରେ ମୁଖ୍ୟ ଅତିଥି ସୌମ୍ୟରଂଜନ ପଟ୍ଟନାୟକଙ୍କ ଦ୍ୱାରା
ଅଧ୍ୟାପିକା ସିନ୍ଧୁମତୀ ଦେବୀଙ୍କୁ 'ଛାତ୍ରୀ ଗୌରବ' ସମ୍ମାନ ପ୍ରଦାନ



ସଂସଦର ୯ମ ବାର୍ଷିକ ସମାରୋହ (୫.୧.୨୦୦୩) ତଥା ପ୍ରାକ୍ ହୀରକ ଜୟନ୍ତୀ ପାଳନ ଅବସରରେ ମୁଖ୍ୟ ଅତିଥି ମୁଖ୍ୟମନ୍ତ୍ରୀ ଶ୍ରୀଯୁକ୍ତ ନବୀନ ପଟ୍ଟନାୟକଙ୍କ ସହ ସମ୍ମାନିତ ଅତିଥି ଶ୍ରୀଯୁକ୍ତ ସହଦେବ ସାହୁ, ଅଧ୍ୟକ୍ଷ ଡକ୍ଟର ଦେବେନ୍ଦ୍ରନାଥ ରାଉତ, ସଭାପତି ଶ୍ରୀଯୁକ୍ତ ସୁଦର୍ଶନ ନାୟକ ଏବଂ ସମ୍ବର୍ଦ୍ଧିତ ପ୍ରତିଭା – ଶ୍ରୀଯୁକ୍ତ ରବୀନ୍ଦ୍ର ମୋହନ ଦାସ, ପ୍ରଫେସର ତ୍ରିଲୋଚନ ମିଶ୍ର, ଶ୍ରୀମତୀ ରାଧାଦେବୀ ଏବଂ ଶ୍ରୀଯୁକ୍ତ ଅସୀମ ବସୁ



ସଂସଦର ୯ମ ବାର୍ଷିକ ସମାରୋହ (୫.୧.୨୦୦୩) ତଥା ପ୍ରାକ୍ ହୀରକ ଜୟନ୍ତୀ ପାଳନ ଅବସରରେ ମୁଖ୍ୟ ଅତିଥି ଓଡ଼ିଶାର ମୁଖ୍ୟମନ୍ତ୍ରୀ ଶ୍ରୀଯୁକ୍ତ ନବୀନ ପଟ୍ଟନାୟକଙ୍କ ଦ୍ୱାରା ଫକୀରମୋହନଙ୍କ ତୈଳଚିତ୍ର ସମ୍ମୁଖରେ ପ୍ରଦୀପ ପ୍ରଜ୍ୱଳନ

# ସ୍ମୃତିର ଚିତ୍ରଲିପି



ପୁରାତନ ଛାତ୍ର ସଂସଦର ନବମ ବାର୍ଷିକ ସମାରୋହରେ ମୁଖ୍ୟମନ୍ତ୍ରୀ ଶ୍ରୀଯୁକ୍ତ ନବୀନ ପଟ୍ଟନାୟକଙ୍କ ଦ୍ୱାରା ଚିତ୍ରଶିଳ୍ପୀ  ଅସୀମ ବସୁଙ୍କୁ 'ଛାତ୍ର ଗୌରବ' ସମ୍ମାନରେ ସମ୍ମାନିତ କରାଯାଉଛି



ପୁରାତନ ଛାତ୍ର ସଂସଦର ନବମ ବାର୍ଷିକ ସମାରୋହରେ ମୁଖ୍ୟମନ୍ତ୍ରୀ ଶ୍ରୀଯୁକ୍ତ ନବୀନ ପଟ୍ଟନାୟକଙ୍କ ଦ୍ୱାରା ପ୍ରଫେସର ତ୍ରିଲୋଚନ ମିଶ୍ରଙ୍କୁ  'ଶିକ୍ଷକ ଗୌରବ' ସମ୍ମାନ ପ୍ରଦାନ

# ସ୍ମୃତିର ଚିତ୍ରଲିପି



ପୁରାତନ ଛାତ୍ର ସଂସଦର ନବମ ବାର୍ଷିକ ସମାରୋହରେ ମୁଖ୍ୟମନ୍ତ୍ରୀ ଶ୍ରୀଯୁକ୍ତ ନବୀନ ପଟ୍ଟନାୟକଙ୍କ ଦ୍ୱାରା ସ୍ୱାଧୀନତା ସଂଗ୍ରାମୀ ରବୀନ୍ଦ୍ର ମୋହନ ଦାସଙ୍କୁ ସମ୍ବର୍ଦ୍ଧନା



ପୁରାତନ ଛାତ୍ର ସଂସଦର ନବମ ବାର୍ଷିକ ସମାରୋହରେ ମୁଖ୍ୟମନ୍ତ୍ରୀ ଶ୍ରୀଯୁକ୍ତ ନବୀନ ପଟ୍ଟନାୟକଙ୍କ ଦ୍ୱାରା ଡାକ୍ତର ରାଧାଦେବୀଙ୍କୁ 'ଛାତ୍ରୀ ଗୌରବ' ସମ୍ମାନ ପ୍ରଦାନ

## ସ୍ମୃତିର ଚିତ୍ରଲିପି



ସମ୍ମାନିତ ଅତିଥି ମନୋଜ ଦାସଙ୍କ ସହିତ ବ୍ରଜନାଥ ରଥ, ଚନ୍ଦ୍ରକୁମାର ମହାନ୍ତି ଓ ଡଃ ହରିଶ୍ଚନ୍ଦ୍ର ଜେନା



ମନୋଜ ଦାସ ଅଭିନନ୍ଦନ ସମିତି ଅଫିସରେ କଥାଶିଳ୍ପୀ ଶ୍ରୀଯୁକ୍ତ ମନୋଜ ଦାସଙ୍କ ସହ ଫକୀରମୋହନ କଲେଜର କର୍ମଚାରୀ ତଥା ପୁରାତନ ଛାତ୍ରଛାତ୍ରୀଗଣ (୪.୧୧.୨୦୦୧)

# ସ୍ମୃତିର ଚିତ୍ରଲିପି



ବିଜ୍ଞାନ ଭବନ ଉଦ୍‌ଘାଟନ ଉତ୍ସବ ଅବସରରେ ସାଂସଦ ଖାରବେଳ ସ୍ୱାଇଁଙ୍କ ଦ୍ୱାରା ଫକୀରମୋହନଙ୍କ ତୈଳଚିତ୍ର ସମ୍ମୁଖରେ ପ୍ରଦୀପ ପ୍ରଜ୍ୱଳନ




ବାଲେଶ୍ୱର ସାଂସଦ ଖାରବେଳ ସ୍ୱାଇଁଙ୍କ ଆଞ୍ଚଳିକ ଉନ୍ନୟନ ପାଣ୍ଠି ସହାୟତାରେ ପୁରାତନ ଛାତ୍ର ସଂସଦ ଦ୍ୱାରା ନିର୍ମିତ ବିଜ୍ଞାନ ଭବନର ଶୁଭ ଉଦ୍‌ଘାଟନ ଅବସରରେ ସାଂସଦ ଶ୍ରୀ ସ୍ୱାଇଁ, ସ୍ୱାଧୀନତା ସଂଗ୍ରାମୀ ରବୀନ୍ଦ୍ରମୋହନ ଦାସ, ବାଲେଶ୍ୱର ଜିଲ୍ଲାପାଳ ବିଶାଳ ଦେବ, ଅଧ୍ୟକ୍ଷ ଡକ୍ଟର ଦେବେନ୍ଦ୍ର ନାଥ ରାଉତ, ସଭାପତି ସୁଦର୍ଶନ ନାୟକ ଓ ସଂପାଦକ ସୁବାସ ଚନ୍ଦ୍ର ପାତ୍ର




ବାଲେଶ୍ୱର ସାଂସଦ ଖାରବେଳ ସ୍ୱାଇଁଙ୍କ ଦ୍ୱାରା 'ସୁବର୍ଣ୍ଣ ସ୍ମାରକୀ ଭବନ' ଉଦ୍‌ଘାଟନ (୪.୨.୨୦୦୧)



ବିଜ୍ଞାନ ଭବନର ଉଦ୍‌ଘାଟନ ଉତ୍ସବ : ୧୫-୧୧-୨୦୦୨



ବିଧାୟକ ପାଣ୍ଠି ସହାୟତାରେ ଫକୀରମୋହନ କଲେଜ ପୂରାତନ ଛାତ୍ର ସଂସଦ ଆନୁକୂଲ୍ୟରେ ନିର୍ମିତ ଡାକଘର ସ୍ୱାଧୀନତା ସଂଗ୍ରାମୀ ରବୀନ୍ଦ୍ର ମୋହନ ଦାସଙ୍କ ଦ୍ୱାରା ଉଦ୍‌ଘାଟନ




ଫକୀରମୋହନ କଲେଜର ଅବସରପ୍ରାପ୍ତ ଅଧକ୍ଷ ଡକ୍ଟର ଦେବେନ୍ଦ୍ରନାଥ ରାଉତଙ୍କୁ ବିଦାୟ ସମ୍ବର୍ଦ୍ଧନା

# 'ଅରୁଣ'ରୁ 'ଫକୀର' : ଅନେକ ଦୂର

### ଶ୍ରୀ ବ୍ରଜନାଥ ରଥ

ଯେକୌଣସି ଅନୁଷ୍ଠାନର 'ମୁଖପତ୍ର' ହିଁ ଏହାର 'ମୁଖପାତ୍ର'ର ଭୂମିକା ଗ୍ରହଣ କରିଥାଏ । ତାହାରି ମାଧ୍ୟମରେ ହିଁ ପ୍ରକାଶିତ ହୋଇଥାଏ ସେହି ଅନୁଷ୍ଠାନ ସଂପର୍କୀୟ ନାନାକଥା । ଗୋଟିଏ ଶିକ୍ଷାନୁଷ୍ଠାନର 'ମୁଖପତ୍ର' ବା ଏଥିରୁ ବାଦଯିବ କିପରି ? ଆଜି ଯେତେବେଳେ ଆମ ମହାବିଦ୍ୟାଳୟ ଷାଠିଏ ବର୍ଷ ପରେ ପାଳନ କରୁଛି 'ହୀରକ ଜୟନ୍ତୀ',ସେତେବେଳେ ତାର ଐତିହ୍ୟକୁ ଅକ୍ଷରରେ ବାନ୍ଧି ରଖିଥିବା 'ମୁଖପତ୍ର' ସଂପର୍କରେ କିଞ୍ଚିତ୍ ଆଲୋଚନା କରିବାର ଆବଶ୍ୟକତା ଅନୁଭବ କରୁଛି ।

୧୯୪୪ ମସିହାରେ ଓଡ଼ିଶାର ଶିକ୍ଷାମନ୍ତ୍ରୀ ଥାଆନ୍ତି ସତ୍ୟବାଦୀର ଅନ୍ୟତମ ସାଧକ, ପଣ୍ଡିତ ଗୋପବନ୍ଧୁଙ୍କ ଅନ୍ୟତମ ସଖା, ଯଶସ୍ୱୀ ସାରସ୍ୱତ ସ୍ରଷ୍ଟା ପଣ୍ଡିତ ଗୋଦାବରୀଶ ମିଶ୍ର । ସେ ଓଡ଼ିଶାରେ ଏକ ବିଶ୍ୱବିଦ୍ୟାଳୟ ପ୍ରତିଷ୍ଠାର ଆବଶ୍ୟକତାକୁ ଅନୁଭବ କରିବା ସଂଗେସଂଗେ, ବାଲେଶ୍ୱର, ପୁରୀ ଓ ସମ୍ବଲପୁରରେ ପ୍ରଥମେ ତିନୋଟି ମହାବିଦ୍ୟାଳୟ ପ୍ରତିଷ୍ଠା ପାଇଁ ଦାବି କରିବାକୁ ସେଇସବୁ ଅଞ୍ଚଳର ବୁଦ୍ଧିଜୀବୀ ମାନଙ୍କୁ ଆହ୍ୱାନ କଲେ । ଏହାର ଫଳ ସ୍ୱରୂପ ବାଲେଶ୍ୱରରେ ଏ ସଂପର୍କରେ ଏକ ପ୍ରାଥମିକ ଆଲୋଚନା ସଭା ଜିଲ୍ଲାସ୍କୁଲ ହଲ (ଆଜିର ଫ.ମୋ. କଲେଜ ହଲ) ରେ ଅନୁଷ୍ଠିତ ହେଲା । ଏହି ସଭାରେ ଚାରୁଚନ୍ଦ୍ର ରାୟ, ମୁକୁନ୍ଦ ପ୍ରସାଦ ଦାସ, ରାଧାମୋହନ ରଣା, ଜ୍ଞାନରଂଜନ ପଟ୍ଟନାୟକ, ପ୍ରଫୁଲ୍ଲ ଚନ୍ଦ୍ର ପଟ୍ଟନାୟକ, ପ୍ରାଣକୃଷ୍ଣ ଦାସ, କରୁଣାକର ପାଣିଗ୍ରାହୀ ଓ ଅଚ୍ୟୁତାନନ୍ଦ ଦାସ ପ୍ରମୁଖ ସେତେବେଳର ବିଶିଷ୍ଟ ବ୍ୟକ୍ତିମାନେ ଏ ସଂପର୍କରେ ଆଲୋଚନା କରି ଏବଂ ଏକ ପ୍ରସ୍ତାବ ଗ୍ରହଣ କରି ସରକାରଙ୍କୁ ପଠାଇଥିଲେ । ଶିକ୍ଷାମନ୍ତ୍ରୀ ପଣ୍ଡିତ ଗୋଦବରୀଶ ମିଶ୍ର ଏହାକୁ ଗ୍ରହଣ କରି ବାଲେଶ୍ୱରରେ ଏକ କଲେଜ ପ୍ରତିଷ୍ଠା ବିଷୟ ଘୋଷଣା କରିଥିଲେ । ଯାହା ଫଳରେ ୧୯୪୪ ମସିହାରେ ଏହି ଜିଲ୍ଲାର ପ୍ରଥମ ମହାବିଦ୍ୟାଳୟ 'ବାଲେଶ୍ୱର କଲେଜ' ସ୍ଥାପିତ ହେଲା । ପରେ 'ଫକୀରମୋହନ ସାହିତ୍ୟ ପରିଷଦ' ଏକ ପ୍ରସ୍ତାବ ମାଧ୍ୟମରେ ଏହି କଲେଜର ନାମ ଏ ମାଟିର ଅମର କୃତୀ ସନ୍ତାନ ବ୍ୟାସକବି ଫକୀରମୋହନଙ୍କ ନାମରେ ନାମିତ କରିବାକୁ ସରକାରଙ୍କ ଠାରେ ଦାବି କରିବା ଫଳରେ ଏହା 'ଫକୀରମୋହନ ମହାବିଦ୍ୟାଳୟ'ରେ ନାମାନ୍ତରିତ ହୋଇଛି ।

ଆଜି ଏହି କଲେଜର ମୁଖପତ୍ରର ନାମ ହେଉଛି 'ଫକୀର' (The Fakir), ଯାହା ୧୯୫୧-୫୨ରୁ ଅଜି ପର୍ଯ୍ୟନ୍ତ ପ୍ରାୟ ପ୍ରତିବର୍ଷ ନିୟମିତ ଭାବରେ ପ୍ରକାଶ ପାଇ ଆସୁଛି । କିନ୍ତୁ ଅନେକେ ହୁଏତ ଜାଣନ୍ତି ନାହିଁ ଯେ ଏହି ମୁଖପତ୍ରର ପ୍ରଥମ ନାମ 'ଫକୀର' ନଥିଲା । କଲେଜ ପ୍ରତିଷ୍ଠାର ତିନିବର୍ଷ ପରେ ୧୯୪୭ ମସିହାରେ ଏକ ସାରସ୍ୱତ ମୁଖପତ୍ର ପ୍ରକାଶର ଆବଶ୍ୟକତା ଅନୁଭବ କରିଥିଲେ ତତ୍କାଳୀନ ଅଧ୍ୟକ୍ଷ ତଥା ବିଶିଷ୍ଟ ପ୍ରାବନ୍ଧିକ ଶ୍ରୀ ଗିରିଜା ଶଙ୍କର ରାୟ ଏବଂ ଓଡ଼ିଆ ତଥା ସଂସ୍କୃତ ବିଭାଗର ମୁଖ୍ୟ, ଯଶସ୍ୱୀ କବି କୁଞ୍ଜବିହାରୀ ଦାଶ । ସେତେବେଳକୁ ଏହି କଲେଜରେ ଏକ ଛାତ୍ର ୟୁନିୟନ ଗଠିତ ହୋଇ ସାରିଥାଏ ଏବଂ ଭାରତବର୍ଷ ବିଦେଶୀ ଶାସନରୁ ମୁକୁଳି ସଦ୍ୟ ସ୍ୱାଧୀନତା ଲାଭ କରିଥାଏ । ପ୍ରଥମ ମୁଖପତ୍ରର ନାମକରଣ କରାଗଲା -'ଅରୁଣ' । ଏହି ନାମକରଣ ପଛରେ ଥିବା ଦୁଇଟି ଆଭିମୁଖ୍ୟ ସ୍ୱତଃ ବାରିହୋଇ ପଡ଼େ । ପ୍ରଥମତଃ -ନବଲବ୍ଧ ସ୍ୱାଧୀନତାର ଅରୁଣ-ଆଲୋକରେ ଦେଶ ଉଦ୍‌ଭାସିତ; ତେଣୁ ପତ୍ରିକାର ନାମ 'ଅରୁଣ' । ଦ୍ୱିତୀୟତଃ -ନବଯୌବନର ଅଭିଯାତ୍ରୀ ଛାତ୍ରଛାତ୍ରୀମାନଙ୍କ ଜୀବନର ଆରୁଣିଲଗ୍ନକୁ ଏହା ସୂଚିତ କରେ । 'ଅରୁଣ' ମୋଟ ୩ଟି ସଂଖ୍ୟା ପ୍ରକାଶ ପାଇଥିଲା । ପ୍ରଥମ ଖଣ୍ଡ

(ସଂଖ୍ୟା) ୧୯୪୭ରେ; ଦ୍ୱିତୀୟ ଖଣ୍ଡ (ସଂଖ୍ୟା) ୧୯୪୮ରେ ଏବଂ ତୃତୀୟ ଖଣ୍ଡ (ସଂଖ୍ୟା) ୧୯୪୯ରେ ପ୍ରକାଶ ପାଇବା ପରେ ଅଧ୍ୟାପକ କୁଞ୍ଜବିହାରୀ ଦାଶ ଏଠାରୁ ବିଦାୟ ନେଇ ଚାଲିଗଲେ । ସେହିଁ ଥିଲେ ଏହି ତିନିଗୋଟି ଖଣ୍ଡ ବା ସଂଖ୍ୟାର 'ସଂଗ୍ରାହକ' । ନିଜକୁ 'ସଂପାଦକ' ବୋଲି ସେ ଘୋଷଣା କରିନାହାନ୍ତି । କାହିଁକି କରିନାହାନ୍ତି ତାହା ଏତେବର୍ଷ ପରେ ଅନୁମାନ କରିବା କଷ୍ଟକର । ଯା'ହେଉ, ସେ ଚାଲିଯିବା ପରେ ସଂସ୍କୃତ ଅଧ୍ୟାପକ ସିଦ୍ଧେଶ୍ୱର ହୋତାଙ୍କ ଉପରେ ଏହି ଦାୟିତ୍ୱ ପଡ଼ିଲା । ସେ ଥିଲେ ଆତ୍ମପ୍ରୌଢ଼ି ସଂପନ୍ନ ଜଣେ ବିଦ୍ୱାନ ବ୍ୟକ୍ତି । କୁଞ୍ଜବାବୁଙ୍କ ସହ ତାଙ୍କର ଆତ୍ମିକ ମେଳ ନଥିଲା । ନିଜର ପତିଆରା ଦେଖାଇବା ପାଇଁ ସେ କଲେଜ ମୁଖପତ୍ରର ନାମ ବଦଳାଇ ରଖିଲେ 'ସବନଶ୍ରୀ' । ଅନେକେ ଏହି ନାମର ଅର୍ଥ ବୁଝିପାରିଲେ ନାହିଁ । ସେ କିନ୍ତୁ ନିଜର ପାଣ୍ଡିତ୍ୟର ପରିଚୟ ଦେବାକୁ ଯାଇ କୁଞ୍ଜବାବୁଙ୍କ ପ୍ରଦତ୍ତ 'ଅରୁଣ' ନାମକୁ ବଦଳାଇ ଏହା କରିଛନ୍ତି ବୋଲି ଜଣା ପଡ଼ିଲା । 'ସବନ'ର ଅର୍ଥ ଯଜ୍ଞ ବା ହୋମ ଏବଂ 'ଶ୍ରୀ'ର ଅର୍ଥ ଶୋଭା ବା ସୌନ୍ଦର୍ଯ୍ୟ । କଲେଜ -ମୁଖପତ୍ରର ନାମ 'ସବନଶ୍ରୀ' ରଖିବାରେ କି ଯୌକ୍ତିକତା ଥିଲା ତାହା ଜଣାପଡ଼େ ନାହିଁ । ଅଧ୍ୟାପକ ହୋତାଙ୍କ ସଂସ୍କୃତରେ ପାଣ୍ଡିତ୍ୟ ଏହିଭଳି ପ୍ରକାଶ ପାଇଥିଲା । ଅବଶ୍ୟ ମୁଁ ପଢ଼ିଲା ବେଳେ (୧୯୫୨-୫୩) ସେ ଆମକୁ ସଂସ୍କୃତ ପଢ଼ାଉଥିଲେ । ମୁଁ ତାଙ୍କର ପ୍ରିୟଛାତ୍ର ଥିଲି, କାରଣ ମୋର ସଂସ୍କୃତ ଭଲ ହେଉଥିଲା । କିନ୍ତୁ ତାଙ୍କର ଏହି ଅଯଥା ଆତ୍ମମ୍ଭରିତା ମୋତେ କାହିଁକି ଅନେକଙ୍କୁ ଭଲଲାଗୁନଥିଲା । ଯା'ହେଉ, 'ସବନଶ୍ରୀ' ମାତ୍ର ଗୋଟିଏ ସଂଖ୍ୟା ପ୍ରକାଶ ପାଇବା ପରେ ଏହି ନାମ ପ୍ରତି ଅଧିକାଂଶଙ୍କ ଅନାଗ୍ରହ ହେତୁ ଏହା ଆଉ ପ୍ରକାଶ ପାଇଲା ନାହିଁ । ପ୍ରଫେସର ସୁନ୍ଦରମ୍ ଅଧ୍ୟକ୍ଷ ଦାୟିତ୍ୱ ନେବାପରେ କଲେଜ ମୁଖପତ୍ରର ନାମ ବଦଳାଇ ରଖିଲେ 'The Fakir'. ୧୯୫୧-୫୨ରେ ଏହାର ପ୍ରଥମ ସଂଖ୍ୟା ପ୍ରକାଶ ପାଇଥିଲା । ଏହି ନାମକରଣ ମୂଳରେ ତାଙ୍କର ଲକ୍ଷ୍ୟ ଥିଲେ ଦୁଇ ମହାନ୍ ବ୍ୟକ୍ତି - (୧) ଗାନ୍ଧିଜୀ (ଯାହାଙ୍କୁ ଲଙ୍ଗଳା 'ଫକୀର' ଆଖ୍ୟା ଦେଇଥିଲେ ଇଂଲଣ୍ଡର ପ୍ରଧାନମନ୍ତ୍ରୀ ଚର୍ଚ୍ଚିଲ) (୨) ଫକୀରମୋହନ ସେନାପତି । ଜଣେ ଭାରତାତ୍ମାର ମହାନ୍ ପୁରୁଷ, ଆଉ ଆର ଜଣକ ଓଡ଼ିଆ ତଥା ଭାରତୀୟ ସାହିତ୍ୟ ଜଗତର ଅବିନାଶୀ ସ୍ରଷ୍ଟା । ଦୁଇ 'ଫକୀର'ଙ୍କୁ ଅଧ୍ୟକ୍ଷ ସୁନ୍ଦରମ୍ ଗୋଟିଏ 'ଫକୀର' (The Fakir) ଭିତରେ ପ୍ରତୀକାତ୍ମକ ଭାବରେ ସୂଚିତ କରିଦେଲେ । ଆଜକୁ ଦୀର୍ଘ ୫୨ ବର୍ଷ ଧରି ଏହି ନାମରେ କଲେଜର ମୁଖପତ୍ର ପ୍ରାୟ ଧାରାବାହିକ ଭାବରେ ପ୍ରତିବର୍ଷ ପ୍ରକାଶ ପାଇ ବହୁ ତରୁଣ ପ୍ରତିଭାଙ୍କ ସୃଷ୍ଟି ସ୍ୱାକ୍ଷରକୁ ବହନ କରୁଛି । ଅକାଳରେ ଲୋକାନ୍ତରିତ ଓଡ଼ିଆ କଥାସାହିତ୍ୟର ଜଣେ ଅନନ୍ୟ ଯୁବସ୍ରଷ୍ଟା କହ୍ନେଇଲାଲ ଦାସଙ୍କର ପ୍ରଥମ ଲେଖା 'ଏରାଉଣ୍ଡ ଦି କଲେଜ' ଏହି 'ଫକୀର'ରେ ହିଁ ପ୍ରଥମେ ପ୍ରକାଶ ପାଇ ତାଙ୍କୁ ଆଲୋକକୁ ଆଣିଥିଲା । 'ଫକୀର' ହେଉଛି ଫକୀରମୋହନ ମହାବିଦ୍ୟାଳୟର ମୁଖପତ୍ର ରୂପେ ତୃତୀୟ ଅବତାର ।

ଅଧ୍ୟାପକ କୁଞ୍ଜବିହାରୀ ଦାଶଙ୍କ ସଂଗୃହୀତ ବା ସଂପାଦିତ 'ଅରୁଣ'ର ପ୍ରଥମ ଖଣ୍ଡର ପ୍ରଥମ କବିତାର ଶୀର୍ଷକ ବି ଥିଲା 'ଅରୁଣ' । ଏହାକୁ ରଚନା କରିଥିଲେ କବି କୁଞ୍ଜବିହାରୀ ନନ୍ଦେ । ଏହାର ପ୍ରଥମ ତିନୋଟି ପଦରେ ସେ ଲେଖିଥିଲେ -

''ଅରୁଣ ଚିର ତରୁଣ ମନେ
ମୁକ୍ତି-ଦୀପ ଦିଅରେ ଜାଳି;
ଜନ୍ମଭୂମି, ଜନନୀ ଲାଗି
ଦେଉ ସେ ବୁକୁ-ରକ୍ତ ଢାଳି ।
ମାତୃଭାଷା, ମୋ ଜାତି ଆଶା
ଲେଖନୀ କରୁ ଶକ୍ତିଶାଳୀ;

ଅରୁଣ ଚିର ତରୁଣ ମନେ
ମୁକ୍ତି-ଦୀପ ଦିଅରେ ଜାଳି ॥
କଳାର ବଳେ ଉତ୍କଳୀୟ
ହୋଇଛି ଚିର ବିଶ୍ୱଜୟୀ;
ଏଥର ବୀର ଦେଖାଇଦେଉ
ବିଜ୍ଞାନର ବୁଦ୍ଧିଛଇ ।
ତନ୍ଦ୍ରାହୀନ ଚନ୍ଦ୍ରାନନ୍ନୁଁ
ନିଭାଇ ଦେଉ ନିରାଶ-କାଳି;
ଅରୁଣ ଚିର ତୁରଣ ମନେ
ମୁକ୍ତି-ଦୀପ ଦିଅରେ ଜାଳି ॥
କୃଷ୍ଣାଧାର ଗଙ୍ଗାହାର
ସିଂହଭୂମି ମୁକୁଟମଣି;
ଲୁପ୍ତ ଆଜି ସୁପ୍ତ ବୋଲି
ତରୁଣ ଶୂର ଶୌର୍ଯ୍ୟଖଣି ।
ରାଇବଣିଆ ଦୁର୍ଗ ଡାକେ
ବାଇବେ ଭେରୀ ଶକ୍ତିଶାଳୀ;
ତରୁଣ ମନେ ଅରୁଣ ଆଜି
କରୁଣ-ଦୀପ ଦିଅରେ ଜାଳି ॥

ଏହି କବିତା ଭିତରେ କବି କୁଞ୍ଜବିହାରୀ ସଦ୍ୟ ସ୍ୱାଧୀନତା ପ୍ରାପ୍ତ ଦେଶର ତରୁଣମାନଙ୍କୁ ଏକ ଉଦାତ୍ତ ଆହ୍ୱାନ ଦେଇ 'ମୁକ୍ତିର ଦୀପ' ଜାଳିଦେବାକୁ କହିଥିଲେ । ଏ ମୁକ୍ତିର ଦୀପ ନିଶ୍ଚିତ ଭାବେ ଅଜ୍ଞାନତାରୁ ମୁକ୍ତ କରି ଦେଶର ଅଗଣନ ଜନଗଣଙ୍କୁ ଜ୍ଞାନର ଆଲୋକ ପ୍ରଦାନ ପାଇଁ ଅଭିପ୍ରେତ ଥିଲା । 'ଅରୁଣ'ର ଆଭିମୁଖ୍ୟ ଏ ଶୀର୍ଷକ କବିତାରୁହିଁ ସ୍ପଷ୍ଟଭାବେ ସୂଚିତ ହୁଏ ।

ସେହିପରି 'ଅରୁଣ'ର ଦ୍ୱିତୀୟ ଖଣ୍ଡର ପ୍ରଥମ କବିତା ଥିଲା 'ବଳଙ୍ଗ-ସାଗର ସଂଗମେ', ଯାହାର ସ୍ରଷ୍ଟା ବି ଥିଲେ ସେହି କୁଞ୍ଜବିହାରୀ ଦାଶ । କବିବର ରାଧାନାଥଙ୍କ ଭଳି ସେବି ଥିଲେ ପ୍ରକୃତିପ୍ରିୟ ଓ ଦେଶପ୍ରେମୀ । 'ଚାନ୍ଦିପୁର'ର ବଳଙ୍ଗ ନଦୀ ମୁହାଣ ନିକଟରେ ପହଞ୍ଚି ତାର ଦୃଶ୍ୟ ଦେଖି ତାଙ୍କ ମନରେ ଯେଉଁ ଭାବାନ୍ତର ଜାତ ହୋଇଥିଲା ତାକୁ ସେ ରୂପ ଦେଇଥିଲେ ଏହି କବିତାରେ । କବିତାଟିର ଭାବ, ଶବ୍ଦସଂଯୋଜନା ଓ ଛନ୍ଦବିନ୍ୟାସ ଥିଲା ଅପୂର୍ବ । ନିମ୍ନୋକ୍ତ କେତୋଟି ପଦରୁ ତାହା ସୂଚିତ ହେବ -

''ରିକ୍ତ ହୃଦୟେ ତିକ୍ତ ମାନସେ ଆସିଛି ନଗରବାସୀ
ମହାସଂଗମ ଢାଳିଦେବୁ କିରେ ଫେନିଳ ଆଶିଷରାଶି ?
ସଂସାର ଲୁହା-ପିଞ୍ଜରେ ପଖୀ ବିକଳ ଆର୍ତ୍ତନାଦ
ଜଞ୍ଜାଳ ଝଡ଼ ଧୂଳି ସମ ଭରେ ଅନ୍ତରେ ଅବସାଦ ।
କ୍ଷୁଦ୍ର ସ୍ୱାର୍ଥ ଦିଗ୍‌ବଳୟେ ମୋ କୁଝ୍‌ଟୀ ଦିଏ ଭରି
ପ୍ରକୃତି, ପ୍ରିୟ ପ୍ରକୃତି, ଶୋଷେ ହୃଦୟ ପୂର୍ଣ୍ଣ କରି ।
ସୁରଭି ମଧୁର ନିଃଶ୍ୱାସ, ପ୍ରାଣେ ଭର ଆଶ୍ୱାସ ରାଶି
ଘୋର ଅବସାଦେ ତିକ୍ତ ମାନସେ ଆସିଛି ନଗରବାସୀ ।''

'ଅରୁଣ' ପ୍ରଥମ ଖଣ୍ଡର ଦ୍ୱିତୀୟ ଲେଖାଟି ଥିଲା ଏକ ପ୍ରବନ୍ଧ-'ସାହିତ୍ୟର ସାଧନା' । ଅଧ୍ୟକ୍ଷ ଗିରିଜାଶଙ୍କର ରାୟ ଏଥିରେ ଲେଖିଥିଲେ -''ପୂର୍ବର ସାହିତ୍ୟରେ ରସସୃଷ୍ଟିର ନୈପୁଣ୍ୟ ଥିଲା , ତାହା ଶବ୍ଦ ପ୍ରୟୋଗରେ ସମୃଦ୍ଧ ଥିଲା । ତାହା ବୁଦ୍ଧିର ଦୀପ୍ତିରେ ଉଜ୍ଜ୍ୱଳ, ଚିନ୍ତାର ସହଜ ସ୍ଫୁର୍ତ୍ତିରେ ମୁଖର, କିନ୍ତୁ ସେଥିରେ ଆନ୍ତରିକତାର ଅଭାବ ଥିଲା । ପ୍ରାଣଶକ୍ତିର ସ୍ପନ୍ଦନ ଅନୁଭୂତ ହେଉ ନଥିଲା । ହୃଦୟର ସହଜାତ ସମବେଦନାକୁ ପ୍ରଚ୍ଛନ୍ନ ରଖି କୃତ୍ରିମ ଭାବଧାରାର ଆଶ୍ରୟଘେନି ପାଠକର ମନକୁ ଆଚ୍ଛନ୍ନ କରିବାର ପ୍ରୟାସ ଥିଲା । ସେହି କାରଣରୁ ପ୍ରାଚୀନ ସାହିତ୍ୟ ଆମ୍ଭମାନଙ୍କର ଚିତ୍ତକୁ ଆଜିକାଲି ସ୍ପର୍ଶ କରି ପାରୁନାହିଁ ଓ ନବୀନ ସାହିତ୍ୟର ସୃଷ୍ଟି ଅବଶ୍ୟମ୍ଭାବୀ ହେଉଅଛି । x x x ଆଧୁନିକ ସାହିତ୍ୟର ନାନା ବିଭାଗ ସହିତ ସମ୍ୟକ ପରିଚୟ, ବିଭିନ୍ନ ଦେଶର ସାହିତ୍ୟ ସମ୍ଭାର ସହିତ ଯଥାଯଥ ସହଯୋଗ ସ୍ଥାପନ, ବିଭିନ୍ନ କାଳର ସାହିତ୍ୟିକ ଅଭିବୃଦ୍ଧିକୁ ସମଗ୍ରଭାବରେ ଆୟତ୍ତ ବା ଆଲୋଚନା କରିବାର ଚେଷ୍ଟା ଏହିସବୁ ଦିଗରେ ବର୍ତ୍ତମାନ ସାଧନା ଚାଳିତ ହୋଇପାରେ । x x x ଆଧୁନିକ ଛାତ୍ରମାନେ ଏଥିରେ ଅବହିତ ହେବେ, ଏହାହିଁ ମୋହର ଆଶା ।''

ମୋର ଯାହା ମନେହୁଏ, ଏହି ଆଭିମୁଖ୍ୟର ସଫଳ ରୂପାୟନ ପାଇଁ, 'ଆଧୁନିକ ଛାତ୍ରମାନ'ଙ୍କୁ 'ନବୀନ ସାହିତ୍ୟ' ସହିତ ପରିଚୟ କରାଇ ସେମାନଙ୍କୁ ଏଭଳି ସାହିତ୍ୟ ସୃଷ୍ଟିରେ ବ୍ରତୀ ଓ ସାଧନାରତ ହେବାପାଇଁ ସୁଯୋଗ ସୃଷ୍ଟି କରିବାକୁ ଉଭୟେ ଅଧ୍ୟକ୍ଷ ରାୟ ଓ ଅଧ୍ୟାପକ ଦାଶ ଏହି ମହାବିଦ୍ୟାଳୟର ପ୍ରଥମ ମୁଖପତ୍ର 'ଅରୁଣ' ପ୍ରକାଶ କରିଥିଲେ ।

ପ୍ରଥମ ସଂଖ୍ୟାରେ କଲେଜ ୟୁନିୟନର ତତ୍‌କାଳୀନ ସଂପାଦକ ଶ୍ରୀ ପିତାମ୍ବର ପାଣି (ସ୍ୱାଧୀନତା ସଂଗ୍ରାମୀ ତଥା ଜିଲ୍ଲା ଲୋକସଂପର୍କ ବିଭାଗର ଅବସରପ୍ରାପ୍ତ ଅଫିସର) ଯେଉଁ ବିବରଣୀ (୧୯୪୭-୪୮) ପ୍ରକାଶ କରିଥିଲେ ସେଥିରୁ ଜଣାଯାଏ ଯେ ସେ ବର୍ଷ କଲେଜରେ ୨୫.୯.୪୭ରୁ ୧.୧୦.୪୭ ପର୍ଯ୍ୟନ୍ତ ୭ଦିନ ବ୍ୟାପୀ ଏକ 'ଶିକ୍ଷା ସପ୍ତାହ' ପାଳିତ ହୋଇଥିଲା । ସେଥିରେ ପ୍ରଥମ ଓ ଦ୍ୱିତୀୟ ଦିନ ଶ୍ରୀଯୁକ୍ତ ରାଧାନାଥ ରଥ ସଭାପତିତ୍ୱ କରିଥିବା ବେଳେ ବିଶିଷ୍ଟ ଭାଷାତତ୍ତ୍ୱବିତ୍ ଡକ୍ଟର ସୁନୀତିକୁମାର ଚାଟାର୍ଜୀ ପ୍ରଥମ ଦିନ 'ଇଣ୍ଡୋଚୀନ ଓ ଇଣ୍ଡୋନେସିଆରେ ଭାରତୀୟ ସଭ୍ୟତା' ଏବଂ ଦ୍ୱିତୀୟ ଦିନ 'ଓଡ଼ିଆ ଭାଷାର ଉତ୍ପତ୍ତି ଓ କ୍ରମବିକାଶ' ବିଷୟରେ କହିଥିଲେ । ତୃତୀୟ ଦିନ ବିଶିଷ୍ଟ ସ୍ୱାଧୀନତା ସଂଗ୍ରାମୀ ଶ୍ରୀ ନନ୍ଦକିଶୋର ଦାସ ସଭାପତି ଏବଂ ପ୍ରଫେସର ପ୍ରିୟରଂଜନ ସେନ 'ଓଡ଼ିଆ ସାହିତ୍ୟରେ ପାଶ୍ଚାତ୍ୟ ପ୍ରଭାବ' ସଂପର୍କରେ ବକ୍ତବ୍ୟ ରଖିଥିଲେ । ଚତୁର୍ଥଦିନ କଲେଜର ଅଧ୍ୟକ୍ଷ ମହୋଦୟ ସଭାପତି ଏବଂ ଡକ୍ଟର ଅମୀୟ କୁମାର ଚକ୍ରବର୍ତ୍ତୀ 'ରବୀନ୍ଦ୍ରନାଥ ଓ ଆଧୁନିକ ବିଶ୍ୱସାହିତ୍ୟ' ବିଷୟରେ ଭାଷଣ ଦେଇଥିଲେ । ପଞ୍ଚମ ଦିନର ସଭାପତି ଥିଲେ ଓଡ଼ିଶା ଶିକ୍ଷା ବିଭାଗର ନିର୍ଦ୍ଦେଶକ ଏବଂ 'ଓଡ଼ିଆ ସାହିତ୍ୟର କ୍ରମବିକାଶ' ବିଷୟକୁ ନେଇ ଏକ ଐତିହାସିକ ଭାଷଣ ପ୍ରଦାନ କରିଥିଲେ ପଣ୍ଡିତ ନୀଳକଣ୍ଠ ଦାସ, ଯାହା ପରବର୍ତ୍ତୀ ପର୍ଯ୍ୟାୟରେ ପରିବର୍ଦ୍ଧିତ ହୋଇ 'ଓଡ଼ିଆ ସାହିତ୍ୟର କ୍ରମପରିମାଣ' ନାମକ ଏକ ବିଖ୍ୟାତ ଗ୍ରନ୍ଥ ରୂପେ ପ୍ରକାଶ ପାଇଲା । ଷଷ୍ଠ ଓ ସପ୍ତମ ଦିନ ଓଡ଼ିଶାର ତତ୍‌କାଳୀନ ରାଜସ୍ୱ ମନ୍ତ୍ରୀ ନବକୃଷ୍ଣ ଚୌଧୁରୀ ସଭାପତିତ୍ୱ କରିଥିବା ବେଳେ ଯଥାକ୍ରମେ ଗାନ୍ଧିଜୀଙ୍କ ସେକ୍ରେଟାରୀ ଅଧ୍ୟାପକ ନିର୍ମଳ ବୋଷ 'ଯୋଜନା' ସଂପର୍କରେ ଏବଂ ବିଶିଷ୍ଟ ଐତିହାସିକ ଡକ୍ଟର ନିହାରରଂଜନ ରାୟ 'ଲୁପ୍ତ ସଭ୍ୟତା : ସମୀରୀୟ, ମିଶରୀୟ, ମାୟା ଓ ବେବିଲୋନିଆ' ସଂପର୍କରେ ଅତି ଉପାଦେୟ ଓ ଶିକ୍ଷଣୀୟ ଅଭିଭାଷଣମାନ ପ୍ରଦାନ କରି ଏ ମହାବିଦ୍ୟାଳୟର ଛାତ୍ରଛାତ୍ରୀ,ଅଧ୍ୟାପକ ତଥା ସହରର ବୁଦ୍ଧିଜୀବୀମାନଙ୍କୁ ଆଲୋକିତ କରିଥିଲେ ।

ଏହି ଶିକ୍ଷା-ସପ୍ତାହ ପାଳନ ପାଇଁ କିଛି ବର୍ଷ ଧରି ରାଜ୍ୟ ସରକାର ପାଞ୍ଚ/ଛଅଶହ ଟଙ୍କା କଲେଜ ୟୁନିୟନକୁ ଅନୁଦାନ ଦେଉଥିଲେ । କଲେଜ ୟୁନିୟନର ସଂପାଦକ ଲେଖିଛନ୍ତି-''ଏହି ସାଂସ୍କୃତିକ ସପ୍ତାହର ଉଦ୍‌ବୋଧନା ଏବଂ ପ୍ରେରଣା ସର୍ବ ପ୍ରଥମେ ଆମକୁ ପ୍ରିନ୍‌ସପାଲ ମହୋଦୟ ଦେଇଥିଲେ । x x x ବିଦେଶରୁ

ଆସିଥିବା ଶିକ୍ଷାବିତ୍‌ମାନଙ୍କୁ ନିଜନିଜ ଘରେ ଅତିଥି କରି ରଖିବା ଦିଗରେ ବାଲେଶ୍ୱର ସହରର ବିଶିଷ୍ଟ ଭଦ୍ରବ୍ୟକ୍ତି ଶ୍ରୀଯୁକ୍ତ ଚାରୁଚନ୍ଦ୍ର ରାୟ, ଡାକ୍ତର ଅନିଲ କୁମାର ବିଶ୍ୱାସ, ଶ୍ରୀଯୁକ୍ତ ଫନୀନ୍ଦ୍ର ନାଥ ଦାସ, କଲେଜର ପ୍ରିନ୍‌ସପାଲ ମହୋଦୟ, ଶ୍ରୀଯୁକ୍ତ ରବୀନ୍ଦ୍ର ନାଥ ସରକାର ଓ ଶ୍ରୀଯୁକ୍ତ ମୁକୁନ୍ଦ ପ୍ରସାଦ ଦାସଙ୍କ ସାହାଯ୍ୟ ଯୋଗୁଁ ଆମ୍ଭେମାନେ କୃତଜ୍ଞତା ଜ୍ଞାପନ କରୁଛୁଁ ।'' ସେତେବେଳେ ବାଲେଶ୍ୱର ଏକ ଛୋଟ ଗ୍ରାମୀଣ ସହର ଥିଲା; ଏଠାରେ ଆଜିଭଳି କୌଣସି ବଡ଼ ହୋଟେଲ ତ ନଥିଲା, ଛୋଟଛୋଟ ଲଜିଂ ବି ନଥିଲା । ସେଥିପାଇଁ ବାହାରୁ ଆମନ୍ତ୍ରିତ ହୋଇ ଆସୁଥିବା ବିଶିଷ୍ଟ ବ୍ୟକ୍ତିମାନଙ୍କୁ ସହରର ତତ୍‌କାଳୀନ ଭଦ୍ରବ୍ୟକ୍ତିମାନେ ନିଜନିଜ ଘରେ ଆତିଥ୍ୟ ପ୍ରଦାନ କରି ନିଜକୁ ଗୌରବାନ୍ୱିତ ମନେ କରୁଥିଲେ । ସେତେବେଳେ କଲେଜର ଛାତ୍ର ୟୁନିୟନ ଏହିଭଳି 'ଶିକ୍ଷା ସପ୍ତାହ'ର ଆୟୋଜନ କରି ଶିକ୍ଷା, ସାହିତ୍ୟ ଓ ସଂସ୍କୃତି-ପ୍ରୀତିର ପରିଚୟ ଦେଉଥିବା ବେଳେ ଆଜିର କଲେଜ ୟୁନିୟନର କର୍ମକର୍ତ୍ତାମାନେ ଅଧିକାଂଶ କ୍ଷେତ୍ରରେ ରାଜନେତା ଓ ମେଲୋଡ଼ି ପାର୍ଟିର ଗାୟକ ଓ ନାଟୁଆ ମାନଙ୍କୁ ଡାକିଆଣି ସଂସ୍କୃତିପ୍ରୀତିର ପରିଚୟ ଦେଉଛନ୍ତି । ଦୀର୍ଘ ୫୭ବର୍ଷ ଭିତରେ ଇଏ କି ଦାରୁଣ ବିପର୍ଯ୍ୟୟ !

'ଅରୁଣ'ରୁ 'ଫକୀର' ଅନେକ ଦୂର, କିନ୍ତୁ ଗୋଟିଏ ରୂପାନ୍ତର । କଲେଜର ଏହି 'ମୁଖପତ୍ର'ର ବିଭିନ୍ନ ସଂଖ୍ୟା ଓଲଟାଇଲେ ଆମେ ଏମିତି ଅନେକ ତଥ୍ୟ, ଅନେକ ଘଟଣାର ଚିତ୍ର ପାଇପାରିବା, ଯାହା ଭିତରୁ ଫୁଟି ଉଠିବ ଏ ମହାନ୍ ଶିକ୍ଷାୟତନର ସ୍ମରଣୀୟ ଐତିହ୍ୟ ।

• ସୁନହଟ,
ବାଲେଶ୍ୱର

# ମନେପଡ଼େ

## ଡକ୍ଟର ଭାଗୀରଥି ନାୟକ

ସବୁବେଳେ ସବୁ କଥା କହି ହୁଏନା, ନକହି ବି ବେଳେବେଳେ ରହି ହୁଏନା । ତେଣୁ ଅନେକ କିଛି କହିବାକୁ ଥିଲେବି ଏଠାରେ ଅଳ୍ପ କେତୋଟି ଘଟଣାର ଅବତାରଣା କରିବା ହେଉଛି ଏହି ଲେଖାର ଉଦ୍ଦେଶ୍ୟ । ଆଜିକଥା କାଲିକୁ ପୁରୁଣା । ସାଧାରଣ ମଣିଷର ତେଲଲୁଣର ଦୁନିଆରେ ସବୁ କିଛି ଭୁଲି ହୋଇ ଯାଉଛି । ଭୁଲିଯିବା ମଧ୍ୟ ସ୍ୱାଭାବିକ । ଆଜିର ଏହି ଭାଷଣ-ସର୍ବସ୍ୱ ଯୁଗରେ ଆକାଶର ଗୁଣଭାବେ ଶବ୍ଦସବୁ ଆକାଶରେ ହିଁ ମିଶି ଯାଆନ୍ତି । ଫକୀରମୋହନ କଲେଜର ପୁରାତନ ଛାତ୍ର ସଂସଦର ଗଠନ । ଏହାର ସାଙ୍ଗଠନିକ କୃତିତ୍ୱ ଓ ଏହି ଅନୁଷ୍ଠାନ ଜରିଆରେ ଏକ ନିର୍ମାଣଯୁଗର ଦ୍ରୁତ ସଂଚରଣଶୀଳ କାର୍ଯ୍ୟକଳାପକୁ ହୁଏତ ଅନେକେ ଭୁଲିଯିବେ । ମାତ୍ର ଏ ସବୁର ଲିଖିତ ରୂପ କାହିଁ କେଉଁଠି ସ୍ଥାନ ପାଇଥିଲେ ଆଗାମୀ ପିଢ଼ି ପାଇଁ ହୁଏତ କିଛି ମାତ୍ରାରେ ତାହା ପ୍ରେରଣା ସୃଷ୍ଟି କରିପାରେ, ସେଥିପାଇଁ ଏହାର ଅବତରଣିକା ପ୍ରକାଶ ପାଇବା ଉଚିତ ମନେହୁଏ । ସେହି ଲକ୍ଷ୍ୟ ନେଇ ମୋର ଏହି ଲେଖା ଉଦ୍ଦିଷ୍ଟ ।

ସୁବର୍ଣ୍ଣ ଜୟନ୍ତୀ ପାଳନ ବେଳେ ମୁଁ ଥିଲି ବ୍ରହ୍ମପୁରର ଖଲ୍ଲିକୋଟ ସ୍ୱୟଂଶାସିତ କଲେଜରେ । ମୋତେ ନିମନ୍ତ୍ରଣ ପତ୍ରଟିଏ ବି ମିଳିନଥିଲା । ସେଥିପାଇଁ ପ୍ରବଳ ମାନସିକ ଚାପ ଓ ଅଭିମାନରେ ମୁଁ ଭାଙ୍ଗି ପଡ଼ିଥିଲି । ମୁଁ ଶେଷଦିନ ବାଲେଶ୍ୱରରେ ଥିଲେ ବି କେହି ମୋତେ ଦିନ ୨ଟା ପର୍ଯ୍ୟନ୍ତ ଏହି କାର୍ଯ୍ୟକ୍ରମରେ ସାମିଲ ହେବାପାଇଁ ବି କହି ନଥିଲେ । ଇଷ୍ଟକୋଷ୍ଟ ଗାଡ଼ି ଛାଡ଼ିବାର ଅଧଘଣ୍ଟେ ଆଗରୁ ଶ୍ରଦ୍ଧେୟ ରମାକାନ୍ତ ନାୟକ ଆସି ରହିବାକୁ ଅନୁରୋଧ କରିଥିଲେ । ମାତ୍ର ସେତେବେଳକୁ ଆଉ ଫେରିବାର ଉପାୟ ନଥିଲା । ବ୍ରହ୍ମପୁରରେ ପହୁଞ୍ଚିବା ପର୍ଯ୍ୟନ୍ତ ମୁଁ ଯେ କିଭଳି ସମୟ କାଟିଥିବି ତାହା କେବଳ ଅନୁଭବୀକୁ ଜଣା । ମୁଁ ଜାଣି ନଥିଲି କାହିଁକି ମୋର ଏହି ଭାବପ୍ରବଣତା । ୧୯୫୮ରୁ ୧୯୬୦-ଏହି ଦୁଇବର୍ଷ ଏଠାରେ ଅଧ୍ୟୟନ କରିଛି । ହେଲେ ଅନେକ ସ୍ୱପ୍ନ ଓ ସମ୍ଭାବନାର ଏକ ପରୀରାଜ୍ୟ ଭିତରେ ମୋର ଆଦ୍ୟ ଯୌବନର ଉଦ୍ଦାମତା ଜନିତ ପ୍ରବଣତା କାହିଁକି କେଜାଣି ମୋତେ ଆଜି ବି ସ୍ୱପ୍ନାବିଷ୍ଟ କରିଛି । ମୋର ଏହି ମାତୃ-ଅନୁଷ୍ଠାନ ମୋ ପାଇଁ ସବୁ କିଛି । ତେଣୁ କେବେ ଏଠାକୁ ଫେରି ମୋର ମାତୃଋଣ ପରିଶୋଧ କରିବି ତାହାହିଁ ଥିଲା ମୋର ଏକମାତ୍ର ଚିନ୍ତା । ଶେଷରେ ଏଠାକୁ ଫେରିଲି ଅବସର ଗ୍ରହଣର ଠିକ୍ ୩ ବର୍ଷ ପୂର୍ବରୁ ।

ମୁଁ ପୁଣି ଏହି କଲେଜରେ ଯୋଗ ଦେଲାବେଳକୁ ଏଠାକାର ଅଧ୍ୟକ୍ଷ ଥିଲେ ପ୍ରଫେସର କୃଷ୍ଣକାନ୍ତ ଦାସ । ପଢ଼ିଲାବେଳେ ସେ ଥିଲେ ମୋ ଉପର ଶ୍ରେଣୀର ଜଣେ ମେଧାବୀ ଛାତ୍ର । ସରକାରୀ ସଂପର୍କ ଭିତରେ କଲେଜରେ ସେ ମୋର ଉପରିସ୍ଥ ଥିଲେ ବି ବ୍ୟକ୍ତିଗତ ଜୀବନରେ ସେ ମୋର ଥିଲେ ପରମ ବନ୍ଧୁ । ତାଙ୍କ ପତ୍ନୀ ବିଚ୍ଛେଦଜନିତ ଯନ୍ତ୍ରଣାକାତର ମନକୁ କିଛି ମାତ୍ରାରେ ଲାଘବ କରିବା ପାଇଁ ମୁଁ ଚେଷ୍ଟା କରିଛି । ବ୍ୟକ୍ତିଗତ ଜୀବନର ଦୁଃଖଯନ୍ତ୍ରଣା ଯାହା ଥିଲେ ବି ସେଠାରୁ ଦୂରକୁ ଯାଇ ଆମେ ଆମ ମାତୃ ଅନୁଷ୍ଠାନ ପାଇଁ କିଛି ଗୋଟେ କରିବା ଏହି ସଂକଳ୍ପ ନେଇ ଆମେ ସେଦିନ ଏକ ନକ୍ସା ପ୍ରସ୍ତୁତ କରିଥିଲୁ । କଲେଜର ଛାତ୍ରଙ୍କ ପାଇଁ ଆବଶ୍ୟକ ପଡୁଥିବା ଏକ ବିଶ୍ରାମ କକ୍ଷ ନିର୍ମାଣ ଉଦ୍ଦେଶ୍ୟରେ କିଛି ଅର୍ଥ ମିଳିବ, ଏଇ ଭରସା ନେଇ ଆମେ ସେଦିନ ବାଲେଶ୍ୱର ସାଂସଦ ଶ୍ରଦ୍ଧେୟ କାର୍ତ୍ତିକ ଚନ୍ଦ୍ର ମହାପାତ୍ରଙ୍କୁ ଡାକ-ବଙ୍ଗଳାରେ ଦେଖାକଲୁ । ମୋର ଦୃଢ଼ ବିଶ୍ୱାସ ଥିଲା ଯେ ଏକଦା ମୋର ଅତି ନିକଟତର ଛାତ୍ର ଶ୍ରୀମାନ ମହାପାତ୍ର ଆମକୁ ସାହାଯ୍ୟ କରିବେ । ମାତ୍ର ତାପରେ ସେ ଯେହେତୁ ସାଂସଦ ହେଲେନାହିଁ ଆମେ

ଏକପ୍ରକାର ଭାଙ୍ଗି ପଡ଼ିଥିଲୁ । ମାତ୍ର ତାଙ୍କରି ଉଦ୍ୟମରେ ହିଁ ସେତେବେଳେ ବ୍ରିଟର ଚେୟାରମେନ୍ ଶ୍ରଦ୍ଧେୟ ପ୍ରଶାନ୍ତ ପଣ୍ଡାଙ୍କ ଜରିଆରେ ଆମେ କଲେଜ ବଗିଚା ସମ୍ମୁଖରେ ଏକ ମିନି-ହାଇମେକ୍ସ ଲାଇଟ ପୋଷ୍ଟ ପ୍ରତିଷ୍ଠା କରିପାରିଲୁଁ । ଇତି ମଧ୍ୟରେ ଭଦ୍ରକ କଲେଜ, ସୁବର୍ଣ୍ଣ ସ୍ମାରକୀ ଉତ୍ସବ ପାଳନ ପାଇଁ ପ୍ରସ୍ତୁତ ହେଉଥାଏ । ଶ୍ରଦ୍ଧେୟ ଅଧ୍ୟାପକ ସୁବାସ ଚନ୍ଦ୍ର ପାତ୍ରଙ୍କୁ ସେହି କଲେଜର ଟିକିନିଖି ବିବରଣୀ ସଂଗ୍ରହ ପାଇଁ ପଠାଗଲା । ଆମେ ଆଶ୍ଚର୍ଯ୍ୟ ହେଲୁ ଯେ, ବହୁ ଲକ୍ଷ୍ୟ ଟଙ୍କା ବିନିମୟରେ ସେମାନେ ଏକ ବିକାଶମୂଳକ କାର୍ଯ୍ୟ ପାଇଁ ଲଗାତର ଉଦ୍ୟମ ଜାରି ରଖିଛନ୍ତି । ସେତେବେଳେ ଆମ ମନକୁ ଧାରଣା ଆସିଲାଯେ ସେମାନେ ଯଦି ଏଭଳି କାର୍ଯ୍ୟ କରିପାରିବେ, ଆମେମାନେ ଏଠାରେ ତାହା କରି ନ ପାରିବା କାହିଁକି ? ତେଣୁ ଆମେ କେତେଜଣ ତତ୍‌କାଳୀନ ସାଂସଦ ଶ୍ରୀଯୁକ୍ତ ଖାରବେଳ ସ୍ୱାଇଁଙ୍କୁ ଆମ ଯୋଜନା ବିଷୟରେ ଅବଗତ କରାଇଲୁ । ମୁଖ୍ୟ ଭୂମିକା ଗ୍ରହଣ କରିଥିଲେ ପରବର୍ତ୍ତୀ ସମୟର ଅଧ୍ୟକ୍ଷ ଡକ୍ଟର ଦେବେନ୍ଦ୍ର ନାଥ ରାଉତ ।

ମାନ୍ୟବର ସାଂସଦ ଆମକୁ ଚାରିଲକ୍ଷରୁ ଅଧିକ ଟଙ୍କା ଦେବାର ପ୍ରତିଶ୍ରୁତି ଦେଲେ ଓ ପ୍ରାରମ୍ଭିକ କାର୍ଯ୍ୟ ପାଇଁ ଆମ୍ଭେମାନେ ପୁରାତନ ଛାତ୍ର, ଅଧ୍ୟାପକ-ଅଧ୍ୟାପିକା, କଲେଜର ସବୁ ଶ୍ରେଣୀର କର୍ମଚାରୀ ମାନଙ୍କଠାରୁ ଦାନ ଗ୍ରହଣ କଲୁ । ଏହା ବ୍ୟତୀତ କଲେଜର ବିକାଶ ପାଣ୍ଠିରୁ କିଛି ଅର୍ଥ ମଧ୍ୟ ଆମକୁ ମିଳିଲା । ତିଆରି ଚାଲିଲା ''ସୁବର୍ଣ୍ଣ ସ୍ମାରକୀ ଭବନ''ର ତଳ ମହଲା, ଯେତିକି ଆନନ୍ଦ ଉତ୍ସାହ ମିଳିଲା, ତା ଅପେକ୍ଷା ମିଳିଲା ପ୍ରତିବାଦ ଓ ପ୍ରତିରୋଧ । ସେଇ ପ୍ରତିରୋଧକାରୀଙ୍କ ମଧ୍ୟରୁ ଆଜି କେତେକ ଆମ ଭିତରେ କେଉଁଠି ନା କେଉଁଠି ବିଚରଣ କରୁଛନ୍ତି । ଘର ନିର୍ମାଣ ପାଇଁ କାହିଁକି ସରକାରୀ ଅନୁମତି ନିଆ ଯାଇନାହିଁ; ସାଇକେଲ ଷ୍ଟାଣ୍ଡକୁ କାହିଁକି ଭାଙ୍ଗି ଦିଆଗଲା; ଅଧ୍ୟାପକମାନେ ପାଠପଢ଼ା ବଦଳରେ କାହିଁକି ଠିକାଦାରୀ କରୁଛନ୍ତି ଇତ୍ୟାଦି ଅନେକ ବେନାମୀ ପତ୍ର ସରକାରଙ୍କୁ ଦିଆଗଲା । ମାତ୍ର ବିପୁଳ କର୍ମପ୍ରେରଣା ଓ କିଛି କରିବାର ସଂକଳ୍ପ ଭିତରେ ସବୁ କିଛି ପ୍ରତିରୋଧ ସକାଳର କୁହୁଡ଼ି ଭଳି ଅପସରି ଯାଇଛି । ପ୍ରଥମ ମହଲାର କାମ ଶେଷ ପରେ ଦ୍ୱିତୀୟ ମହଲା କାର୍ଯ୍ୟ ଆରମ୍ଭ ହେଲା ଏବଂ ପରେ ପରେ 'ସୁବର୍ଣ୍ଣ ସ୍ମାରକୀ ଭବନ' ପୂର୍ଣ୍ଣାଙ୍ଗ ରୂପ କଲା । ସରକାରୀ ବିଭାଗ ତରଫରୁ କଣ୍ଟ୍ରାକ୍ଟରଙ୍କ ଦ୍ୱାରା ଗୃହ ନିର୍ମିତ ହୋଇଥିଲେ କେତେ ଅର୍ଥ ବ୍ୟୟ ହୋଇଥାନ୍ତା ଏବଂ ପୁରାତନ ଛାତ୍ର ସଂସଦ ଏଭଳି କାମ କରି କିଭଳି ଅର୍ଥର ସତ୍ ବିନିଯୋଗ କରିପାରିଛି, ତାହା ସମୟ କ୍ରମେ ପ୍ରତିରୋଧକାରୀମାନେ ବୁଝିଛନ୍ତି । ଏଭଳି କି ଶେଷରେ ଏସବୁର ତଦନ୍ତ କରୁଥିବା ସରକାରୀ ଉଚ୍ଚ ଅଫିସର କହିଛନ୍ତି ଯେ- That's a noble work । ସେ କାଳର ଅଧ୍ୟକ୍ଷ, ଅଧ୍ୟାପକ ଓ କେତେଜଣ ପୁରାତନ ଛାତ୍ରଙ୍କୁ ଯେଭଳି ଭାବରେ ମିଥ୍ୟା ଖବର ପ୍ରକାଶ କରି ମାନସିକସ୍ତରରେ ଯନ୍ତ୍ରଣା ଦିଆ ଯାଇଛି ତାହା ଆଜି ଇତିହାସର ବିଷୟ । ଇତିହାସର ସେଇ ରୋମନ୍ଥନ ଭିତରେ ଆଉ କେତୋଟି ବିଷୟ ଉପରେ ଆଲୋକପାତ କରାଯାଇପାରେ । ସମଗ୍ର ରାଜ୍ୟରେ ଏହି କଲେଜ ଏକ ଅଗ୍ରଣୀ ଶିକ୍ଷାନୁଷ୍ଠାନ ହେଲେ ବି ଏହାର ସମସ୍ୟାର ଅନ୍ତନାହିଁ । ପାଠପଢ଼ାପାଇଁ ଶ୍ରେଣୀଗୃହର ଅଭାବହିଁ ପ୍ରଧାନ ପ୍ରତିବନ୍ଧକ । ସେଇ ପାଇଁ ଡକ୍ଟର ଦେବେନ୍ଦ୍ର ନାଥ ରାଉତ ଅଧ୍ୟକ୍ଷ ଥିଲାବେଳେ ବିକାଶମୂଳକ କାର୍ଯ୍ୟଧାରାର ଏକ ନୂଆ ଅଧ୍ୟାୟ ସୃଷ୍ଟି ହେଲା । Jatti Hall, ୨୪ ଓ ୨୫ ନମ୍ବର କୋଠରୀ ସହିତ ଜୀର୍ଣ୍ଣପ୍ରାପ୍ତ 'ଉତ୍ତରାୟଣ ମଞ୍ଚ'କୁ ଭାଙ୍ଗି ଦିଆଯାଇ ତା ସ୍ଥାନରେ ନିର୍ମାଣ କରାଗଲା 'ବିଜ୍ଞାନ ଭବନ' । ଏଥିପାଇଁ Superintending Engineer, Exicutive Engineer ସମେତ P.W.D.ର କର୍ମକର୍ତ୍ତାମାନେ ସରଜମିନ ତଦନ୍ତ କରି ଭଙ୍ଗା ଯାଇଥିବା ଗୃହଗୁଡ଼ିକ ଯେ ଅକାମୀ ହୋଇ ପଡ଼ିଛି ଏବଂ ଏସବୁର ନିର୍ମାଣ ପାଇଁ ସରକାରଙ୍କ ପାଖରେ ଆବଶ୍ୟକ ଅର୍ଥନାହିଁ ବୋଲି ମତାମତ ଦେଲାପରେ ପୁରାତନ ଛାତ୍ର ସଂସଦ ପୁଣିଥରେ ସାଂସଦ ଖାରବେଳ ସ୍ୱାଇଁଙ୍କୁ ସାକ୍ଷାତ କରିଛି ଏବଂ ଦଶଲକ୍ଷ ଟଙ୍କାରୁ ଊର୍ଦ୍ଧ୍ୱ ଅନୁଦାନ ମିଳିବାର

ପ୍ରତିଶ୍ରୁତି ପାଇଲା ପରେ କାର୍ଯ୍ୟ ଆରମ୍ଭ କରିଛି । ବିଜ୍ଞାନ ଭବନ ନିର୍ମାଣ ପାଇଁ କ୍ଷେତ୍ର ପ୍ରସ୍ତୁତ ସକାଶେ ପୁରାତନ ଘରସବୁ ଭାଙ୍ଗିବା ପାଇଁ କଲେଜର ବିକାଶ ପାଣ୍ଠିରୁ କିଛି ଅର୍ଥ ଖର୍ଚ୍ଚ କରାଯାଇଛି । ସେଥିପାଇଁ କଲେଜ କର୍ତ୍ତୃପକ୍ଷଙ୍କ ନିକଟରେ ଆମେ କୃତଜ୍ଞ । କିନ୍ତୁ ସେଇ ପୁରୁଣା ରୋଗ - କିଭଳି ଗୃହ ନିର୍ମାଣ ହେଲା, ପାଣ୍ଠିର ସଦ୍‌ବିନିଯୋଗ ଇତ୍ୟାଦିର କଥା ଉଠିଲା । କିନ୍ତୁ ହେଲା କ'ଣ ? କାମ ହେଉଛି ଏବଂ ତାହା କଲେଜର କାମରେହିଁ ଲାଗିଲାଣି । ଭଲ କାମ ପାଇଁ କେଉଁଠି ହୁଏତ କିଛି ତ୍ରୁଟି ବିଚ୍ୟୁତି ରହିଯାଇଛି । ଆଜି ଯେତେବେଳେ ସରକାରଙ୍କଠାରେ ବିକାଶମୂଳକ କାର୍ଯ୍ୟ ପାଇଁ ପାଣ୍ଠିନାହିଁ, ସେତେବେଳେ ପୁରାତନ ଛାତ୍ର ସଂସଦ ଯଦି ଅଣ୍ଟାଭିଡ଼ି ଗୋଟିଏ ଦାୟିତ୍ୱ ନେଇଛି ଏବଂ ତାକୁ କାର୍ଯ୍ୟରେ ପରିଣତ କରି ଦେଖାଇ ଦେଇସାରିଲାଣି, ସେତେବେଳେ Audit objectionର ଭୟ ଦେଖାଇ ପାଞ୍ଚପାଦ ପଛକୁ ଫେରିଯିବାର ବିଲକ୍ଷଣ ପ୍ରକୃତି ଯଦି ପ୍ରକାଶ ପାଏ, ତେବେ ଉଦ୍ୟୋକ୍ତାମାନେ ଭାଙ୍ଗି ପଡ଼ିବା ସ୍ୱାଭାବିକ । ମାତ୍ର ଏ କ୍ଷେତ୍ରରେ ତାହା ହୋଇନାହିଁ, ହେବାକୁ ମଧ୍ୟ ଦିଆଯିବ ନାହିଁ । Alumni Association ମାଧ୍ୟମରେ ବାଲେଶ୍ୱରର ବିଧାୟକ ଶ୍ରୀଯୁକ୍ତ ଜୀବନ ପ୍ରଦୀପ ଦାଶଙ୍କଠାରୁ ଏକଲକ୍ଷ ଟଙ୍କାର ଅନୁଦାନ ଅଣାଯାଇ କଲେଜର ମୁଖ୍ୟ ଫାଟକ ନିକଟରେ ଏକ ଆଧୁନିକ ଶୈଳୀ ସଂପନ୍ନ ଘର ନିର୍ମାଣ କରାଯାଇଛି । କଲେଜ ପାଇଁ S.B.I.ର ଏକ Extention Counter ମଧ୍ୟ ପୂର୍ବରୁ ଖୋଲାଯାଇ ପାରିଛି । ଏହାକୁ ଯଦି କଲେଜର ଏକ ବିକାଶ ବୋଲି କିଛି ଲୋକ ମାନିବାକୁ ପ୍ରସ୍ତୁତ ନୁହଁନ୍ତି -ତେବେ ତ କୁହାଯିବ ହେ ଭଗବାନ ! ତୁମେ ସେମାନଙ୍କୁ କୁହ ସେମାନେ ସବୁବେଳେ ଏମିତି ପ୍ରତିରୋଧ କରୁଥାନ୍ତୁ ଏବଂ Alumni ପ୍ରତିଥର ଏମିତି ଗୋଟିଏ ଗୋଟିଏ ବିକାଶମୂଳକ କାର୍ଯ୍ୟ କରୁଥାଉ । ଆଜି ହୁଏତ ଅନେକ ଲୋକ ଜାଣିନାହାନ୍ତି ଯେ ବହୁ ଦିନରୁ ଅସମାହିତ କାର୍ଯ୍ୟ ଇତି ମଧ୍ୟରେ ସଂପନ୍ନ ହୋଇ ଯାଇଛି । Alumni ଜରିଆରେ ବ୍ରାହ୍ମ ସମାଜ ଭୂମିଟି କଲେଜକୁ ମିଳି ସାରିଛି । ଯେଉଁ ବଂଧୁମାନଙ୍କ ଉଦ୍ୟମରେ ଏହା କରାଯାଇଛି ସେମାନେ ଆମର ନମସ୍ୟ ।

ସମଗ୍ର ଓଡ଼ିଶାରେ ଫକୀରମୋହନ କଲେଜର 'ପୁରାତନ ଛାତ୍ର ସଂସଦ' ଏକ ଆଲୋକବର୍ତ୍ତିକା । ଏହି ସ୍ୱେଚ୍ଛାସେବୀ ଅନୁଷ୍ଠାନ ଅନ୍ୟମାନଙ୍କ ପାଇଁ ପ୍ରେରଣା । ଏଠି ବ୍ୟକ୍ତିର ସ୍ୱାର୍ଥ ନାହିଁ ଅଛି ସମଷ୍ଟିର । ଏଠି ରାଜନୀତିର କଥା ନାହିଁ । ଦଳମତ ଗୋଷ୍ଠୀ ନିର୍ବିଶେଷରେ ଆମର ଲକ୍ଷ୍ୟ ମାତୃ-ଅନୁଷ୍ଠାନର ବିକାଶ । ଆମେ ଯଦି ଏହାର ବିକାଶ ପାଇଁ କିଛି କରି ନପାରିବା ତେବେ ନୀରବ ରହିବା ବରଂ ଭଲ । ମାତ୍ର "ନେଇଗଲେ", "ଖାଇଗଲେ", "ନିୟମ ଭାଙ୍ଗିଲେ" ଇତ୍ୟାଦି ସ୍ଲୋଗାନ ଦେଇ ବିକାଶର ଗତିକୁ ମନ୍ଥର କରିବା କୌଣସି ଗୁଣରେ ଶ୍ରେୟନୁହେଁ । ହୁଏତ ସେହି ମାନେ ଏହା କହିପାରନ୍ତି ଯେଉଁମାନେ ଏଠିକାର ଛାତ୍ର ନୁହନ୍ତି । ମାତ୍ର ଯାହାର ଅଭିମନ୍ତ୍ରିତ ମାନସିକତାରେ ମାତୃ-ଅନୁଷ୍ଠାନ ପାଇଁ ମମତା ଥିବ, ସେ କେବେହେଲେ ଏକଥା କହିବ ନାହିଁ । ବିକାଶ ଆମର ଲକ୍ଷ୍ୟ, କ୍ଳାନ୍ତ ନହେବା ଆମର ଧର୍ମ । ଆମ ମହାନ୍ ଲକ୍ଷ୍ୟ ନିକଟରେ ସରକାରୀ କଳର ନୀତିନିୟମ ପରାସ୍ତ ହେବ, ଏ ବିଶ୍ୱାସ ଆମର ଅଛି ।

• ପରୀକ୍ଷା ନିୟନ୍ତ୍ରକ,
ଫକୀରମୋହନ ସ୍ୱୟଂଶାସିତ ମହାବିଦ୍ୟାଳୟ,
ବାଲେଶ୍ୱର

# କିଛି ସ୍ମୃତି କିଛି ବିସ୍ମୃତି

**ଗୋପୀନାଥ ମହାନ୍ତି,** ଆଇ.ଏ.ଏସ୍.

**ଅ**ତୀତର ସବୁ ସ୍ମୃତି ମଧୁର । ପିଲାଦିନର ସ୍ମୃତି ତ ନିଆରା । ବିଶେଷ କରି କୈଶୋରର ସନ୍ଧିଦେଶରେ ପାଦ ଦେଉଥିବା ସମୟର ସବୁକଥା ଶେଷଯାଏ ଗୋଟିଏ ଗଭୀର ରେଖାପାତ କରିଥାଏ, ଆଉ ତାହାହିଁ ହୁଏ ଭବିଷ୍ୟତ ଜୀବନର ପାଥେୟ । ତା'ରି ଭିତରେ ଯେତେ ଉତ୍ଥାନ, ପତନ ସବୁ ଅନାଗତର ଅଭିଜ୍ଞତା-ଖାତାରେ ଲେଖା ହୋଇଯାଏ । ସବୁ ପୁଣି ପଛକୁ ଚାଲିଯାଏ ବିସ୍ମୃତିର ଫସିଲ୍ ପାଲଟିଯାଏ । ପୁଣି କେବେ ଏକାନ୍ତରେ ଚିହ୍ନା ମୁହଁ ଆଖି ଆଗରେ ଝଲସି ଉଠେ । ସ୍ମୃତି ସବୁ ବିସ୍ମୃତିର ଫସିଲ ଭିତରୁ ସତେଜ ହୋଇ କଥାକହେ । ଆଉ ସେହି ସ୍ମୃତିଚାରଣ ହିଁ ବୋଧେ ଜୀବନ ନାମକ ଗ୍ରନ୍ଥର ଏକ ରୋମାଞ୍ଚକର ଅଧ୍ୟାୟ ।

ମୋ ଜୀବନର ଏମିତି ଏକ ଅଧ୍ୟାୟ କଥା ଆଜିବି ସ୍ମୃତିରେ ଜୀବନ୍ତ । ୧୯୬୫ ମସିହା ଜୁଲାଇ ୨ୟ ସପ୍ତାହ । ଫକୀରମୋହନ କଲେଜରେ ନୂଆକରି ପାଦ ଦେଇଛି । ହୃଦୟରେ ଅହେତୁକ ସ୍ପନ୍ଦନ । ମନରେ ଅଜଣା ଆଶଙ୍କା ଓ ପୁଲକର ଅଭିନବ ସମନ୍ୱୟ । ଗାଁ ସ୍କୁଲର ହ୍ୟାପ୍‌ପ୍ୟାଣ୍ଟ ସଂସ୍କୃତି ପୂରା ଲିଭିନି, ଏଣେ କଲେଜର ଫୁଲପ୍ୟାଣ୍ଟ୍‌ର ସମ୍ମୋହନ ଭିତରେ ଅନେକ ବ୍ୟଗ୍ରତା । (ମାଟ୍ରିକ ପରୀକ୍ଷାରେ ପ୍ରଥମ ୧୫ ଜଣଙ୍କ ଭିତରେ ଥିବାରୁ ଛାତିରେ ମୋର ଛାତିଏ ଦମ୍ଭ । ଅନ୍ୟ ଏକ ଆଶଙ୍କା-ବନ୍ଧୁ ସୁକୋମଳ ବର୍ଦ୍ଧନ, ଯିଏ ମୋ ଉପରେ ୬ଷ୍ଠ ସ୍ଥାନ୍ ଅଧିକାର କରି କ୍ଲାସରେ ଟପର୍) ।

ଆଜି ବି ମନେ ପଡୁଛି, ପ୍ରଥମ କ୍ଲାସଟି ବିଜ୍ଞାନରେ ସୌମ୍ୟଦର୍ଶୀ ଅଧ୍ୟାପକ ଟି.ଏମ୍. ପଟ୍ଟନାୟକ C.L.T. (Chemistry Lecture Theatre) କୁ ପଶି ଆସିଲେ । ପ୍ରଥମ ଦୁଇଧାଡ଼ିରେ ଝିଅପିଲା ଏବଂ ସହରର ପ୍ରମୁଖ ବିଦ୍ୟାଳୟ ଜିଲ୍ଲାସ୍କୁଲ ଓ ଟାଉନ୍ ହାଇସ୍କୁଲର ପିଲାମାନେ ଛିଡ଼ା ହୋଇ good morning Sir କହିଲା ବେଳକୁ ପଛଧାଡ଼ିର ମଫସଲ ପିଲାମାନେ ନୀରବରେ ଉଠି ଛିଡ଼ାହେଲେ । କେହିକେହି ସ୍ୱଭାବବଶତଃ ନମସ୍କାର ସାର୍ କିମ୍ବା ମନକୁ ମନ ହାତଯୋଡ଼ି ନମସ୍କାର କରିଥିଲେ । କେହିକେହି ମେରୁଦଣ୍ଡକୁ ଅଧାନତ କରି ନମସ୍କାର ଜଣାଇଥିଲେ । ଏହା ଆଜିର ସମାଜରେ ଏକ ହାସ୍ୟାସ୍ପଦ ଦୃଶ୍ୟ ହୋଇପାରେ, କିନ୍ତୁ ସେ ଦିନର ଏହି ସାକ୍ଷାତ ଥିଲା ସଂସ୍କାରର ପାର୍ଥକ୍ୟ ଓ ସଂଯୋଗ । ଅବଶ୍ୟ ତା ପରଠୁ ଆମେ ସମସ୍ତେ ସହରୀ ସଂସ୍କାର ସହିତ ସାମିଲ ହୋଇଥିଲୁ ଏବଂ ଗୋଟିଏ ସଂସ୍କାରର ମନ୍ଥର ମୃତ୍ୟୁକୁ ଆହ୍ୱାନ କରିଥିଲୁ । ତାପରେ ରୋଲ୍‌କଲ ଏବଂ ବିନା ପରିଚୟରେ ଆରମ୍ଭ ହେଲା ପାଠପଢ଼ା । ଅଦ୍ଭୁତ କୌଶଳରେ କୁଶଳୀ କଳାକାର ଭଳି ସେ ତାଙ୍କର କ୍ଲାସ ଶେଷ କରିଥିଲେ । ଆମେ କିଛି ତଟସ୍ଥ ହୋଇଥିଲୁ । ବିନା ପରିଚୟ, ବିନା ଭାବର ଆଦାନପ୍ରଦାନରେ, ବିନା ଚିହ୍ନାପରିଚୟରେ ଏକ ନୂତନ ଶିକ୍ଷାର ଗଣ୍ଡି ଭିତରକୁ ଆମେ ପଶି ଆସିଲୁ । ଗୁରୁକୁଳର ମହନୀୟତା, ଚାଟଶାଳୀର ଡର, ଗୁରୁଶିଷ୍ୟର ଆତ୍ମୀୟତା ହଠାତ୍ କେମିତି ହଜିଗଲା ପରି ମନେହେଲା । ପଛକୁ ପଛ Physics, Mathematics ଆଦି କ୍ଲାସରେ ଆମେ ଯନ୍ତ୍ରଚାଳିତ ପରି ଅଂଶଗ୍ରହଣ କଲୁ ।

ତାପରେ ଯେତେଦୂର ମନେ ପଡୁଛି ସାଧାରଣଜ୍ଞାନ କ୍ଲାସର ଦୁଇଟି ବିଭାଗ (Section A & B) ମିଶି ବଡ଼ ହଲରେ ଆରମ୍ଭ ହେଲା । ରିଡର ରାଜେନ୍ଦ୍ର ପ୍ରସାଦ ଦାସ ସେ କ୍ଲାସ୍‌ଟି ନେଉଥିଲେ । ପ୍ରଥମ ଥର ପାଇଁ ପରିଚୟ ପର୍ବ ଆରମ୍ଭ ହେଲା । ପ୍ରତ୍ୟେକ ନିଜର ନାମ ଓ କେଉଁ ସ୍ଥାନରୁ ଆସିଛନ୍ତି ସଂକ୍ଷେପରେ

କହିଗଲେ । ତାପରେ କେତେଜଣ ପ୍ରଥମ ଶ୍ରେଣୀରେ ପାସ୍ କରିଛନ୍ତି, ଛିଡ଼ା ହେବାକୁ କହିଲେ । ୨୫୬ ଜଣ ଛାତ୍ରଛାତ୍ରୀ ଭିତରେ ୧୨୮ ଜଣ ପ୍ରଥମ ଶ୍ରେଣୀରେ ପାସ୍ କରିଥିଲେ । ସେତେବେଳେ ମାଟ୍ରିକ୍ ଫାଷ୍ଟ ଡିଭିଜନରେ ପାସ୍ କିରବା କାଁ ଭାଁ ଘଟଣା । ୧୨୮ ଜଣ ପ୍ରଥମ ଶ୍ରେଣୀ ୧୯୬୫ ମସିହାରେ ଏକ ରେକର୍ଡ଼ ପରିସଂଖ୍ୟାନ । ରେଭେନ୍‌ସା କଲେଜ ବ୍ୟତୀତ ଏତେ ସଂଖ୍ୟାରେ ଅନ୍ୟ କୌଣସିଠି ଏତେ ବେଶି ପ୍ରଥମ ଶ୍ରେଣୀରେ ପାସ୍ କରିଥିବା ଛାତ୍ର ନ ଥିଲେ ।

ସମୟ ଗଡ଼ିଗଲା । କ୍ଲାସ ପରେ କ୍ଲାସ ଶେଷ ହୋଇଗଲା । ସାଙ୍ଗମାନଙ୍କ ସହ ବନ୍ଧୁତା ଜମି ଉଠିଲା । କିନ୍ତୁ ସହର ମଧ୍ୟରେ ବିଭିନ୍ନ ସ୍ଥାନରେ ମେସ୍ ଥିବାରୁ ଓ ତା' ମଧ୍ୟରେ ଦୂରତା ଅଧିକ ଥିବାରୁ ବ୍ୟକ୍ତିଗତ ବନ୍ଧୁତା ବୃଦ୍ଧି ହେବାର ପ୍ରତିବନ୍ଧକ ଥିଲା । Practical Class ଓ Theory classରେ ଅଧ୍ୟାପକମାନଙ୍କ ସହ ସମ୍ପର୍କ ସ୍ଥାପିତ ହେଲା, କିନ୍ତୁ ଆନ୍ତରିକତାର ଅଭାବ ଥିଲା । ତାହା ପରିପ୍ରକାଶ ହେଲା Pre-University ବାର୍ଷିକ ପରୀକ୍ଷା ଫଳରେ । ସେହ ବର୍ଷ ସମୁଦାୟ ଓଡ଼ିଶାରୁ ମେଟ୍ରିକ୍ୟୁଲେସନ ପରୀକ୍ଷାରେ ଉତ୍ତୀର୍ଣ୍ଣ ହୋଇଥିବା ୧୦୨୫ ଜଣ ଫାଷ୍ଟକ୍ଲାସ ପରୀକ୍ଷାର୍ଥୀଙ୍କ ମଧ୍ୟରୁ Science Stream ରେ ପ୍ରାୟ ୧୦୧ ଜଣ ପ୍ରଥମ ଶ୍ରେଣୀରେ ପାଶ କରିଥିଲେ ଏବଂ Arts ଓ Commerce stream ରେ ପ୍ରାୟ 15 ଜଣ ଛାତ୍ରଛାତ୍ରୀ ପ୍ରଥମ ଶ୍ରେଣୀରେ କୃତକାର୍ଯ୍ୟ ହୋଇଥିଲେ । ମୁଁ ଅବଶ୍ୟ ପ୍ରଥମ ଶ୍ରେଣୀରେ ପାସ୍ କରିଥିଲି । ବନ୍ଧୁ ସୁକୋମଳ ବିଶ୍ୱବିଦ୍ୟାଳୟରେ ପ୍ରଥମ ସ୍ଥାନ ଅଧିକାର କରିଥିଲେ । ମ୍ୟାଟ୍ରିକ୍ ପରୀକ୍ଷାରେ ପ୍ରଥମ ଶ୍ରେଣୀରେ ପାସ୍ କରିଥିବା ବହୁ ଛାତ୍ରଛାତ୍ରୀ ପରୀକ୍ଷାରେ ଅକୃତକାର୍ଯ୍ୟ ମଧ୍ୟ ହୋଇଥିଲେ । ଗୋଟାଏ ବର୍ଷରେ ଏତେଟା ଅବନତି କଲେଜର ପାଠପଢ଼ାର ପ୍ରଣାଳୀ ଯେ ଦାୟୀ-ଏଥିରେ ସନ୍ଦେହ ନାହିଁ ।

ଜୀବନର ଅପରାହ୍ନରେ ଏକଥା ମନେପଡ଼ିଲେ ଦୁଃଖ ହୁଏ । ସେତେବେଳର ପ୍ରଶାସକ, ଶିକ୍ଷା ବିଭାଗର କର୍ମକର୍ତ୍ତାମାନେ ଏହି ଫଳାଫଳ ପ୍ରତି ସଚେତନ ଥିଲେ କି ନା ମୁଁ ଜାଣିନାହିଁ । କଲେଜର ପାଠପଢ଼ା ପ୍ରଣାଳୀର ପରିବର୍ତ୍ତନର ଆବଶ୍ୟକତା ଅଛି କି ନାହିଁ-ଏ ସମ୍ବନ୍ଧରେ କୌଣସି ତର୍କ ବିତର୍କ ନ ହେବାଟା ମୁଁ ଜାଣିଛି । ଏତେ ବଡ଼ ଦୁର୍ଘଟଣା ଘଟିଗଲା, ଓଡ଼ିଶାର ମେଟ୍ରିକ୍ୟୁଲେସନ୍ ପରୀକ୍ଷାରେ ୧୦୨୫ ପ୍ରଥମ ଶ୍ରେଣୀରେ ପାସ୍ କରିଥିବା ପିଲାଙ୍କ ମଧ୍ୟରୁ ୧୧୬ ଜଣ ମାତ୍ର ପ୍ରଥମ ଶ୍ରେଣୀ ପାଇଲେ ଏବଂ ପ୍ରାୟ ୨୦% ପିଲା ଅକୃତକାର୍ଯ୍ୟ ହେଲେ -ତାହା ଯେ କୌଣସି ସଭ୍ୟ ସମାଜକୁ ଦୋହଲାଇ ଦେଇଥାନ୍ତା ।

ଏହାର କାରଣ ସେତେବେଳେ ତରୁଣ ମନକୁ ଛୁଇଁ ନଥିଲେ ବି ଆଜି ମନେହୁଏ, ସେତେବେଳେ ଗୁରଶିଷ୍ୟର ଗୋଟିଏ ଦୂରଦୂର ଭାବ ଛାତ୍ରମାନଙ୍କୁ ହୁଏତ ପାଠପଢ଼ାରୁ ବିମୁଖ ବା ଅନୁତ୍ସାହିତ କରିଥିବ । କିଛି ହୁଏତ ହଠାତ୍ ସହରୀ ସଭ୍ୟତାରେ ନିଜକୁ ଲଗାମ୍‌ଛଡ଼ା କରି ଦେଇଥିବେ, ଆଉ କିଛି ବାଧ ବାଧକତାରେ ବିଜ୍ଞାନ ପଢ଼ି ନିଜର ରୁଚିରୁ ଦୂରରେ ରହି ଏଭଳି ଦୁର୍ଘଟଣାର ସମ୍ମୁଖୀନ ହୋଇଥିବେ । ସେତେବେଳେ ଭଲପିଲାମାନେ ଫାଷ୍ଟକ୍ଲାସ, ଫାଷ୍ଟକ୍ଲାସ-ମାନେ ବିଜ୍ଞାନ ପାଠ, କିଛି ନ ହେଲେ ବି ଜଣେ ସ୍କୁଲରେ ବିଜ୍ଞାନ ଶିକ୍ଷକଟିଏ ହୋଇପାରିବ । କେହି ଗାଇଡ୍ କରିବାକୁ ନାହାନ୍ତି । ବାପା, ମା' ସୁଅ ଅନୁସାରେ ଯିବାକୁ କହନ୍ତି କିମ୍ୱା ନିଜ ଅଜ୍ଞାତରେ ବୋଝକୁ ପୁଅର ବା ଶିକ୍ଷକଙ୍କ ସିଦ୍ଧାନ୍ତ ଉପରେ ଛାଡ଼ି ଦିଅନ୍ତି । ଆଜିବି ବହୁ ମେଧାବୀ ଛାତ୍ର ସେହି ପରମ୍ପରାର ଶିକାର ହୋଇ ଚାଲିଛନ୍ତି । ବିଜ୍ଞାନ ପଢ଼, ଡାକ୍ତର ନ ହେଲେ ଇଂଜିନିୟର ହୁଅ, ନ ହେଲେ Physcis ଅନର୍ସ ନିଅ କିମ୍ବା ଏବର ସଭ୍ୟତାର କମ୍ପ୍ୟୁଟର୍ ଶିକ୍ଷାରେ ସାମିଲ୍ ହୁଅ । ରୁଚି ବା ଲୁକ୍କାୟିତ ପ୍ରତିଭାର ବିକାଶ ପାଇଁ ଏବେ ବି କେହି ପାଠ ପଢୁନାହାନ୍ତି । ଏହାହିଁ ବୋଧେ ଆମ ଶିକ୍ଷାର ବିଡ଼ମ୍ବନା ।

ସମୟ ଗଡ଼ି ଚାଲିଲା । କଲେଜର ୨ୟ ବର୍ଷ (Pre-professional course)ରେ ପୂର୍ବଭଳି

ବାର୍ଷିକ ପରୀକ୍ଷା ହେବ । ପ୍ରଥମ ବର୍ଷର ଉଦ୍‌ବେଗ, ଉତ୍କଣ୍ଠା ଆଜି ନାହିଁ । ବନ୍ଧୁମାନଙ୍କ ସହ ଭାବର ଆଦାନ ପ୍ରଦାନରେ ପରିବେଶର ଉନ୍ନତି ହେଲାଣି । କଲେଜର ଅଧ୍ୟାପକମାନଙ୍କର ଚାଲି ଚଳନ, ପଢ଼ାଇବାର ପ୍ରଣାଳୀ, ସମୟ ବିତାଇବା ପାଇଁ କତିପୟ ଅଧ୍ୟାପକଙ୍କ ଗପ କରିବାର ଶୈଳୀ ସହ ସମଝୋତା ହୋଇ ସାରିଲାଣି । ଜଟିଳ ପାଠର ସମାଧାନ ପାଇଁ ଅଧ୍ୟାପକମାନଙ୍କ ସାହାଯ୍ୟ ଲୋଡ଼ିବାକୁ ପୂର୍ବଭଳି ଲାଜ ଓ ଭୟ ଲାଗୁନାହିଁ । କିନ୍ତୁ ପଢାଇବାର ପ୍ରଣାଳୀ ପୂର୍ବବତ୍ । Technical Career ବାଛିବା ପାଇଁ ଏହି ବର୍ଷଟି minimum qualification ହୋଇଥିବାରୁ ପରୀକ୍ଷାରେ ଭଲ କରିବା ପାଇଁ ସମସ୍ତେ ଚେଷ୍ଟା କରୁଥାନ୍ତି । ସେତେବେଳେ ମାର୍କ ଅନୁସାରେ ମେଡିକାଲ/ଇଞ୍ଜିନିୟରିଂ କୋର୍ସରେ ଆଡମିସନ ହେଉଥିବାରୁ ପଢ଼ାପଢ଼ିରେ ସମସ୍ତେ ଲାଗି ପଡ଼ିଥାନ୍ତି ।

ଅବଶ୍ୟ ପ୍ରି ପ୍ରଫେସନାଲ ବେଳକୁ ଛାତ୍ରଶିକ୍ଷକ ସଂପର୍କ ଅଧିକ ମଜଭୂତ ହୋଇଯାଇଥାଏ । ଅନେକ ଛାତ୍ରବତ୍ସଳ ଶିକ୍ଷକ, ଅନେକ ଜ୍ଞାନୀଗୁଣୀ, ଔଦାର୍ଯ୍ୟପୂର୍ଣ୍ଣ ଶିକ୍ଷକଙ୍କ ପ୍ରତିଭା ଧୀରେ ଧୀରେ ଉନ୍ମୋଚିତ ହେଉଥାଏ । ସେମାନଙ୍କ ମଧରେ ଦୁର୍ଗା ଦାସପଟ୍ଟନାୟକ, ଜୀବନ ମହାପାତ୍ର, ଶଶୀଭୂଷଣ ମିଶ୍ର, (Physics) ଟି.ଏମ୍. ପଟ୍ଟନାୟକ, (Chemistry) କେ.କେ. ପଟ୍ଟନାୟକ, ନିଭା ଦାସ (Zoology) ସିନ୍ଧୁମତୀ ଆଚାର୍ଯ୍ୟ (Mathematics), ବସନ୍ତ କୁମାର ଶତପଥୀ, ମହାଜିତେଶ୍ୱର ଦାସ (ଇଂରାଜୀ), ଚିନ୍ତାମଣି ବେହେରା ଓ ଗଙ୍ଗାଧର ବଳ (ଓଡ଼ିଆ), ଜଗନ୍ନାଥ ପଟ୍ଟନାୟକ, ରାଜେନ୍ଦ୍ର ପ୍ରସାଦ ଦାସ (Humanities) ତଥା ଅଧକ୍ଷ ଅଜୟ ବୀର, ପିଲାଇ, ରାଜଗୁରୁ ଆଦି ପ୍ରମୁଖ ଥିଲେ । ପ୍ରାୟ ୪୦ବର୍ଷ ତଳର କଥା । ଧୀରେ ଧୀରେ ସ୍ମୃତି ଫିକା ପଡ଼ି ଆସୁଛି ।

ଆମ୍ଭେ କେତେକ ବନ୍ଧୁ Pre-professional Courseରେ Engineering ଓ Medical Course ପାଇଁ ଯୋଗ୍ୟତା ଲାଭ କରିଥିଲେ ମଧ୍ୟ ଭବିଷ୍ୟତରେ ପଦାର୍ଥ ବିଜ୍ଞାନରେ ବୈଜ୍ଞାନିକ ହେବାପାଇଁ ସ୍ଥିର କରି B.Sc. (Hons.) ପଢ଼ିଲୁ । ସେତେବେଳେ ଓଡ଼ିଶାରୁ ଯାଇ ଆମେରିକାରେ ବହୁ ପଦାର୍ଥ ବିଜ୍ଞାନୀ ସୁନାମ ଅର୍ଜନ କରିବା ସଙ୍ଗେ ସଙ୍ଗେ ଅଧିକ ଅର୍ଥ ଆୟ କରୁଥିବା ଆମ ଦୃଷ୍ଟିକୁ ଆସିଥିଲା । ନୂଆ ଆଶା, ନୂଆ ସ୍ୱପ୍ନ ନେଇ B.Sc. (Hons.)ରେ ଯୋଗଦେଲୁ । କ୍ରମଶଃ କଲେଜ ପରିସରରେ ଆମର ଗୋଟିଏ cohesive ଗୋଷ୍ଠୀ ଗଢ଼ିଉଠିଲା । ପ୍ରଥମ ଥର ପାଇଁ Hons. ପିଲାଙ୍କ ଜରିଆରେ ଆମ୍ଭେମାନେ ଗଣେଶ ପୂଜା ଓ ସରସ୍ୱତୀ ପୂଜା କଲେଜରେ ପାଳନ କଲୁ । ପୂଜାପାଇଁ ସନ୍ନିକଟ ପାର୍କରୁ ଫୁଲ ଓ କ୍ରୋଟନ୍ ଡାଳ ରାତି ଅଧରେ ଚୋରି କରିବା, ପୋକଲାଗି ହାତରେ ଘା ହେବା ବର୍ତ୍ତମାନ ସୁଦ୍ଧା ମନେଅଛି ।

B.Sc. କ୍ଲାସରେ tutorial class ଆରମ୍ଭ ହେଲା । Mathematicsରେ Prof. ସିନ୍ଧୁମତୀ ଆଚାର୍ଯ୍ୟ ଆମର tutorial class ନେଉଥିଲେ । ସେ ନିୟମିତ ଭାବରେ ଆସୁଥାନ୍ତି । ଜଟିଳ problemକୁ ବ୍ଲାକବୋର୍ଡରେ ସମାଧାନ କରୁଥିଲେ । କ୍ଲାସ ଶେଷରେ ବେଲ୍ ବାଜିଲେ ସେ ଚାଲି ଯାଉଥିଲେ । ଅଧ୍ୟାପକ ଓ ଛାତ୍ରଙ୍କ ସଂପର୍କ, ଛାତ୍ରମାନଙ୍କର ସାମାଜିକ ତଥା-ସମସ୍ୟା ବିଷୟରେ ଆଲୋକପାତ କରୁନଥିଲେ । ତେଣୁ tutorial class private tution ଭଳି ହେଉଥିଲା । Arts ବିଭାଗରେ ଏହା ଘଟୁ ଥିଲା କି ନା - ମୋର ମନେନାହିଁ; କିନ୍ତୁ ଛାତ୍ର ଓ ଅଧ୍ୟାପକମାନଙ୍କ ମଧରେ ଫାଙ୍କ ଥିଲା ବୋଲି ମୋର ମନେହୁଏ । ତାହା ପ୍ରତିଫଳିତ ହୋଇଥିଲା ସେହିବର୍ଷ ଛାତ୍ର ଆନ୍ଦୋଳନରେ । ସେତେବେଳେ ଛାତ୍ର ଇଉନିୟନର ସଭାପତି ଥାଆନ୍ତି ଶ୍ରୀ ରାଧାନାଥ ଶତପଥୀ, ସମ୍ପାଦକ ଶ୍ରୀ ଅରୁଣ ଦେ, ହାଇସ୍କୁଲ ବେଳର ବନ୍ଧୁ କମଳାକାନ୍ତ ପଣ୍ଡା ଥାଆନ୍ତି ଉପ-ସଭାପତି ।

ଛାତ୍ର ଆନ୍ଦୋଳନ ସବୁବେଳେ ମୁଷ୍ଟିମେୟ ଛାତ୍ରଙ୍କ ଦ୍ୱାରା ମୁଣ୍ଡଟେକି ଉଠେ । ଅଧିକାଂଶ ଛାତ୍ର ଏହି ଛାତ୍ରନେତାଙ୍କୁ ଡରି ଏହି ଆନ୍ଦୋଳନଠାରୁ ନିଜକୁ ଦୂରେଇ ରଖିଥାନ୍ତି । ପ୍ରିନ୍‌ସିପାଲ୍ ଓ ଅଧ୍ୟାପକମାନେ

ମଧ ଏହାକୁ ସମାଧାନ କରିବାପାଇଁ proactive role ନେଇଥାନ୍ତି । ସେତେବେଳେ ଶିକ୍ଷାନୁଷ୍ଠାନକୁ ପୋଲିସ୍ ପଶି ପାରିବେ ନାହିଁ ବୋଲି ପ୍ରଥା ଥିବାରୁ ପ୍ରଶାସନ ମଧ ଏଥିରେ ବେଶି ମୁଣ୍ଡ ପୂରାଉ ନଥିଲେ । ପ୍ରାୟ ୩ ସପ୍ତାହରୁ ଅଧିକ ଦିନ ଆନ୍ଦୋଳନ ଚାଲିଲା । ଇଉନିୟନର ସଭାପତି, ଉପ-ସଭାପତି ଓ ବହୁ ଛାତ୍ର ଏହାକୁ ଭାଙ୍ଗିବା ପାଇଁ ଚେଷ୍ଟା କରୁଥିଲେ । ଶେଷରେ ଟାଉନ୍‌ହଲ ପଡ଼ିଆଲେ ଅଭିଭାବକ ଓ ଛାତ୍ରମାନଙ୍କର ଏକ ସଭା ଆହୂତ ହେଲା । ମୋତିଗଞ୍ଜ, ବାରବାଟୀ ଅଞ୍ଚଳରେ ମାଇକରେ ପ୍ରଚାର କରି ଅଭିଭାବକମାନଙ୍କୁ ଡାକିବା ପାଇଁ ମୋ ଉପରେ ଦାୟିତ୍ୱ ପଡ଼ିଥିଲା । ରିକ୍‌ସାରେ ମାଇକ ଧରି ଗଳିଗଳି ବୁଲି ଅଭିଭାବକମାନଙ୍କୁ ନିମନ୍ତ୍ରଣ କରିବାପାଇଁ ମୁଁ ବାହାରି ପଡ଼ିଲି । ବାରବାଟୀ ଗଳିରେ କେତେକ ଦୁର୍ବୃତ୍ତ ମୋ ରିକ୍‌ସାକୁ ଅଟକାଇ ଏହାର ଚକାରୁ ପମ୍ପ ବାହାର କରିଦେଲେ । ମାଇକର ତାର ଛିଡ଼ାଇନେଲେ । ଅନ୍ୟମାନେ ମଧ ସମାନ ଅବସ୍ଥାର ସମ୍ମୁଖୀନ ହୋଇଥିଲେ । ନିର୍ଦ୍ଧାରିତ ସମୟରେ ସେଦିନ ସନ୍ଧ୍ୟାରେ ଟାଉନ୍‌ହଲ୍ ଆଗ ପଡ଼ିଆରେ ସଭାହେଲା । ଅଳ୍ପ ସଂଖ୍ୟକ ଅଭିଭାବକ ଆସିଥିଲେ ମଧ ଆଲୋଚନା ଫଳପ୍ରଦ ହୋଇଥିଲା । ସବୁ ଆନ୍ଦୋଳନ ଭଳି ଏହି ଆନ୍ଦୋଳନ ପ୍ରତିଶ୍ରୁତିରେ ଉଠିଗଲା । ଛାଡ଼ିଗଲା ଛାତ୍ରନେତାଙ୍କ ନାମରେ ଗୁଡ଼ାଏ ପୋଲିସ୍ କେଶ୍ । ପରବର୍ତ୍ତୀ ଜୀବନରେ ଏହି ପୋଲିସ୍ କେଶ୍ ତାଙ୍କ ଜୀବନରେ କଣ୍ଟାଦାଗ ହୋଇ ରହିଗଲା ।

B.Sc. ଶେଷବର୍ଷ । ମୋତିଗଞ୍ଜରେ ଥିବା ବୀଣାପାଣି ମେସ୍ ଛାଡ଼ି North Hostel ରେ ରହିବାକୁ ଆସିଲି । ମେଧାବୀ ପିଲାମାନଙ୍କୁ ରହିବା ପାଇଁ single room ମିଳୁଥିଲା । ମୋ ପାଖ ରୁମରେ ବନ୍ଧୁ ରବୀନ୍ଦ୍ର ପ୍ରଧାନ ରହୁଥିଲେ । ସେ ବର୍ତ୍ତମାନ F.M. Collegeର ରସାୟନ ବିଭାଗର ଅଧ୍ୟାପକ । ହଷ୍ଟେଲରେ ଶୃଙ୍ଖଳା ରଖିବାପାଇଁ ମୋତେ prefect ଭାବରେ ନିଯୁକ୍ତ କରାଯାଇଥିଲା । ପ୍ରଫେସର ଯଦୁମଣି ମହାପାତ୍ର North Hostelର Superintendent ଥିଲେ ଏବଂ South Hostel ର Superintendent ଥିଲେ ପ୍ରଫେସର ଜଗନ୍ନାଥ ପଟ୍ଟନାୟକ । ହଷ୍ଟେଲ ମ୍ୟାନେଜମ୍ୟାଣ୍ଟ ଓ ଅନ୍ତେଃବାସୀଙ୍କ ମଧ୍ୟରେ ବୁଝାମଣାର ଅଭାବ ଥିଲା । Superintendentଙ୍କ ସହ ପିଲାମାନଙ୍କର ସାକ୍ଷାତ ପ୍ରାୟ ହେଉନଥିଲା । ସନ୍ଧ୍ୟା ପୂର୍ବରୁ ସେ ହଷ୍ଟେଲକୁ ଆସି ତାଙ୍କର ଅଫିସ କାମ କରୁଥିଲେ । ଏହି ସମୟରେ ଅନ୍ତେଃବାସୀମାନେ ଖେଳ ପଡ଼ିଆ, କ୍ଲାସ କିମ୍ବା ବଜାରରେ ଥାଆନ୍ତି । ସେ ଜନୈକ ପିଅନକୁ ପ୍ରାଧାନ୍ୟ ଦେଉଥିବାରୁ ଏବଂ ସେ ପିଅନ ହଷ୍ଟେଲର ଅନ୍ତେଃବାସୀମାନଙ୍କର କାମ ସୁଚାରୁ ରୂପରେ କରୁ ନଥିବାରୁ ସନ୍ଦେହର ବାତାବରଣ ସମ୍ପର୍କକୁ ଘୋଡ଼ାଇ ରଖିଥିଲା । ଅଶାନ୍ତିର ଚିହ୍ନ ପ୍ରାୟ ପ୍ରତ୍ୟେକ ଅନ୍ତେଃବାସୀଙ୍କ ମୁହଁରେ ଦେଖା ଦେଉଥିଲା । ହଷ୍ଟେଲରେ ସାମୂହିକ ଜୀବନର ଛାପ ନଥିଲା । ସ୍ୱାଧୀନତା ପୂର୍ବର ପ୍ରଶାସନିକ ଢାଞ୍ଚା ଷଷ୍ଠ ଦଶକରେ ମଧ ପ୍ରଚଳିତ ଥିଲା । କଲେଜ ଓ ହଷ୍ଟେଲର ଛାତ୍ରମାନେ ନିର୍ଦ୍ଦେଶପାଇଁ ଆଧ୍ୟାପକମାନଙ୍କ ପାଖକୁ ଯାଉଥିଲେ । ଭବିଷ୍ୟତର କର୍ମପନ୍ଥା କିମ୍ବା ବିପଦକୁ ଏଡ଼ାଇବା ପାଇଁ ଆଲୋଚନା କରିବାକୁ ସେମାନଙ୍କ ପାଖରେ ସମୟ ନଥିଲା ।

B.Sc/B.A. ର ଶେଷ ପରୀକ୍ଷା ଚାଲିଥାଏ । ପିଲାମାନେ ପରୀକ୍ଷାରେ ମାତି ଯାଇଥାନ୍ତି । ଏପ୍ରିଲ ମାସର ଏକ ସନ୍ଧ୍ୟାରେ North Hostelର ବିଦ୍ୟୁତ ଲାଇନ ହଠାତ୍ ବିଚ୍ଛିନ୍ନ ହୋଇଗଲା । ପୂର୍ବ ଅଭିଯୁକ୍ତ ପିଅନଟିକୁ Sub-station ଯାଇ ବିଦ୍ୟୁତ ସଂଯୋଗ କରିବା ପାଇଁ ନିର୍ଦ୍ଦେଶ ଦିଆଯାଇଥିଲେ ହେଁ ସେ ଏ କାମ ନକରି ଡାଇନିଙ୍ଗ୍ roomରେ ତାସ ଖେଳୁଥିବାର ଦେଖାଯାଇଥିଲା । ସମସ୍ତ ପିଲା ପରୀକ୍ଷା ପାଇଁ ଗରମରେ ଲଣ୍ଠନ ଆଲୁଅରେ ବାଧ୍ୟ ହୋଇ ପଢୁଥିଲେ । ରାତି ୯.୩୦ ମିନିଟ୍‌ରେ ରାତ୍ରି ଭୋଜନ କରିବାକୁ ଆସି ତାସ ଖେଳୁଥିବା ଅବସ୍ଥାରେ ପିଅନକୁ ଦେଖିବାକୁ ପାଇଥିଲୁ । ପ୍ରାୟ ୧୦ ମାସ ଧରି ତାର ବ୍ୟବହାରରେ ମାନସିକ ସ୍ତରରେ ସନ୍ତୁଳିତ ହେଉଥିବା ପିଲାମାନେ ସଙ୍ଗେସଙ୍ଗେ ତାକୁ ନିର୍ଦ୍ଧୁମ ପ୍ରହାର

କରିଥିଲେ । ଏହି ଘଟଣା ୧ ଘଣ୍ଟାରୁ ଅଧିକ ସମୟ ଚାଲିଥିଲା । ଘଟଣାର ସତ୍ୟାସତ୍ୟ ବୁଝିବାପାଇଁ Superintendent କେବେ ଚେଷ୍ଟା କରିନାହାନ୍ତି; କିନ୍ତୁ ଶୁଣାଗଲା କଲେଜରୁ କିଛି ଅନ୍ତେଃବାସୀଙ୍କୁ ବିତାଡ଼ିତ କରିବାପାଇଁ ସେ ସେତେବେଳର ପ୍ରିନ୍‌ସପାଲ ଶ୍ରୀଯୁକ୍ତ ପିଲାଇଙ୍କୁ ପ୍ରଭାବିତ କରିବାକୁ ଚେଷ୍ଟା କରି ଅକୃତକାର୍ଯ୍ୟ ହୋଇଥିଲେ । ଅଭିଯୁକ୍ତ ପିଅନ ଆଉ ହଷ୍ଟେଲକୁ ଫେରି ନଥିଲା ।

ଷଷ୍ଠ ଦଶକରେ କଲେଜରେ ପ୍ରାୟ କପି ହେଉନଥିଲା । କାଁ ଭାଁ କପି ହେବାଟା ଶୁଣା ଯାଉଥିଲା । ମୁଁ କିନ୍ତୁ କେବେ କପି କରି ନଥିଲି । ଛାତ୍ରଛାତ୍ରୀମାନଙ୍କର ଅଧ୍ୟାପକ/ଅଧ୍ୟାପିକାମାନଙ୍କ ପ୍ରତି ସମ୍ମାନବୋଧଥିଲା, କିନ୍ତୁ ଆତ୍ମୀୟତା ନଥିଲା । ପ୍ରାଇମେରୀ ଓ ହାଇସ୍କୁଲରେ ଶିକ୍ଷକ -ଛାତ୍ର ସମ୍ପର୍କର ନିବିଡ଼ତା କଲେଜରେ ଅନୁଭୂତ ହେଉନଥିଲା । ହୋଇପାରେ, ବଡ଼ ପରିବେଶ ଏଥିପାଇଁ ଦାୟୀ, କିନ୍ତୁ ସେତେବେଳେ ଆଭିମୁଖ୍ୟ ପରିବର୍ତ୍ତନ ଆବଶ୍ୟକତାକୁ ସରକାର ପରେ ଅନୁଭବ କରି ସିଷ୍ଟମର ବ୍ୟାପକ ପରିବର୍ତ୍ତନ କରିଛନ୍ତି ।

ଜୀବନର ଚାରିବର୍ଷ ଫକୀରମୋହନ ମହାବିଦ୍ୟାଳୟରେ ସୁରୁଖୁରରେ ବିତିଗଲା । ବୋର୍ଡ଼ ପରୀକ୍ଷାର ଫଳାଫଳକୁ ପାଥେୟ କରି ଜୀବନ-ନାଟକର ଏକ ସେତୁବନ୍ଧ ବାନ୍ଧିବା ପାଇଁ ଏହି ଅନୁଷ୍ଠାନରେ ମୁଁ ନିଜକୁ ହଜାଇ ଦେଇଥିଲି । କିନ୍ତୁ କୌଣସି ଗୋଲାପ କଢ଼ି କିମ୍ବା କୃଷ୍ଣଚୂଡ଼ା ବୃକ୍ଷମୂଳରେ ଅଟକି ଯାଇନାହିଁ । ସେ ସମୟବି ଅଲଗା ଥିଲା । ଏକବିଂଶ ଶତାବ୍ଦୀର ଖୋଲା ଦୁନିଆଠାରୁ ବିଂଶ ଶତାବ୍ଦୀର ଷଷ୍ଠ ଦଶକ ପୃଥକ୍ ଥିଲା ।

କିନ୍ତୁ ବନ୍ଧୁ ପ୍ରଭଞ୍ଜନ ତାଙ୍କର ସୁନ୍ଦରୀ ସହପାଠିନୀକୁ ନିଜର ପ୍ରେମ ନିବେଦନ କରିବାକୁ ଦୀର୍ଘଦିନ ଅସମର୍ଥ ହୋଇ ହଠାତ୍ ତାର ପ୍ରିୟ କୁକୁରକୁ ଭଲ ପାଇ ବସିଲେ, ଆଉ ବାନ୍ଧବୀର ନିକଟତର ହୋଇ ପାରିଥିଲେ । ବନ୍ଧୁ ସୁରେନ୍ଦ୍ର ସ୍ନିଗ୍‌ଧା ସହିତ ବହୁତ ସମୟ ପ୍ରାକ୍‌ଟିକାଲ କ୍ଲାସରେ group mate ହିସାବରେ ଗପସପ କରୁଥିଲେ, ଆଉ ଆମ୍ଭମାନଙ୍କ ମୃଦୁ ଦୁଷ୍ଟାମୀର ପ୍ରଗଳ୍‌ଭତାକୁ ବେଖାତିର କରୁଥିଲେ । କମଳାକାନ୍ତ ତ ଆଜନ୍ମ ପ୍ରେମିକ । ହତାଶାରେ ଅଧୀର ହୋଇ ସେ କବିତାକୁ ଆଦରି ନେଇଥିଲେ । ଛୋଟବଡ଼ ଅନେକ ଘଟଣା, ଅନେକ ସ୍ମୃତି ଉଙ୍କି ମାରୁଛି ପଛରେ ପଡ଼ି ରହିଥିବା ମାଇଲ୍ ଖୁଣ୍ଟି ପରି । ରଙ୍ଗ ଛାଡ଼ି ଯାଇଥିଲେ ବି ଦପ୍‌ଦପ୍ ଜଳୁଛି ସେଇ ସ୍ମୃତି ସମୂହ ।

ଏବେ ବିଚାର ଆଲୋଚନା, ସମୀକ୍ଷାର ବେଳ ଆସିଛି । ସେତେବେଳେ ଆମେ ଠିକ୍ ଥିଲୁ ନା ଏବେ ସମାଜ ଠିକ୍ ଚାଲିଛି, ଏ କଥା କେବଳ ସମୟ ହିଁ କହିବ । ୪୦ବର୍ଷ ଆଗକୁ ଯାଇ ଏବର ନୂଆ ପିଢ଼ି ପୁଣି ଥରେ ପର୍ଯ୍ୟାଲୋଚନା କରିବେ । ଏହି ଆଲୋଚନା, ପର୍ଯ୍ୟାଲୋଚନା ଓ ସମାଧାନ କାର୍ଲମାର୍କସ୍ ହାଇପୋଥେସିସ୍ ଭଳି ଚାଲୁଥିବ ।

କିଛି ସ୍ମୃତି, କିଛି ବିସ୍ମୃତିକୁ ନେଇ ଆମର ଏଇ ଜୀବନ । କିଛି ହଜିଲା ସ୍ୱପ୍ନ, କିଛି ଶାଣିତ ଅନୁଭବ ଉତ୍ତର ପୁରୁଷ ପାଇଁ; ସବୁକୁ ଏକାଠି କରି ଇତିହାସ ସୃଷ୍ଟି ହେଉ । ନୂଆ ରକମର, ଆଶା ଭରସାର... ।

• ନିର୍ଦ୍ଦେଶକ, ସଂସ୍କୃତି ବିଭାଗ
ଭୁବନେଶ୍ୱର, ଓଡ଼ିଶା

# ଫକୀରମୋହନ ମହାବିଦ୍ୟାଳୟ : ସ୍ମୃତିର ଏକ ସୋପାନ

## ରବିନାରାୟଣ ସେନାପତି

ଫକୀରମୋହନ ମହାବିଦ୍ୟାଳୟର ଷାଠିଏ ବର୍ଷ ପୂର୍ତ୍ତି ଉପଲକ୍ଷେ ଯେଉଁମାନେ ଏହି ମହାନ୍ ଅନୁଷ୍ଠାନର ଇତିହାସ ସହିତ ସଂପୃକ୍ତ, ସେମାନେ ସମସ୍ତେ ଆନନ୍ଦିତ ଓ ଗର୍ବିତ ହେବା ସ୍ୱାଭାବିକ । କୁହାଯାଏ-'କଳି ଷଠା'-ଅର୍ଥାତ୍ କଳିଯୁଗରେ ଷାଠିଏ ବର୍ଷ ବୟସରେ ପଦାର୍ପଣ କରିବା ଅତ୍ୟନ୍ତ ସୌଭାଗ୍ୟର କଥା । ତେଣୁ ଏହି ପବିତ୍ର ଶିକ୍ଷାନୁଷ୍ଠାନର ହୀରକ ଜୟନ୍ତୀ ପାଳନ ପାଇଁ ଆୟୋଜନ ଚାଲିଛି । ସ୍ୱାଧୀନତାର ପ୍ରାକ୍ କାଳରେ ଏବଂ ପରବର୍ତ୍ତୀ ପର୍ଯ୍ୟାୟରେ ଓଡ଼ିଶାର ଶିକ୍ଷାର ପ୍ରସାର କ୍ଷେତ୍ରରେ ବାଲେଶ୍ୱର ଜିଲ୍ଲା ଏକ ପ୍ରମୁଖ ଓ ଅଗ୍ରଣୀ ଭୂମିକା ଗ୍ରହଣ କରିଥିଲା । ଭଦ୍ରକ ଜିଲ୍ଲା ସୃଷ୍ଟିହେବା ପର୍ଯ୍ୟନ୍ତ ଭଦ୍ରକ ଅଞ୍ଚଳର ଅଧିବାସୀମାନେ ବାଲେଶ୍ୱର ଜିଲ୍ଲାବାସୀ ଭାବେ ପରିଚିତ ହେଉଥିଲେ, ଯାହାକି ମୋ କ୍ଷେତ୍ରରେ ଘଟିଥିଲା । ଏବେ ବି ଯଦି କିଏ ପଚାରେ ତୁମ ଘର କେଉଁ ଜିଲ୍ଲାରେ, ହଠାତ୍ ମୋ ମନକୁ ଆସେ ବାଲେଶ୍ୱର, ଏବେ ଭଦ୍ରକ । ଏସବୁ କହିବାର ତାତ୍ପର୍ଯ୍ୟ ହେଲା -ବାଲେଶ୍ୱର ସହିତ ପିଲାଦିନରୁ ଯେଉଁ ଆବେଗଗତ ସଂପର୍କ ରହି ଆସିଛି, ତାହା ଏପର୍ଯ୍ୟନ୍ତ ଅତୁଟ ରହିଛି ।

ଫକୀରମୋହନ ମହାବିଦ୍ୟାଳୟ ସହିତ ମୋର ପ୍ରଥମ ସଂପର୍କ ସ୍ଥାପିତ ହୁଏ ଛାତ୍ର ଜୀବନରେ । ମୁଁ ଥିଲି ଭଦ୍ରକ ମହାବିଦ୍ୟାଳୟର ଛାତ୍ର । ୧୯୬୯ ମସିହାରେ ମୁଁ ପ୍ରଥମ ବାର୍ଷିକ ଶ୍ରେଣୀରେ ପଢୁଥିଲି । ଜାତିର ଜନକ ମହାତ୍ମାଗାନ୍ଧୀଙ୍କ ଜନ୍ମ ଶତବାର୍ଷିକୀ ଉପଲକ୍ଷେ ବାଲେଶ୍ୱରଠାରେ ଏକ ପ୍ରବନ୍ଧ ଓ ତର୍କ ପ୍ରତିଯୋଗିତା ଅନୁଷ୍ଠିତ ହେଲା । ଭଦ୍ରକ କଲେଜରୁ ପ୍ରତିନିଧିତ୍ୱ କରିବାର ସୁଯୋଗ ପାଇ ମୁଁ ପ୍ରତିଯୋଗିତାରେ ଭାଗ ନେବାପାଇଁ ବାଲେଶ୍ୱର ଯାଇଥିଲି । ଏହି ପ୍ରତିଯୋଗିତା ଅନୁଷ୍ଠିତ ହେଉଥିଲା ଫକୀରମୋହନ ମହାବିଦ୍ୟାଳୟ ପରିସରରେ । ପ୍ରଥମେ ଏହି ମହାବିଦ୍ୟାଳୟରେ ପଦାର୍ପଣ କରି ମୁଁ ନିଜକୁ ଧନ୍ୟ ମନେକଲି । କାରଣ ବାଲେଶ୍ୱର ଜିଲ୍ଲାର ଏକମାତ୍ର ସରକାରୀ କଲେଜ ଭାବରେ ସେତେବେଳେ ଏହି ଅନୁଷ୍ଠାନର ସୁଖ୍ୟାତି ଥିଲା । ଯଥା ସମୟରେ ପ୍ରବନ୍ଧ ଏବଂ ବକ୍ତୃତା ପ୍ରତିଯୋଗିତା ଅନୁଷ୍ଠିତ ହେଲା । ଉଭୟ ପ୍ରତିଯୋଗିତାରେ ମୁଁ ପ୍ରଥମ ସ୍ଥାନ ଅଧିକାର କରି ଅତ୍ୟନ୍ତ ଆନନ୍ଦ ଅନୁଭବ କଲି । କାରଣ ତାହା ଥିଲା ଜିଲ୍ଲାସ୍ତରୀୟ ପ୍ରତିଯୋଗିତା ଏବଂ ଭାରତ ସରକରାଙ୍କର ଫିଲ୍ମ ପବ୍ଲିସିଟି ସଂସ୍ଥା ଦ୍ୱାରା ଆୟୋଜିତ ହୋଇଥିଲା । ଛାତ୍ର ଜୀବନରେ ଏଭଳି କୃତିତ୍ୱ ନିଶ୍ଚିତ ଭାବେ ଉତ୍ସାହପ୍ରଦ ଥିଲା, ଏଥିରେ ସନ୍ଦେହ ନାହିଁ ।

ଉତ୍କଳ ବିଶ୍ୱବିଦ୍ୟାଳୟ ପକ୍ଷରୁ ଅନୁଷ୍ଠିତ ଚାନ୍‌ସେଲର୍ ଇଂରାଜୀ ତର୍କ ପ୍ରତିଯୋଗିତା ଏବଂ ଓଡ଼ିଆ ତର୍କ ପ୍ରତିଯୋଗିତା ପାଇଁ ବାଲେଶ୍ୱର ଫକୀରମୋହନ କଲେଜରେ ଜୋନାଲ ପ୍ରତିଯୋଗିତା ଅନୁଷ୍ଠିତ ହେଉଥିଲା । ୧୯୭୦ ଏବଂ ୧୯୭୧ ମସିହାରେ ଏହି ପ୍ରତିଯୋଗିତାଗୁଡ଼ିକରେ ମୁଁ ପୁଣି ଫକୀରମୋହନ କଲେଜକୁ ଯାଇ ଭାଗ ନେଇ ପ୍ରଥମ ସ୍ଥାନ ଅଧିକାର କଲାପରେ ବିଶ୍ୱବିଦ୍ୟାଳୟସ୍ତରରେ କୃତିତ୍ୱ ଅର୍ଜନ କରିଥିଲି । ଏହାଥିଲା ମୋ ପାଇଁ ଏବଂ ବାଲେଶ୍ୱର ଜିଲ୍ଲା ପାଇଁ ଗୌରବର ବିଷୟ । ଭଦ୍ରକ କଲେଜରେ ମୁଁ ବି.ଏ. ପାସ୍ କଲା ପର୍ଯ୍ୟନ୍ତ ପ୍ରାୟ ପ୍ରତିବର୍ଷ ଫକୀରମୋହନ କଲେଜକୁ ଅସୁଥିଲି ଜଣେ ପ୍ରତିଯୋଗୀ ଭାବରେ ଏବଂ ଏହି ମହାବିଦ୍ୟାଳୟରେ ପରୁସ୍କୃତ ହେବାର ସୌଭାଗ୍ୟ ଅର୍ଜନ କରିଥିଲି ।

ଅର୍ଥନୀତିରେ ଏମ୍.ଏ. ପାସ୍ କଲାପରେ ଯେତେବେଳେ ଆଡ଼ହକ ଭିତ୍ତିରେ ଅଧାପକ ନିଯୁକ୍ତି ଆସିଲା, ସେତେବେଳେ ଫକୀରମୋହନ କଲେଜରେ ଖାଲି ସ୍ଥାନ ଥିବାରୁ ମୋତେ ଅଧାପକ ଭାବରେ

ଏହି ଅନୁଷ୍ଠାନରେ କାର୍ଯ୍ୟ କରିବାର ସୁଯୋଗ ମିଳିଲା । ୧୯୭୫ ମସିହା ଅଗଷ୍ଟ ମାସ ୧୪ ତାରିଖରେ ମୁଁ ନିଯୁକ୍ତି ପତ୍ର ଧରି ଅଧ୍ୟାପକ ଭାବରେ ଯୋଗଦେଲି । ସେତେବେଳେ ଅର୍ଥନୀତି ବିଭାଗରେ ଗିଡ଼ର ଏବଂ ବିଭାଗୀୟ ମୁଖ୍ୟ ଥାଆନ୍ତି ଶ୍ରୀଯୁକ୍ତ ନରୋତ୍ତମ ନନ୍ଦ । ଶ୍ରୀଯୁକ୍ତ ନନ୍ଦ ଜଣେ ଦକ୍ଷ, ଜ୍ଞାନୀ ଏବଂ ଗୁଣୀ ବ୍ୟକ୍ତି ଥିଲେ । ସରଳ, ମିଷ୍ଟଭାଷୀ ଏବଂ ସଦାଚାରୀ ଅଧ୍ୟାପକ ଭାବରେ ତାଙ୍କର ସୁନାମ ଥିଲା । ମୁଁ ଅଧ୍ୟାପକ ଭାବରେ ଯୋଗଦେବା ବେଳକୁ ଭାରତୀୟ ଅର୍ଥନୀତି ସେବାରେ ସାରା ଭାରତରେ ପ୍ରଥମ ସ୍ଥାନ ଅଧିକାର କରିଥିବାର ପରୀକ୍ଷାଫଳ ପ୍ରକାଶ ପାଇ ସାରିଥିଲା । କେବଳ ନିଯୁକ୍ତିପତ୍ର ଆସିବା ପ୍ରତୀକ୍ଷାରେ ଥିଲି । ତେଣୁ ଅଧ୍ୟାପନା କ୍ଷେତ୍ରରେ ମୋତେ ଯେ ସ୍ୱଳ୍ପକାଳ ରହିବାକୁ ହେବ, ଏକଥା ଥିଲା ଅବଧାରିତ । ସହକର୍ମୀ ଅଧ୍ୟାପକ ଏବଂ ଛାତ୍ରଛାତ୍ରୀମାନଙ୍କଠାରୁ ମୁଁ ଯେଉଁ ଅକୁଣ୍ଠ ସ୍ନେହ, ଶ୍ରଦ୍ଧା ଓ ସମ୍ମାନ ଲାଭ କରିଥିଲି, ତାହା ବାସ୍ତବରେ ଅବିସ୍ମରଣୀୟ । ସେତେବେଳେ ଯେଉଁମାନେ ମୋର ଛାତ୍ର ଭାବରେ ଅଧ୍ୟୟନ କରୁଥିଲେ, ଆଜି ସେମାନେ ସମାଜରେ ବିଭିନ୍ନ କ୍ଷେତ୍ରରେ ପ୍ରତିଷ୍ଠିତ ।

ମୋର ଅଧ୍ୟାପନା ସମୟ ଥିଲା ପ୍ରାୟ ଅଢ଼େଇ ମାସ ଏବଂ ତା' ଭିତରେ ପୁଣି ପୂଜାଛୁଟି ଏବଂ ଅନ୍ୟାନ୍ୟ ଛୁଟି ଦିବସ ଥିଲା । ମାତ୍ର ଏହି ସ୍ୱଳ୍ପ ସମୟ ମୋ ପାଇଁ ଅତ୍ୟନ୍ତ ପ୍ରାଣବନ୍ତ ଏବଂ ସାର୍ଥକ ଥିଲା, ଏକଥା ମୁଁ ଉପଲବ୍ଧି କରିଛି । କଲେଜ ପରିସର ଅତ୍ୟନ୍ତ ମନୋରମ ଏବଂ ବିଶେଷ ଭାବରେ ଛାତ୍ରଛାତ୍ରୀମାନଙ୍କ ମଧ୍ୟରେ ଅଧ୍ୟୟନ ପ୍ରତି ଆଗ୍ରହ ମୁଁ ଲକ୍ଷ୍ୟ କରିଥିଲି । ପିଲାମାନଙ୍କ ଆଗ୍ରହରେ ମୁଁ କେତେକ ବିଷୟ ସେମାନଙ୍କୁ ପଢ଼ାଇଛି । ଚାହୁଁ ଚାହୁଁ ଦିନ ବିତିଗଲା । ଭାରତୀୟ ଅର୍ଥନୀତି ସେବାରେ ନିଯୁକ୍ତିପତ୍ର ପାଇଲା ପରେ ମୋତେ ଅଧ୍ୟାପନାରୁ ଅବ୍ୟାହତି ନେବା ସହିତ ଫକୀରମୋହନ କଲେଜରୁ ଶୁଭ ବିଦାୟ ନେବାକୁ ହେଲା । ସେଥିପାଇଁ ଶ୍ରୀଯୁକ୍ତ ନରୋତ୍ତମ ନନ୍ଦଙ୍କ ସଭାପତିତ୍ୱରେ ଏକ ବିଦାୟକାଳୀନ ସଭା ଅନୁଷ୍ଠିତ ହେଲା ଏବଂ ତାଙ୍କ ଘରେ ମଧ୍ୟ ରାତ୍ରିଭୋଜନ ଅନୁଷ୍ଠିତ ହେଲା । ଏଭଳି ବିଦାୟ ମୋ ପାଇଁ ଖୁବ୍ ମର୍ମସ୍ପର୍ଶୀ ଥିଲା ।

ଭାରତୀୟ ଅର୍ଥନୀତି ସେବାରେ ଯୋଗ ଦେବାପାଇଁ ଦିଲ୍ଲୀ ଅଭିମୁଖେ ବାଲେଶ୍ୱର ଷ୍ଟେସନରୁ ଉତ୍କଳ ଏକ୍ସପ୍ରେସ୍ ଚଢ଼ିବା ବେଳେ ରେଳଷ୍ଟେସନର ପ୍ଲାଟ୍‌ଫର୍ମରେ ଯେଉଁ କେତେଜଣ ପ୍ରିୟ ଛାତ୍ର ବିଦାୟ ଦେବାକୁ ଆସିଥିଲେ, ସେମାନଙ୍କର ଶୁଭେଚ୍ଛା ଏବଂ ଶୋକାକୁଳ ନେତ୍ର ଏବେ ବି ମନେ ପଡ଼ିଯାଏ । ଟ୍ରେନ୍‌ର ଗତି ସଂଗେସଂଗେ ପଛରେ ଛାଡ଼ିଗଲି ବାଲେଶ୍ୱର ସହର, ଫକୀରମୋହନ କଲେଜ ଏବଂ ପ୍ରିୟ ସହକର୍ମୀ, ଛାତ୍ରଛାତ୍ରୀବୃନ୍ଦ । ମାତ୍ର ହୀରକ ଜୟନ୍ତୀ ଅବସରରେ ସ୍ମୃତିର ଏହି ସୋପାନ ଆରୋହଣ କଲାବେଳେ ମୁଁ ନିଜକୁ ଧନ୍ୟ ଓ ଗୌରବାନ୍ୱିତ ମନେ କରୁଛି ।

• କମିଶନର ତଥା ଶାସନ ସଚିବ
ସ୍ୱାସ୍ଥ୍ୟ ଏବଂ ପରିବାର କଲ୍ୟାଣ ବିଭାଗ
ଓଡ଼ିଶା ସରକାର

# ତାରୁଣ୍ୟର ସ୍ମୃତି

## ବିରାଜ ମୋହନ ଦାସ

**ବା**ଲେଶ୍ୱର ସେତେବେଳକୁ ଥିଲା ମୋର ବହୁ ଆକାଂକ୍ଷିତ, ଉତ୍ସବର ସହର । ଏଥି ପୂର୍ବରୁ ପ୍ରତିବର୍ଷ ଥରେ ଦି'ଥର ସପରିବାର ଏଠାରେ ଥିବା ପ୍ରିୟ ପରିଜନଙ୍କ ଗହଣରେ ପାର୍ବଣ/ଚନ୍ଦନ/ସର୍କସ/ଓଡ଼ିଆ ସିନେମା ଦେଖିବାକୁ ଆସି ମଉଜରେ ମାତିବା ହୁଏତ ଏହାର ହେତୁ । ସେ ସୁଯୋଗ ମୋତେ ମିଳିଥିଲା ଆଜକୁ ପ୍ରାୟ ତିରିଶ ବର୍ଷ ତଳେ । ମୁଁ ଆସି ବାଲେଶ୍ୱରର ବାସିନ୍ଦା ହୋଇଗଲି ଫକୀର ମୋହନ ମହାବିଦ୍ୟାଳୟରେ ନାଁ ଲେଖାଇବାରୁ ।

ବୟସ ଦୃଷ୍ଟିରୁ ସେଇଟା ଗୋଟାଏ ସନ୍ଧିକ୍ଷଣ । କୈଶୋରର ଶେଷ ଆଉ ତାରୁଣ୍ୟର ଅୟମାରମ୍ଭର ବେଳ । ସ୍ୱପ୍ନ ସବୁ ରଙ୍ଗୀନ ହେବାକୁ ବାଧ୍ୟ । ପୋଷାକରେ, ବେଶଭୂଷାରେ ଆସିଥିବା ପରିବର୍ତ୍ତନ ମନ ଉପରେ ପ୍ରଭାବ ବିସ୍ତାର କରିବାକୁ ଆରମ୍ଭ କରି ଦେଇଥାଏ । ପୁଣି ସହଶିକ୍ଷା ଥିବା ଗୋଟିଏ ନାମୀ ମହାବିଦ୍ୟାଳୟର ନବାଗନ୍ତୁକ ଛାତ୍ରମାନଙ୍କର କଳ୍ପନାପ୍ରବଣତା ପ୍ରକାଶ ପାଇବା ଏକ ସ୍ୱାଭାବିକ କଥା । ତାରି ପ୍ରଭାବରେ ମୁଁ ସେତିକିବେଳେ ଗୋଟିଏ ଦୁଇଟି ଗଳ୍ପ ଲେଖି ପକାଇଥିଲି । ମହାବିଦ୍ୟାଳୟର ମୁଖପତ୍ର 'ଦି ଫକୀର' ପାଇଁ ଲେଖା ମଗାଯିବାରୁ ମୁଁ ସେଇଥିରୁ ଗଳ୍ପଟିଏ ଦେଇଥିଲି । ତା'ପର ବର୍ଷ ନୋଟିସ ବାହାରି ଥିଲା ପରିଚୟ ପତ୍ର ଦେଖାଇ ମ୍ୟାଗାଜିନ ନେବାପାଇଁ । ମୁଁ ଆଣିବା ପୂର୍ବରୁ ମୋର ଜଣେ ସହପାଠୀ ମ୍ୟାଗାଜିନ୍‌ର କପିଟିଏ ଘେନି ଆସିଥିଲେ । ସେଥିରେ ମୋ ଗଳ୍ପଟି ବାହାରି ଥିବାରୁ ସେ ମୋତେ ତାହା ଦେଖାଇଥିଲେ ଓ ଖୁସିରେ ହାତ ମିଳାଇଥିଲେ । ଛପା ଅକ୍ଷରରେ ମୋ ଗଳ୍ପକୁ ଦେଖି ଖୁସିରେ ବିଭୋର ହୋଇଯାଇଥିଲି ମୁଁ । ଗୋଡ଼ ମୋର ତଳେ ଲାଗି ନଥିଲା । ଛାତି କୁଣ୍ଢେମୋଟ ହୋଇ ଯାଇଥିଲା । ଏବେ ମୋର କେତେଗୁଡ଼ିଏ ଗଳ୍ପ ପ୍ରତିଷ୍ଠିତ ପତ୍ରପତ୍ରିକାରେ ସ୍ଥାନିତ ହେବା ସଙ୍ଗେ ସଙ୍ଗେ ଦୁଇଟି ଗଳ୍ପ ସଂକଳନ ପ୍ରକାଶିତ ହୋଇ ସାରିଲାଣି । କିନ୍ତୁ ପ୍ରଥମ ଗଳ୍ପର ମୁଦ୍ରିତ ରୂପ ଦେଖିଥିବା ମୁହୂର୍ତ୍ତର ରୋମାଞ୍ଚ ଆଉ କେବେ ଅନୁଭବ କରିନାହିଁ ।

ଆମେ ଯେଉଁ ବର୍ଷ ଫକୀରମୋହନରେ ନାଁ ଲେଖାଇଲୁ ସେ ବର୍ଷ-୧୯୭୨ ବେଳକୁ ମହାବିଦ୍ୟାଳୟର ପରିବେଶ ଥିଲା ଅଶାନ୍ତ । ବେଶ୍ କିଛି ଦିନ ଗଣ୍ଡଗୋଳ ପରେ ଅଧ୍ୟକ୍ଷ ରାମଚନ୍ଦ୍ର ପଟ୍ଟନାୟକଙ୍କର ବଦଳି ହୋଇଗଲା । ୧୯୭୩ରେ ନୂଆ ଅଧ୍ୟକ୍ଷ ଭାବରେ ଯୋଗଦେଲେ କେ.ପି. ନିଗମ । ଅବସ୍ଥା କ୍ରମେକ୍ରମେ ସୁଧୁରିଲା । ଆଇ.ଏ. ଓ ବି.ଏ. ଶ୍ରେଣୀରେ ପଢୁଥିବା ବେଳେ ଯେଉଁ ଅଧ୍ୟାପକ ଓ ଅଧ୍ୟାପିକାମାନଙ୍କ ଜ୍ଞାନ ଗାରିମା ତଥା ଅଧ୍ୟାପନା କୁଶଳତା ଆମମାନଙ୍କୁ ପ୍ରଭାବିତ କରିଥିଲା ସେମାନେ ହେଉଛନ୍ତି, ଇଂରାଜୀର କାର୍ତ୍ତିକ ଚନ୍ଦ୍ର ଚାଟାର୍ଜୀ, ମନ୍ମଥ ନାଥ କୁଣ୍ଡୁ ଓ ଦେବକୁମାର ବାନାର୍ଜୀ; ଓଡ଼ିଆର ଶ୍ୟାମାପ୍ରସନ୍ନ ମିଶ୍ର; ତର୍କଶାସ୍ତ୍ର ଓ ଦର୍ଶନର ଏସ୍.ଏ. ମନାନ, ନେତ୍ରାନନ୍ଦ ମଲ୍ଲ, ଗୟାଧର ପଣ୍ଡା, ଗଣେଶ ପ୍ରସାଦ ଦାସ, ଦୁର୍ଗା ମାଧବ ପ୍ରହରାଜ ଓ ଚଞ୍ଚଳା ମିଶ୍ର; ରାଜନୀତି ବିଜ୍ଞାନର ଗଜେନ୍ଦ୍ର ନାଥ ଆଚାର୍ଯ୍ୟ ଓ ଜି.ସି. ଦାସଗୁପ୍ତା; ଅର୍ଥନୀତିର ବଳଭଦ୍ର ଦାସ, ନରୋତ୍ତମ ନନ୍ଦ, ପ୍ରଫୁଲ୍ଲ କୁମାର ରାଜ, କେ. କେ.ଦାସ ଓ ରବି ନାରାୟଣ ସେନାପତି । ସେମାନେ ଥିଲେ ଉଭୟ ଛାତ୍ର ବତ୍ସଳ ଓ ବିଦ୍ୱାନ୍ ।

୧୯୯୨ ମସିହାରେ ମୋର ସେଇ ପ୍ରିୟ ଫକୀରମୋହନ ମହାବିଦ୍ୟାଳୟ ପ୍ରାଙ୍ଗଣରେ ଆୟୋଜିତ ହୋଇଥିଲା ଫକୀରମୋହନଙ୍କ ୧୫୦ତମ ଜୟନ୍ତୀ ଉତ୍ସବ । ଆୟୋଜକ ଥିଲେ

'ଫକୀରମୋହନ ସାହିତ୍ୟ ପରିଷଦ' ଓ 'ଓଡ଼ିଶା ସାହିତ୍ୟ ଏକାଡେମୀ' । ଚଉଦ ତାରିଖ ସଂଧ୍ୟାରେ ଅନୁଷ୍ଠିତ ହୋଇଥିବା ସାହିତ୍ୟ ସଭାରେ 'ଓଡ଼ିଶା ସାହିତ୍ୟ ଏକାଡେମୀ' ତରଫରୁ ଜଣେ ବକ୍ତାରୂପେ ଯୋଗ ଦେଇଥିଲି ମୁଁ । ମଞ୍ଚ ଉପରକୁ ଯିବା ପୂର୍ବରୁ ଦେଖା ହୋଇଥିଲା ମୋର ପୂଜ୍ୟ ସାର୍ ଶ୍ରୀଯୁକ୍ତ କାର୍ତ୍ତିକ ଚନ୍ଦ୍ର ଚାଟାର୍ଜୀଙ୍କ ସହିତ । ସେତେବେଳେ ସେ ଥିଲେ ମହାବିଦ୍ୟାଳୟର ଅଧକ୍ଷ । ଅନ୍ୟ ବକ୍ତାମାନଙ୍କ ସହ ମଞ୍ଚାସୀନ ହେବାପରେ ଫକୀରମୋହନପ୍ରେମୀ ବିରାଟ ଶ୍ରୋତୃମଣ୍ଡଳୀଙ୍କୁ ଦେଖି ପ୍ରଥମେ ମନରେ ଭୟ ଜାତ ହୋଇଥିଲା । ଠିକ୍ ସେମିତିକା ଭୟ ଲାଗିଥିଲା ମୋତେ ଆଇ.ଏ. ଶେଷବର୍ଷର ଛାତ୍ର ଥିବାବେଳେ । ସେ ବର୍ଷ ଆନ୍ତଃଶ୍ରେଣୀ ପ୍ରତିଯୋଗିତାରେ ଭାଗନେବା ପାଇଁ ଆମେ କେତେଜଣ ଛାତ୍ର ଆଗଭର ହୋଇ ନାଟକଟିଏ ପ୍ରସ୍ତୁତ କରିଥିଲୁ । ଆଗରୁ ଆମ ଗାଁରେ ହେଉଥିବା ନାଟକରେ କେତେଥର ଅଭିନୟ କରିଥିଲେ ବି ସେଦିନ କଲେଜ ଡ୍ରାମାରେ ଅଭିନୟ ପ୍ରଦର୍ଶନ ନିମିତ୍ତ ମଞ୍ଚ ଉପରକୁ ଯିବାବେଳେ ପ୍ରଥମେ ମୁଁ ନର୍ଭସ ହୋଇ ଯାଇଥିଲି । କାରଣ ଗାଁର ଆତ୍ମୀୟସ୍ୱଜନ ତଥା ପରିଜନଭରା ଦର୍ଶକମଣ୍ଡଳୀ ଏବଂ କଲେଜର ତରୁଣ ଦର୍ଶକମାନଙ୍କ ମଧ୍ୟରେ ପାର୍ଥକ୍ୟ ଅନେକ । ଖାଲି ହୁଇସିଲ୍ ଓ କମେଣ୍ଟ ଭିତରେ କରିବାକୁ ହେବ ଅଭିନୟ । ପୁଣି ପଚାଅଣ୍ଡା ଓ ବିଲାତି ବାଇଗଣ ବି ଉପରକୁ ପଡ଼ିବାର ସମ୍ଭାବନା ଥାଏ; କିନ୍ତୁ ସେମିତି କିଛି ହେଲାନାହିଁ । ଅଳ୍ପ କିଛି ସମୟ ପରେ ସ୍ୱାଭାବିକ ଅଭିନୟ କରିବାକୁ କ୍ଷମ ହୋଇଥିଲି ।

ପ୍ରାୟ କୋଡ଼ିଏ ବର୍ଷ ପରେ ଠିକ୍ ସେହି ମଞ୍ଚରୁ ମୁଁ ଉପସ୍ଥିତ ଶ୍ରୋତୃମଣ୍ଡଳୀଙ୍କ ସମ୍ମୁଖରେ ମୋର ବକ୍ତବ୍ୟ ରଖିଥିଲି ସେଦିନ, ଯାହାର ଶୀର୍ଷକ ଥିଲା 'ଫକୀରମୋହନଙ୍କ ଗଳ୍ପ ଓ ଉପନ୍ୟାସରେ ଜାତୀୟତାବଦ' । ସଭାଶେଷରେ ମଞ୍ଚତଳକୁ ଓହ୍ଲାଇ ଦେଖିଲି ଆଗଧାଡ଼ିରେ ବସିଥିବା ପ୍ରଫେସର ଚାଟାର୍ଜୀ ହସିହସି ମୋ ଆଡ଼କୁ ଆସୁଛନ୍ତି । ମୋ ସାଙ୍ଗରେ ହାତ ମିଳାଇ ପୁଣି କାନ୍ଧକୁ ଥାପୁଡ଼ାଇ କହିଲେ, ''ଭଲ କହିଲ । ବହୁତ ଭଲ କହିଲ । ଫକୀରମୋହନଙ୍କ ସାହିତ୍ୟକୁ ଗୋଟିଏ ନୂଆ ଦୃଷ୍ଟିକୋଣରୁ ବିଚାର କଲ । ଏ ପର୍ଯ୍ୟନ୍ତ ତାଙ୍କୁ ଜାତୀୟତାବାଦୀ ବୋଲି କେହି କହି ନଥିଲେ । ତୁମେ ତାହା ସାବ୍ୟସ୍ତ କରି ପାରିଛ । ବେଶ୍ ଭଲ କାମ କରିଛ ।'' ହାତ ମୋର ଚାଲି ଯାଇଥିଲା ତାଙ୍କ ପାଦ ଛୁଇଁବା ପାଇଁ । ଇଂରାଜୀ ପୋଏଟ୍ରୀ କ୍ଲାସରେ ବେଶ୍ ପ୍ରଗଲ୍‌ଭ ହୋଇ ପଢୁଥିବା ଚାଟାର୍ଜୀ ସାର୍ ଅନ୍ୟବେଳେ ବହୁତ କମ୍ କଥା କହୁଥିଲେ । ସାର୍ ଆଜି ସ୍ୱର୍ଗରେ । କିନ୍ତୁ ତାଙ୍କର ସେଦିନର ସେଇ ଆଶୀର୍ବାଦ ତାଙ୍କର ଅବର୍ତ୍ତମାନରେ ବି ମୋତେ ଅନୁପ୍ରେରିତ କରୁଛି ପଢ଼ା-ପଢ଼ି, ଲେଖା-ଲେଖି ପାଇଁ ।

• ଜି.ଏଲ୍-୯୭
ବୀର ସୁରେନ୍ଦ୍ର ସାଏ ନଗର
ଭୁବନେଶ୍ୱର-୭

# ଫକୀରମୋହନରେ ଦିନଗୁଡ଼ିକ

## ବାଞ୍ଛାନିଧି ଦାସ

୧୯୬୭-୬୮ ମସିହାରେ ମୁଁ ଅମର୍ଦ୍ଦା ରୋଡ଼ର ନବ ପ୍ରତିଷ୍ଠିତ ଉଚ୍ଚ ଇଂରାଜୀ ବିଦ୍ୟାଳୟରୁ ମ୍ୟାଟ୍ରିକ୍ ପାଶ୍ କଲି । ଆମ ଗାଁର ପ୍ରଥମ ଗ୍ରାଜୁଏଟ୍ ହେବା ପାଇଁ ଏକ ସ୍ୱପ୍ନ ସେଇ ଦିନରୁ ମୁଁ ଦେଖିଥିଲି । ଅଷ୍ଟମ ଶ୍ରେଣୀରୁ କଥାକାର ସୁରେନ୍ଦ୍ର ମହାନ୍ତିଙ୍କ ସଂପାଦିତ 'କଳିଂଗ'ର 'ଉଦୟଭାନୁ' ପୃଷ୍ଠାରେ ମୁଁ କବିତା ଲେଖାଲେଖି କରୁଥାଏ । ୧୯୬୭ ବେଳକୁ ମୁଁ କବି ବ୍ରଜନାଥ ରଥଙ୍କ 'ମରୁ ଗୋଲାପ', ବନମାଳି ସେନାପତିଙ୍କ 'ମେଘରୁଦ୍ର' କବିତା ବହି ପଢ଼ି ସାରିଥାଏ । ଆମ ସ୍କୁଲର ଇଂରାଜୀ ଶିକ୍ଷକ କମଳକୁମାର ମିଶ୍ରଙ୍କ ସହାୟତାରେ ମୁଁ ରବି ସିଂଙ୍କ କେତେକ କବିତା ବହି ମଧ ପଢ଼ି ସାରିଥାଏ । ନଳିନୀ ଦେବୀ ରାଉତରାୟଙ୍କ 'ନଜରୁଲ୍ କବିତା ସଂଚୟନ' ନାମକ ଅନୁବାଦ ପୁସ୍ତକଟି ପଢ଼ିବାକୁ ବିଶେଷ ଇଚ୍ଛା ପୋଷଣ କରିଥାଏ ।

ବିଜୁ ପଟ୍ଟନାୟକଙ୍କ ମେଧାବୀ ଛାତ୍ରଙ୍କୁ ସେତେବେଳେ ଯେଉଁ ମେରିଟ୍ ସ୍କଲରସିପ୍ ଦେଉଥିଲେ, ତାହା ମୁଁ ଅଷ୍ଟମ ଶ୍ରେଣୀରୁ ପାଉଥାଏ । ସେଇ ପଇସାରୁ ବାସ୍ତରି ଟଂକା ଦେଇ ରୁଗ୍‌ଣ ବାପାଙ୍କୁ ଗାଁରେ ଗୋଟିଏ ତେଜରାତି ଦୋକାନ କରାଇ ଦେଇଥାଏ । ଦୁଇମାଣ ଜମିକୁ ଭାଗବଖରା ଲଗାଇ ଗାଁରେ ସଂସାର ଏହିପରି ଚଳି ଯାଉଥାଏ । ୧୯୬୪ ମସିହାରେ ମୋର ପିତୃ ବିୟୋଗ ଘଟେ ।

୧୯୬୭-୬୮ରେ ମୁଁ ପ୍ରି-ୟୁନିଭରସିଟି ପଢ଼ିବାକୁ ଯାଏ ଏମ୍.ପି.ସି.ରେ । ସେଠି ଗୀତକାର ଓ ନିର୍ଦ୍ଦେଶକ ସରୋଜ ପଟ୍ଟନାୟକଙ୍କ ଘରେ ଲଜ୍‌ରେ ଥାଏ । ତାଙ୍କ ଭାଣଜୀ ଦୁଇଜଣଙ୍କୁ ପଢ଼ାଉଥାଏ । ସେଠି ତାଙ୍କ ସାନଭାଇ ସନତ୍ ପଟ୍ଟନାୟକ ପ୍ରଥମ ଥର ପାଇଁ ମୋତ ସଚ୍ଚିବାବୁଙ୍କ 'କବିତା ୧୯୬୨' ପଢ଼ିବାକୁ ଦେଲେ ଏବଂ ଆଧୁନିକ ଢଂଗରେ କବିତା ଲେଖିବାକୁ ଉତ୍ସାହିତ କଲେ । ସେ ବର୍ଷ ବାରିପଦାରେ ଥିବା ଆମ ବଂଶର ମୋର ବଡ଼ବାପାଙ୍କ ପୁଅ ଭାଇ କୃଷ୍ଣଚନ୍ଦ୍ର ଦାସ ଅକାଳରେ ଇହଲୀଳା ସାଂଗ କଲେ । ମନ ମୋର ଭାଂଗିଗଲା । ମୁଁ ପ୍ରି-ୟୁନିଭରସିଟି ପରୀକ୍ଷାରେ ପ୍ରଥମ ଶ୍ରେଣୀ ପାଇ ମଧ ଏମ୍.ପି.ସି.ରେ ପାଠପଢ଼ା ଚଳାଇ ରଖିବାକୁ ମନକଲିନାହିଁ ।

୧୯୬୮-୬୯ରେ ଫକୀରମୋହନରେ ଫାଷ୍ଟ ବି.ଏ.ଶ୍ରେଣୀରେ ନାମ ଲେଖାଇଲି । ରାଜନୀତି ଓ ସଂସ୍କୃତିର ସହର ବାଲେଶ୍ୱରକୁ ଆସି ମୁଁ ଟିଉସନ ବା ଲଜ୍ ଖୋଜି ବୁଲିଲି । ପାଇଲି ମଧ । ଖପରାପଦା ଶ୍ରୀରାମପୁର ଗ୍ରାମର ବିଶିଷ୍ଟ ବ୍ୟକ୍ତି ତଥା ଶ୍ରୀରାମପୁର ହାଇସ୍କୁଲର ଶିକ୍ଷକ କାର୍ତ୍ତିକ ପ୍ରସାଦ ସାହୁ ମୋତେ ପ୍ରଥମତଃ ସାହାଯ୍ୟ କଲେ । ତାଙ୍କର ଫକୀରମୋହନ କଲେଜରେ ଛାତ୍ରତ୍ୱ ସମୟରେ ସହପାଠୀ ପ୍ରଶାଂତ ଚାନ୍ଦ ଓ କାର୍ତ୍ତିକ ଚନ୍ଦ୍ର ଦେ, ଦୁଇଜଣ ସାଂଗ ଥିଲେ । ତାଙ୍କରି ଘରେ ମୁଁ ପିଲାଙ୍କୁ ଟିଉସନ୍ କଲି । ପରମିଟ୍ ପଡ଼ିଆ ପାଖରେ କାର୍ତ୍ତିକ ଚନ୍ଦ୍ର ଦେଙ୍କ ଘରେ ରହିଲି ।

୧୯୬୮ ଅଗଷ୍ଟ ମାସରେ ଭଗବାନଙ୍କ ଅସ୍ତିତ୍ୱକୁ ଚ୍ୟାଲେଜିଂ କରି ରବି ସିଂ ଏକ କବିତା ଲେଖିଥିଲେ 'ପ୍ରଜାତଂତ୍ର'ର ସାହିତ୍ୟ ପୃଷ୍ଠାରେ । ମୁଁ ତାଙ୍କ କବିତାକୁ ତାରିଫ୍ କରି ଚିଠିଟିଏ ତାଙ୍କ ରାଜାବଗିଚା, କଟକ ଠିକଣାରେ ପଠାଇଥିଲି । ଫକୀରମୋହନ କଲେଜ ଠିକଣାରେ ତାହାର ଉତ୍ତର ଫେରିଲା । ଓଡ଼ିଶାର କେତେକ ଲେଖକଙ୍କୁ ଏଥି ପୂର୍ବରୁ ଚିଠି ଦେଇ ତାଙ୍କଠାରୁ କୌଣସି ଉତ୍ତର ନ ପାଇ ମୁଁ ନିରାଶ ହୋଇଥିଲି । ରବି ସିଂ ଉତ୍ତର ଦେବେ ବୋଲି ଆଶା ମଧ ରଖି ନଥିଲି ।

ସେଦିନ ଅଧ୍ୟାପକ ବସଂତ ଶତପଥୀଙ୍କ 'ଏନୋକାର୍ଡେନ' କ୍ଲାସ୍ ପରେ ବାରଣ୍ଡାରେ ମୋତେ ଜଣେ ସୁଦର୍ଶନ ଦାଢ଼ି ରଖିଥିବା ଟୋକା ଖୋଜୁଥିବାର ମୁଁ ଖବର ପାଇଲି । ସିଏ ଥିଲା ବିଜୟ ଉପାଧ୍ୟାୟ । ମୁଁ ତା'ର ଖୋଜିବାର ଖବର ପାଇ ସେଇଦିନ 'ଦକ୍ଷିଣ ହଷ୍ଟେଲ'ରେ ତାକୁ ଖୋଜି ବାହାର କଲି । ବ୍ରଜେନ୍ଦ୍ର ଓ ବିଜୟ ସେ ହଷ୍ଟେଲର ଦି' ନଂବର ରୁମ୍‌ରେ ରହୁଥିଲେ । ସିଏ ମୋତେ ରବି ସିଂହଙ୍କ ଚିଠିଟି ଦେଲା । କଲେଜ ଛାତ୍ର କମନ୍‌ରୁମ୍‌ରୁ ତାହା ସେ ଲେଟର ବକ୍‌ସରୁ ଉଦ୍ଧାର କରି ମୋତେ ଦେବାପାଇଁ ଖୋଜୁ ଥିବାର କହିଲା । ପ୍ରେରକ ସ୍ଥାନରେ 'ରବି ସିଂ' ଲେଖା ଥିବାର ଦେଖି କବି କ'ଣ ଲେଖିଥିବେ ତାହା ଜାଣିବାର ଉତ୍‌କଂଠା ମଧ୍ୟ ତା' ମନରେ ଥିଲା ।

ଆଜିକାଲି ଟୋକାଏ ପ୍ୟାଣ୍ଟ ପଛରେ Most Wanted ଲେଖିଦେଇ ବୁଲୁଛଂତି । ବିଜୟ ତା' ଧୋତିରେ ସେଇଆ ଅବଶ୍ୟ ଲେଖିନଥିଲା । କିଂତୁ ସେ ଥିଲା କଲେଜରେ Most Wanted ବୟ, ବିଶେଷତଃ ଜନାନା ମହଲରେ । ଏଥିପାଇଁ ତା'ର ଗୋରାତକତକ ଚେହେରା, ଖଂଡାଧାର ନାକ, ଗହନ ଦାଢ଼ୀ, ତୋଫା ଧୋତି ପଂଜାବୀ ବହୁ ପରିମାଣରେ ତାହାର ଗ୍ଲେମରକୁ ବଢ଼େଇ ଦେଉଥିଲା । ପତ୍ରରେ ରବି ସିଂ ତାଙ୍କ କବି ବଂଧୁ ବ୍ରଜନାଥ ରଥ, ସୁନ୍‌ହଟଙ୍କୁ ଦେଖା କରି ଲେଖାଥିବା କବିତାଦି ସଂଶୋଧନ କରାଇ ନେବାକୁ ପରାମର୍ଶ ଦେଇଥିଲେ । ବିଜୟ ଓ ମୁଁ କ୍ରମେ ଘନିଷ୍ଠ ସାଂଗ ହୋଇ ଯାଇଥିଲୁ । ତାହାରି ପାଖରୁ ମୁଁ ଆଣି ପଢ଼ିଥିଲି 'ନଜରୁଲ କବିତା ସଂଚୟନ' ।

୧୯୬୯ରେ ବିଜୟ ଓ ମୁଁ ମିଳିତ ଭାବେ ସଂପାଦନା କଲୁ 'ପୁଂସବନର ସାହିତ୍ୟ' ନାମକ ଏକ ସାମୟିକ ମେଗାଜିନ୍ । ସେତେବେଳକୁ ଜଣୈକା ସହପାଠିନୀ ସହିତ ବିଜୟର ପ୍ରେମ ସମ୍ପର୍କ ସ୍ଥାପିତ ହେଲାଣି । ତାହାରି ପ୍ରଭାବରେ ପତ୍ରିକାର ପ୍ରଥମ ଇସୁରେ ଏକ ପ୍ରେମଗଳ୍ପ ବିଜୟ ଲେଖେ । ମୁଁ ଲେଖେ ଏକ ରମ୍ୟରଚନା 'ରାତାରାତି କବି ବନିଯିବାର ଅବ୍ୟର୍ଥ ଫର୍ମୁଲା' । 'ପୁଂସବନର ସାହିତ୍ୟ' ସର୍ବମୋଟ ତିନୋଟି ଇସ୍ୟୁ ବାହାରିଥିଲା । ଛପା ଖର୍ଚ୍ଚର ଅର୍ଦ୍ଧେକ ମୁଁ ଦେଉଥିଲି ମୋର ସିନିୟର କଲେଜ ସ୍କଲରସିପ୍ ଟଂକାରୁ । ଏହି ପତ୍ରିକା ସୂତ୍ରେ ଆମର ଚିହ୍ନା ପରିଚୟ ହେଲା ଶୁଭେନ୍ଦୁ ମୋହନ ଦାସ ଓ ୰ କନ୍‌ହେଇଲାଲ ଦାସଙ୍କ ସହିତ । ମୋର ରମ୍ୟ ରଚନାକୁ ବ୍ରଜବାବୁ ଓ ଶୁଭେଂଦୁ ବାବୁ ବହୁତ ପସନ୍ଦ କଲେ । ମୁଁ 'ଡଗର'ରେ ଜଣେ ନିୟମିତ ରମ୍ୟଗଳ୍ପ ଲେଖକ ପାଲଟିଗଲି ।

ଫକୀରମୋହନ କଲେଜର ଗେଟ୍‌କୁ ଲାଗି ଥିବା ମହାଦେବ ମଂଦିରର ସେତେବେଳର ଅନୁଚ୍ଚ ପ୍ରାଚୀର ମୋତେ ଓ ବିଜୟକୁ ଆମର କଥାବାର୍ତ୍ତା ଓ ସାହିତ୍ୟ ଆସର ପାଇଁ ଛାୟାସୁଶୀତଳ ବୈଠକଖାନା ଯୋଗାଇଦେଇଥିଲା । ସେଇଠି ଆମ ସହିତ ଠିଆଠିଆ ଗପିଛଂତି ଶାବ୍ଦିକ ବସଂତ ଶତପଥୀ, ବୈରାଗୀ ଜେନା, ବିପ୍ର ଆଚାର୍ଯ୍ୟ, ଜଗନ୍ନାଥ ପଟ୍ଟନାୟକ ଓ ସତ୍ୟନାରାୟଣ ମହାନ୍ତି ପ୍ରମୁଖ ଅଧ୍ୟାପକବୃନ୍ଦ ।

ଅଧ୍ୟାପକ ସଦାନଂଦ ମିଶ୍ର ଓ ସତ୍ୟନାରାୟଣ ମହାନ୍ତି ସାହିତ୍ୟ ଲେଖାପଢ଼ା କରୁଥିବା ଛାତ୍ରଂକ ନିକଟରେ ଅତିପ୍ରିୟ ଥିଲେ । ଥରେ ସତ୍ୟନାରାୟଣ ମହାନ୍ତି ମୋତେ ଓ ବିଜୟକୁ ତାଙ୍କ ବସାକୁ ଡାକି ଏଜରା ପାଉଣ୍ଡଙ୍କ କବିତା ସଂକଳନ ପଢ଼ିବାକୁ ଦେଇଥିଲେ । ସେତେବେଳେ ସତ୍ୟନାରାୟଣ ମହାନ୍ତି ମଧ୍ୟ ରବି ପଟ୍ଟନାୟକଙ୍କ ଗଳ୍ପ ସଂକଳନ 'ଅନ୍ଧଗଳିର ଅଂଧକାର'ର ମୁଖବଂଧ ଲେଖିଥାଂତି-ତାହାକୁ ଆମକୁ ପଢ଼ି ଶୁଣାଇଥିଲେ । ଛାତ୍ରମାନଙ୍କ ସହ ଶିକ୍ଷକଙ୍କ ସଂପର୍କଟା ଥିଲା ଅତି ମଧୁର । ଘରକୁ ଗଲେ ଆମକୁ ସାର୍ ଓ ଗୁରୁପତ୍ନୀ କିଛି ନାଁ କିଛି ଖାଇବାକୁ ଦେଉଥିଲେ ।

ବି.ଏ.ର ଶେଷବର୍ଷରେ ମୁଁ କେତେ ମାସ କଲେଜର ସଂସ୍କୃତ ଅଧ୍ୟାପକ ଦୀନବଂଧୁ ଶତପଥୀଙ୍କ ପୁଅ-ଝିଅଙ୍କୁ ଅଂକ ଓ ଇଂରାଜୀ ପଢ଼ାଉଥିଲି । ଦିନ ଚାରିଟାରୁ ଛ'ଟା ଯାଏ ଯାମିନୀ ନଂଦଙ୍କ ପରିବାର ପରିସରରେ ଦୀକ୍ଷିତଙ୍କ ଘରେ ଟ୍ୟୁସନ ସାରି ମୁଁ ପାଦରେ ଚାଲିଚାଲି ପୋଲିସ୍ ଲାଇନ୍ ଛକ ପାଖରେ ବସା ନେଇ ରହୁଥିବା ଅଧ୍ୟାପକ ଦୀନବଂଧୁ ଶତପଥୀଙ୍କ ପରିବାରକୁ ଆସୁଥିଲି ପଢ଼ାଇବା ପାଇଁ । ସେତେବେଳେ ମୁଁ ରହୁଥାଏ ପତ୍ରୁଆଁପଦାର ଲକ୍ଷ୍ମୀନାରାୟଣ ମେସ୍‌ରେ ।

ବି.ଏ. ପରୀକ୍ଷାର ଫର୍ମ ପୂରଣର ବେଳ ପାଖେଇ ଆସୁଥାଏ । ଟିଉସନ୍ ଛାଡ଼ି ମୁଁ ପରୀକ୍ଷା ପାଇଁ ପ୍ରସ୍ତୁତ ହେଉଥାଏ । ଦିନେ ସଂଧ୍ୟାରେ ମୋ ମେସ୍‌ରେ ପହଂଚିଲେ ଶତପଥୀ ସାର୍ । ମୋତେ ଖୋଜିଲେ । ମୁଁ ତାଙ୍କୁ ଦେଖି ଅତ୍ୟଂତ ଆଶ୍ଚର୍ଯ୍ୟ ହେଲି । ସେ ମେସ୍‌ର ଦୋଳିଆ ଖଟଟା ଉପରେ ବସିପଡ଼ି ସ୍ନେହାର୍ଦ୍ର ଭାଷାରେ କହିଲେ ''ଟିଉସନ୍ ତ ଛାଡ଼ି ଦେଇଛ, ପରୀକ୍ଷା ଫି ଦେବାକୁ ପାଖରେ ଟଂକା ନଥିବ । ନିଅ, ରଖ ଏ ଶହେଟି ଟଂକା । ପରୀକ୍ଷା ଫି ଦେଇଦେବ ।''

କୃତଜ୍ଞତାରେ ମୋ ପାଟିରୁ ଭାଷା ସ୍ଫୁରିଲା ନାଇଁ । ସେଦିନ ସାର୍ ଟଂକା ଦେଇ ଚାଲିଗଲେ । ପରେ ଜାଣିଲି, କମନ୍‌ରୁମ୍‌ରେ ମୋର ଆର୍ଥିକ ଅଭାବ ବିଷୟରେ ଶତପଥୀ ସାର୍‌ଙ୍କ ସହ ଆମ ସମୟର ନବନିଯୁକ୍ତ ଓଡ଼ିଆ ଅଧ୍ୟାପକ ତଥା ଗାଳ୍ପିକ ନାରାୟଣ ଚୌଧୁରୀ ଓ ଦର୍ଶନ ଅଧ୍ୟାପକ ନେତ୍ରାନଂଦ ମଲ୍ଲ ଆଲୋଚନା କରିଥିବାର । ଆଜି ଶତପଥୀ ମହାଶୟ ଇହଧାମରେ ନାହାଂତି । କିଂତୁ ପ୍ରାଚୀନ ଗୁରୁକୁଳର କୁଳପତିଙ୍କ ସକଳ ଗୁଣ ତାଙ୍କଠାରେ ଭରପୂର ଥିଲା । ଛାତ୍ରମାନଙ୍କ ଭଲମଂଦ ବୁଝିବା ପାଇଁ ସେ କିପରି ବ୍ୟାକୁଳ ଥିଲେ, ତାହା ଏଇ ଛୋଟ ଘଟଣାରୁ ଜଣାପଡ଼େ ।

ଗତ ୪/୫ ବର୍ଷ ତଳେ ରାଉରକେଲା ଇଂଜିନିୟରିଂ କଲେଜର ଜଣେ ଛାତ୍ର ଅଚାନକ୍ ମରିଗଲେ । ସେଇ ଛାତ୍ରର ଅଭିଭାବକ ମୁଖ୍ୟମଂତ୍ରୀଙ୍କ ଦୃଷ୍ଟି ଅକର୍ଷଣ କରି 'ସମାଜ'ରେ ପତ୍ରଟିଏ ଛାପିଲେ । ପୁତ୍ରହରା ସେ ପିତା ଥିଲେ ଡଃ ନେତ୍ରାନଂଦ ମଲ୍ଲ । ସେ ଫକୀରମୋହନରୁ ଚାଲିଯାଇ ଦର୍ଶନରେ ପ୍ରଫେସର ଥିଲେ ନର୍ଥ ଇଷ୍ଟର୍ଣ୍ଣ ହିଲ୍ ୟୁନିଭର୍‌ସିଟିରେ । ତାଙ୍କ ପୁତ୍ରର ଅକାଳ ବିୟୋଗ ବିଷୟରେ ପଢ଼ି ମୁଁ ମଧ୍ୟ ମର୍ମାହତ ହେଲି । ସାର୍‌ଙ୍କୁ ସାନ୍ତ୍ୱନା ଦେଇ ପତ୍ରଟିଏ ଲେଖିଲି । ତାଙ୍କ ପାଖରେ ରିସର୍ଚ୍ଚ କରୁଥିବା କେଂନ୍ଦ୍ରାପଡ଼ା ଅଂଚଳର ଜଣେ ଛାତ୍ର ହଠାତ୍ ଗୌହାଟି ଏକ୍ସପ୍ରେସ୍‌ରେ ସେଦିନ ଦେଖାହେଲା । ସେ ମୋ ଠାରୁ ମୋର କାର୍ଯ୍ୟାଳୟରେ କିଛି ସେବା ପାଇ ଆଗରୁ ପ୍ରୀତ ହୋଇଥିଲେ । ନେତ୍ରାନଂଦ ମଲ୍ଲ ଏବେ ବି ମୋତେ ମନେ ରଖିଛଂତି, ଛାତ୍ର ଜଣକ କଥା ପ୍ରସଂଗରେ କହୁଥିଲେ ।

ସ୍ମୃତି ଅତି ମଧୁର । ଫକୀରମୋହନ କଲେଜର ଛାତ୍ରଜୀବନର ସ୍ମୃତି କିଂତୁ ମଧୁରତର । ତତ୍‌କାଳୀନ କଲେଜ ଜୀବନରେ ଥିବା ମମତ୍ୱବୋଧ ମୋ କଲମରେ ଭରି ଦେଇଛି ଭାଷା, ଜୀବନ ପଥର ଉଚ୍ଚାକାଂକ୍ଷା ପୂରଣ ଦିଗରେ ଦେଖାଇଛି ଦିଶା । ଫାଷ୍ଟ ବି.ଏ. କ୍ଲାସରେ ମେଥ୍‌ମେଟିକ୍‌ସ ନେଇଥିଲି ମୁଁ । ଇଂରାଜୀ କ୍ଲାସର ଗହଳି ଟପି ମୁଁ ତରତର ପଦକ୍ଷେପରେ ପି.ଏଲ.ଟି. ଆଡ଼େ ଧପାଳି ଗଲାବେଳେ କରିଡରରେ ହଠାତ୍ ପଡ଼ିଗଲି ଅଧ୍ୟାପକ ବସଂତ ଶତପଥୀଙ୍କ ହାବୁଡ଼ରେ । ସେ ମୋର ପଥରୋଧ କରି କହିଲେ-କୁଆଡ଼େ ଧାଇଁଛ ହେ ପ୍ରିୟ ହାଣ୍-ମାର୍-କାଟ୍ କବି ? (ବସଂତ ଶତପଥୀ ମୋତେ ସ୍ନେହରେ ଏ ସଂବୋଧନଟି କରୁଥିଲେ । ବିପ୍ଳବୀ କବିତା ଲେଖିବା ଓ ସେବେଳର ବିପ୍ଳବୀ ଛାତ୍ରନେତା ଅରୁଣ ଦେ ଓ ସୁଶାଂତ ଚାନ୍ଦଙ୍କ ଅନୁଗାମୀ ହେବା ଦେଖି ସେ ମୋ ପ୍ରତି କିଛିଟା ବ୍ୟଙ୍ଗ ମଧ୍ୟ କରୁଥିଲେ ।) ମୁଁ କହିଲି -ମୋର ଏବେ ମ୍ୟାଥ୍‌ମେଟିକ୍‌ସ କ୍ଲାସ ଅଛି ।

ମୁଁ ମ୍ୟାଥ୍ ରଖିଛି ଶୁଣି ସେ ବ୍ୟଂଗଭରା ଏକ ହସ ହସିଲେ । ତାଙ୍କର ବ୍ୟଂଗଭରା ସ୍ୱରରେ କହିଲେ -ଏବେ କମ୍ବିନେସନ ଚେଂଜ୍‌ର ସମୟ ଯାଇନି । ଏ ଗଣିତ ଶାସ୍ତ୍ର ବିଷୟଟାକୁ ବଦଳାଅ । ଆର୍ଟସ୍ ପଢ଼ିବ-ରଖିବ ବିଜ୍ଞାନ କଂବିନେସନ୍‌ରୁ ବିଷୟ ? ତୁମେ ଲେଖାଲେଖି ପଢ଼ାପଢ଼ି ପ୍ରତି ଧ୍ୟାନ ଦେଇ ପାରିବ ତ ? ରଖିଲ କ'ଣ ନାଁ ମ୍ୟାଥ୍‌ମେଟିକ୍‌ସ ?

ସେ ବର୍ଷ ଅବଶ୍ୟ ମୁଁ ସେ ବିଷୟ ଡ୍ରପ କରି ନଥିଲି । କିଂତୁ ବି.ଏ. ପଢ଼ିବା ବେଳକୁ ମୁଁ ଆଉ ଗଣିତ ରଖି ନଥିଲି ।

• ଗ୍ରାମ, ଅଂଗାରଗାଡ଼ିଆ, ବାଲେଶ୍ୱର

# ବିନମ୍ର ପ୍ରଣାମ

## ଶାନ୍ତି ଦେବୀ

୧୯୪୯-୫୦ ମସିହା, ମୁଁ ଫକୀରମୋହନ କଲେଜରେ ମାତ୍ର ଦୁଇବର୍ଷ ପାଇଁ ପଢ଼ିବାକୁ ସୁଯୋଗ ପାଇଥିଲି । ସେତେବେଳେ ଯେଉଁ ଅଧ୍ୟାପକମାନେ ଥିଲେ ସେମାନେ ହେଲେ, ଶ୍ରୀଯୁକ୍ତ ତ୍ରିଲୋଚନ ମିଶ୍ର, ଶ୍ରୀଯୁକ୍ତ ଗୋପାଳ ପଟ୍ଟନାୟକ, ଶ୍ରୀଯୁକ୍ତ କ୍ଷିତୀଶ ଚନ୍ଦ୍ର ଦେବ, ଶ୍ରୀଯୁକ୍ତ କ୍ଷେତ୍ରମୋହନ ପଟ୍ଟନାୟକ, ଡଃ କୁଞ୍ଜବିହାରୀ ଦାଶ, ଶ୍ରୀଯୁକ୍ତ ଶ୍ରୀରାମଚନ୍ଦ୍ର ଦାଶ, ଶ୍ରୀଯୁକ୍ତ ସିଦ୍ଧେଶ୍ୱର ହେତା, ଶ୍ରୀଯୁକ୍ତ ଜାନକୀ ବଲ୍ଲଭ ମହାନ୍ତି ଏବଂ ଅନ୍ୟମାନେ । ଅଧକ୍ଷମାନେ ହେଲେ ଡଃ ଘନଶ୍ୟାମ ଦାଶ, ଶ୍ରୀ ଭି.ଭି. ଜନ, ଡଃ ସୁନ୍ଦରମ୍ । ଏମାନେ ସମସ୍ତେ ଅତି ଉଚ୍ଚକୋଟୀର ବିଦ୍ୱାନ, ଜ୍ଞାନୀ, ଗୁଣୀ ଓ ନିଷ୍ଠାପର ଅଧକ୍ଷ ତଥା ଅଧ୍ୟାପକ ଥିଲେ ।

ଆମେ ଅଳ୍ପ ସଂଖ୍ୟକ ଝିଅ ସେତେବେଳେ କଲେଜରେ ପାଠ ପଢୁଥିଲୁଁ । ଆମର ସମସ୍ତ ପ୍ରକାର ସୁବିଧା ଅସୁବିଧା କଥା ସେହି ଅଧକ୍ଷ ତଥା ଅଧ୍ୟାପକମାନେ ବୁଝୁଥିଲେ । ଡଃ ଘନଶ୍ୟାମ ଦାଶଙ୍କ ଅମଳରେ ଆମେ କେତେଜଣ ଝିଅ ଶ୍ରୀଯୁକ୍ତ ତିଲୋଚନ ମିଶ୍ରଙ୍କ ତତ୍ତ୍ୱାବଧାନରେ ଶାନ୍ତିନିକେତନ, ବେଲୁର ମଠ, କଲିକତା ଆଦି ସ୍ଥାନ ବୁଲି ଦେଖିବାର ସୁଯୋଗ ପାଇଥିଲୁଁ । ସେତେବେଳର କଲେଜ ଇଉନିୟନର ସଭାପତି ୰ ବୈତାରି ଦାସ, ଜଣେ ଅତି ଉଚ୍ଚ ବିଚାର ସଂପନ୍ନ ଚରିତ୍ରବାନ ଓ ସାହସୀ ଯୁବକ ଥିଲେ । କଲେଜରେ ଅଧ୍ୟୟନ କରୁଥିବା ଝିଅମାନଙ୍କର ସମସ୍ତ ପ୍ରକାର ମର୍ଯ୍ୟାଦା ରକ୍ଷା ପ୍ରତି ଦୃଷ୍ଟି ଦେଉଥିଲେ ।

ଏଠାରେ ପାଠ ପଢ଼ିବା ସମୟରେ ମୁଁ ଅନେକ କଥା ଶିଖିବାର ସୁଯୋଗ ପାଇଛି । ପ୍ରଥମତଃ ପୁଅଝିଅ ଏକାଠି ପଢୁଥିବାରୁ ପୁଅମାନଙ୍କୁ ନିଜର ବନ୍ଧୁ, ସହୋଦର ଭାବରେ ଦେଖିବାର ମାନସିକତା ବୃଦ୍ଧି ପାଇଛି । ଏଠାରୁ ମୁଁ ଜ୍ଞାନ ପାଇଛି, ବିଦ୍ୟା ପାଇଛି, ଗୁରୁଜନମାନଙ୍କର ସ୍ନେହ ସୌହାର୍ଦ୍ଦ୍ୟ ପାଇଛି ଏବଂ ସାଥିମାନଙ୍କର ବନ୍ଧୁତା ମଧ ପାଇଛି । ଏପରି ବନ୍ଧୁ ପାଇଛି ଯେଉଁମାନେ ଆଜିଯାଏବି ମୋର ବନ୍ଧୁ ହୋଇ ରହିଛନ୍ତି ।

କ୍ଳାସରେ ପାଠ ପଢ଼ାଇଲା ବେଳେ ବୁଝି ନପାରିଲେ ଅଧ୍ୟାପକମାନେ ବାରଂବାର ବୁଝାଇବାକୁ ଚେଷ୍ଟା କରୁଥିଲେ । ଏମାନଂକ ମଧରୁ ଜଣେ ବୟଃଜ୍ୟେଷ୍ଠ ଅଧ୍ୟାପକ ଥିଲେ, ଯେ କି ଅର୍ଥଶାସ୍ତ୍ରକୁ ପ୍ରଥମେ ଓଡ଼ିଆରେ, ପରେ ଇଂରାଜୀରେ ବୁଝାଉଥିଲେ ଏବଂ ସେ ବିଷୟରେ ଲିଖିତ ନୋଟ ମଧ ଦେଉଥିଲେ; ଫଳରେ ନୂଆକରି କଲେଜରେ ପ୍ରବେଶ କରିଥିବା ଅପରିପକ୍ୱ ମସ୍ତିଷ୍କକୁ ଅତି ନିବିଡ଼ ଭାବରେ ତାହା ଛୁଇଁ ପାରୁଥିଲା । ସେତେବେଳେ ପାଠ ପଢ଼ିବାକୁ ଜ୍ଞାନ ଅର୍ଜନର ପ୍ରଧାନ ସୋପାନ ବୋଲି ଆମକୁ ବୁଝାଇ ଦିଆଯାଉଥିଲା । ସେହିପରି ଇଂରାଜୀ କବିତା 'ସୋରାବ ଏଣ୍ଡ ରୁସ୍ତମ' ପଢ଼ାଇଲା ବେଳେ ଆମର ଇଂରାଜୀ ଅଧ୍ୟାପକ ଶ୍ରୀଯୁକ୍ତ କ୍ଷିତୀଶ ଦେବ୍ ଭାବବିହ୍ୱଳ ହୋଇ ବେଳେବେଳେ କାନ୍ଦି ପକାଉଥିଲେ । ସେହି କବିତାରେ ଥିବା ସାହସିକତା, ବୀରତ୍ୱ ଓ ବାତ୍ସଲ୍ୟ ପ୍ରେମର ପରାକାଷ୍ଠାକୁ ଆମେ ଗଭୀର ଭାବରେ ଅନୁଭବ କରି ପାରୁଥିଲୁଁ । ଭବିଷ୍ୟତ ଜୀବନରେ ଏହା ଆମ ଉପରେ ଅନେକ ପ୍ରଭାବ ପକାଇଛି । ସେହିପରି ଡଃ କୁଞ୍ଜବିହାରୀ ଦାଶ ସଂସ୍କୃତ ପଢ଼ାଇବା ସମୟରେ 'ସ୍ୱପ୍ନ ବାସବଦତ୍ତମ୍' ନାଟକକୁ ଏପରି ଭାବାବେଶରେ ବୁଝାଉଥିଲେ ଯେ ସେଥିରୁ ଅନାସକ୍ତତା, ବୈରାଗ୍ୟ ଓ ତ୍ୟାଗର

ଭାବନା ଉଛୁଳି ପଡୁଥିଲା । ଏସବୁର ସମଷ୍ଟି ମୋର ଭବିଷ୍ୟତ ଜୀବନକୁ ଅନେକ ପରିମାଣରେ ପୁଷ୍ଟ କରିଛି ।

ଏହି ପୂଜନୀୟ, ବନ୍ଦନୀୟ ଅଧ୍ୟାପକମାନଂକ ମଧ୍ୟରୁ, ତଥା ବନ୍ଧୁମାନଂକ ମଧ୍ୟରୁ ଅନେକ ଆମକୁ ଛାଡ଼ି ଚାଲି ଯାଇଛନ୍ତି । ଫକୀରମୋହନ କଲେଜ ଏମାନଂକୁ ପାଇ ନିଶ୍ଚୟ ଧନ୍ୟ ମନେ କରୁଥିବ । ଏମାନଂକ ମାର୍ଗଦର୍ଶନ, ସ୍ନେହ, ମମତା ଆମ ପରି ଅନେକ ଅକିଂଚନଙ୍କର ଜୀବନ-ପଥକୁ ପୁଷ୍ପିତ, ଆଲୋକିତ ଓ ସୁରଭିତ କରିଛି । ଏମାନଙ୍କୁ ମନେ ପକାଇ ଆଜି ଏଇ ଶୁଭ ଅବସରରେ ମୋର ଅଶ୍ରୁପୂର୍ଣ୍ଣ ଶ୍ରଦ୍ଧାଞ୍ଜଳି ଦେବା ସଂଗେସଂଗେ ଫକୀରମୋହନ କଲେଜ ପରି ଏକ ସ୍ୱୟଂସଂପୂର୍ଣ୍ଣ ବିଦ୍ୟାମନ୍ଦିର କୋଟି ପରମାୟୁ ଘେନି ଆଗେଇଚାଲୁ ଏହି ଅକାଂକ୍ଷା ରଖୁଛି ତଥା ଏହି ବିଦ୍ୟାମନ୍ଦିରକୁ କୋଟିକୋଟି ପ୍ରଣାମ କରୁଛି ।

• 'ସେବା ସମାଜ',
ଗୁଣୁପୁର- ୭୬୫ ୦୨୨

# ରଜତରୁ ହୀରକ ପର୍ଯ୍ୟନ୍ତ

## ଡଃ ହରିଶ୍ଚନ୍ଦ୍ର ବେହେରା

୧୯୭୦ ମସିହାରେ ଆମ ଗାଁ ଇଡ଼ିଦାର ଗୋଲକ ନାରାୟଣ ଉଚ୍ଚ ଇଂରାଜୀ ବିଦ୍ୟାଳୟରୁ ମ୍ୟାଟ୍ରିକ୍ୟୁଲେସନ ପାଶ୍ କଲି । ଆର୍ଥିକ ଅନଟନରୁ ପଢ଼ିବାର ଆଶା କ୍ରମେ ମଉଳି ଯାଉଥିବା ବେଳେ ଆମ ଗାଁର ରାୟ ବାବୁ (ଯାହାଙ୍କ ଘରେ ମୁଁ ଟ୍ୟୁସନ କରୁଥିଲି) ଲିଭି ଆସୁଥିବା ଦୀପରେ ତେଲ ସଂଯୋଗ କଲେ । ଫକୀରମୋହନ କଲେଜରୁ ଫର୍ମ ଆଣି ପକାଇବାକୁ କହିଲେ ଏବଂ ଆଡ୍‌ମିଶନ ପରେ ମୋତେ ଚିଠିଟିଏ ହାତରେ ଧରାଇଦେଇ ଖ୍ରୀଷ୍ଟିଆନ ସ୍କୁଲର ପ୍ରଧାନ ଶିକ୍ଷକ କାର୍ତ୍ତିକ ପ୍ରସାଦ ବେହେରାଙ୍କୁ ସାକ୍ଷାତ କରିବାକୁ କହିଲେ । ସେ କେବଳ ଏତକ କହିଲେ ଯେ, ସେ ଆମ ଘରର ବନ୍ଧୁବାନ୍ଧବ, ତାଙ୍କ ମାଆ କୁଆଡ଼େ ଆମ ଘରର ଝିଅ । ଯାହାହେଉ ଚିଠି ନେଇ ଖ୍ରୀଷ୍ଟିଆନ ସ୍କୁଲ କ୍ୟାମ୍ପସ୍ ଭିତରେ ଥିବା କ୍ୱାର୍ଟରରେ ସାକ୍ଷାତ କଲି । ପିନ୍ଧିଥାଏଁ ହାଫ୍ ପ୍ୟାଂଟ ଓ ହାଫ୍ ସାର୍ଟ । ଧରିଥାଏ ଗୋଟିଏ କନାଥଳି । ଲାଜ ଲାଗୁଥାଏ ତାଙ୍କୁ ସାକ୍ଷାତ କରିବାକୁ । ଚିଠିଟିଏ ହାତକୁ ବଢ଼ାଇଦେଲି । ଚିଠି ପଢ଼ିସାରି ଆନନ୍ଦରେ ଗଦ୍‌ଗଦ ହୋଇ କହିଲେ, ''ଆରେ ତୁ ମୋ ଚେମା ଭାଇ ପୁଅ'' ! ମୋ ବାପାଙ୍କ ଡାକ ନାମ ଥିଲା 'ଚେମା' । ଦୁଇ ବର୍ଷର ହୋଇଥିଲି ବାପା ସେପାରିକୁ ଚାଲି ଯାଇଥିଲେ । ତେଣୁ ଏ ସମ୍ପର୍କରେ ମୁଁ ବା ଜାଣନ୍ତି କୁଆଡୁ ? କେବଳ ମାଆ କହନ୍ତି, କାର୍ତ୍ତିକ ବାବୁଙ୍କ ମାଆ ଆମ ଘରର ଝିଅ । ଖ୍ରୀଷ୍ଟିଆନ ହୋଇଯିବା ଯୋଗୁଁ ଆମ ଘର ସହିତ ସବୁ ସମ୍ପର୍କ କଟି ଯାଇଥିଲା । ସେ ଯାହାହେଉ ମୋତେ ସାଙ୍ଗରେ ନେଇ ପହଞ୍ଚିଲେ ସୁନହଟର ବିଶିଷ୍ଟ କବିରାଜ ଲମ୍ବୋଦର ଦାସଙ୍କ ଘରେ । ସେତେବେଳେ ତାଙ୍କ ଘର ପାଖପାଖି ୧୪/୧୫ ଜଣ ପିଲା ରହି ପାଠ ପଢୁଥିଲେ । ନିହାତି ଗରିବ ମେଧାବୀ ପିଲାଙ୍କୁ ରଖୁଥିଲେ । କାର୍ତ୍ତିକ ବାବୁଙ୍କ ଠାରୁ ସବୁ ଶୁଣି ମୋତେ ରଖିବା ଲାଗି ସମ୍ମତ ହେଲେ । ଲମ୍ବୋଦର ବାବୁ ଆଜି ସ୍ୱର୍ଗରେ । ତାଙ୍କପରି ପବିତ୍ର ବଦାନ୍ୟ ମଣିଷଟିଏ ଏ ଯୁଗରେ ମିଳିବା କଷ୍ଟକର । ତାଙ୍କରି ଘରେ ରହିବାର ସୁଯୋଗ ପାଇ ଅନେକ ବଡ଼ ମଣିଷ ହୋଇଛନ୍ତି । ତାଙ୍କ ସାହାଯ୍ୟ ପାଇ ନଥିଲେ ହୁଏତ କଲେଜରେ ପଢ଼ିବାର ସ୍ୱପ୍ନ ସ୍ୱପ୍ନରେ ହିଁ ରହି ଯାଇଥା'ନ୍ତା ।

ଯାହାହେଉ ରହିବା ଖାଇବା ସମସ୍ୟା ଗଲା । ବାକି ଦରମା ମାସକୁ ଆଠଟଙ୍କା । କେଉଁଠୁ ପାଇବି ସେ ଚିନ୍ତା । ଯାହାହେଉ କଲେଜରେ ହାଫ୍ ଫ୍ରିସିପ୍ ମିଳିଗଲା । ବାକି ଚାରିଟଙ୍କା କେମିତି ଯୋଗାଡ଼ ହେବ । ପୁଣି କାର୍ତ୍ତିକ ବାବୁଙ୍କୁ ଧରିଲି । ସେ ମୋତେ ନେଇଗଲେ ଆଉ ଜଣେ ବିଶିଷ୍ଟ ବ୍ୟକ୍ତିଙ୍କ ପାଖକୁ । ବାଲେଶ୍ୱରର ବିଶିଷ୍ଟ ଡାକ୍ତର ବିଜୟ ଗିରିଙ୍କ ନିକଟକୁ । ମୋ ଦୁଃଖ କଥା ଶୁଣି ସେ ମାସକୁ ଚାରିଟଙ୍କା ଦେବାର ଅଙ୍ଗୀକାର କଲେ । ପରେ ଜାଣିଲି କଲେଜରେ ପଢୁଥିବା ଆହୁରି କେତେଜଣ ଛାତ୍ରଙ୍କୁ ସେ ସାହାଯ୍ୟ କରୁଛନ୍ତି । ଦରମା ସମାଧାନ ହୋଇଗଲା । ବହିପତ୍ର ଯାହା ଲାଇବ୍ରେରୀରୁ ମିଳିଲା ସେତକ । ଘରୁ ତ ପଇସାଟିଏ ଆସିବାର ନ ଥିଲା । ବିଧବା ମାଆ ବା କେଉଁଠୁ ଆଣନ୍ତା ? ବାପା ମଲାବେଳକୁ ଛାଡ଼ି ଯାଇଥିଲେ ମାତ୍ର ଆଠଗୁଣ୍ଠ ଜମି । ଘର ଛାଉଣି ଲାଗି କୁଟାପୁଞ୍ଜାକ ମଧ୍ୟ ମାଗିଯାଚି । ତେଣୁ ଯୋଡ଼ିଏ ଟ୍ୟୁସନ କଲି । ଖାତାପତ୍ର ଓ ଅନ୍ୟାନ୍ୟ ଖର୍ଚ୍ଚ ଚଳିଗଲା । ପୁରୁଣା ପ୍ୟାଂଟଟିଏ ମାଗି ଆଣିଥିଲି ମୋ ମାମୁଁପୁଅ ଭାଇଙ୍କ ଠାରୁ । ବେଶ୍ ଯୋଡ଼ିଏ ହାଫ୍ ସାର୍ଟ ଓ ପ୍ୟାଂଟରେ କଟିଗଲା ଦୁଇବର୍ଷ । ଆମ ସମୟରେ ଅଧିକାଂଶ ପିଲା ଥିଲେ ଗରିବ । ଲଜ୍‌ରେ ରହି କଲେଜରେ ପଢୁଥିଲେ । ଏବେ ସେ ବ୍ୟବସ୍ଥା ଆଉ ନାହିଁ । ଲଜ୍‌ରେ ରହି ବହି ପଢ଼ିବା କଥା ଆଜି ସ୍ୱପ୍ନ ପରି ଲାଗୁଛି ।

ମୋର ଗଣିତ ଭଲ ହେଉଥିଲା । ପି.ୟୁ. (P.U.)ରେ ରଖିଲି ଗଣିତ, ସଂସ୍କୃତ ଓ ଲଜିକ୍ । ବିଜ୍ଞାନ ପଢ଼ିବାର ଇଚ୍ଛା ଥିଲେ ବି ଆର୍ଥିକ ଅନଟନ ଯୋଗୁଁ କଳା ପଢ଼ିଲି । ଗଣିତରେ ଥାଆନ୍ତି ଲମ୍ବୋଦର ଆଚାର୍ଯ୍ୟ ଓ ମୀନକେତନ ସାର୍ । ଏ ଦୁଇଜଣଙ୍କ କ୍ଲାସ୍ ଖୁବ୍ ଭଲ ଲାଗୁଥିଲା । ମୀନକେତନ ସାର ଗମ୍ଭୀର ପ୍ରକୃତିର ଏବଂ ଅଧାପାଗଳ ପରି ଲାଗନ୍ତି । ମାତ୍ର ପାଠରେ ଜାଏଣ୍ଟିଏ । ତାଙ୍କ ପିଲାଙ୍କ ନାମ ଦେଇଥାନ୍ତି ଥିଟା, ବିଟା, ଟାମା । ଅଳ୍ପ କେଇ ବର୍ଷ ତଳେ ତାଙ୍କର ଶବ କଟକରେ ତାଳଦଣ୍ଡା କେନାଲରୁ ମିଳିଥିଲା । ଖବର ଜାଣିବା ଦିନ ମୁଁ ଦୁଃଖରେ କାନ୍ଦି ପକାଇଥିଲି । ସଂସ୍କୃତରେ ଥାଆନ୍ତି ପଣ୍ଡିତ ମହେନ୍ଦ୍ର କୁମାର ମିଶ୍ର । ଅଗାଧ ପାଣ୍ଡିତ୍ୟ ତାଙ୍କର । ଧଳା ଧୋତି ଆଉ ପଞ୍ଜାବୀ ପିନ୍ଧି କ୍ଲାସରେ ପଢ଼ାଉଥିବା ବେଳେ ଆମେ ମନ୍ତ୍ରମୁଗ୍ଧ ପରି ଶୁଣୁଥିଲୁ । ତାଙ୍କ ଝିଅ ମଧ୍ୟ ଆମ ସଙ୍ଗରେ ସଂସ୍କୃତ ନେଇ ପଢୁଥିଲେ । ଲଜିକ୍ କ୍ଲାସ ନେଉଥିଲେ ନେତ୍ରାନନ୍ଦ ମଲ୍ଲ । ତାଙ୍କ ପରି ଅଧ୍ୟାପକ ମୁଁ ଜୀବନରେ ଖୁବ୍ କମ୍ ଦେଖିଛି । କି ଅସାଧାରଣ ପାଣ୍ଡିତ୍ୟ ତାଙ୍କର ! ଯେମିତି ଜ୍ଞାନକୁ ସେମିତି ବ୍ୟକ୍ତିତ୍ୱ । ପ୍ରଚଣ୍ଡ ସ୍ମରଣ ଶକ୍ତି । ମନେ ପଡୁଛି ୧୨ ନମ୍ବର ରୁମ୍‌ରେ ତାଙ୍କର ପ୍ରଥମ କ୍ଲାସ କଥା । ଗୋଟିଗୋଟି ସମସ୍ତଙ୍କ ନାମ ପଚାରିଲେ । ତା'ପର କ୍ଲାସରେ ସମସ୍ତଙ୍କୁ ନାଁ ଧରି ଡାକିଲେ । କମ୍ପ୍ୟୁଟର ପରି ତାଙ୍କ ବ୍ରେନ୍‌ରେ ଯେମିତି ଥରକରେ ସବୁ ଲେଖି ହୋଇ ଯାଉଥିଲା । ଆମ ସମୟର ପି.ୟୁ.ଓ ଫାଷ୍ଟ ଇଅର୍‌ରେ ୟୁନିଭରସିଟି ପରୀକ୍ଷା ହେଉଥିଲା । ଯାହାହେଉ ଭଲ ରେଜାଲ୍ଟ ହେଲା । ଏହି ସମୟରେ କଲେଜରେ ଏକ ଅପ୍ରୀତିକର ପରିସ୍ଥିତି ସୃଷ୍ଟି ହୋଇଥିଲା । ୧୯୭୩ ମସିହାର ବୋଧହୁଏ ଜାନୁଆରୀ ମାସ ହେବ । ପୂର୍ବାହ୍ନ ୧୧ଟା ସମୟରେ ଅଧକ୍ଷ ମେଜର ରାମଚନ୍ଦ୍ର ପଟ୍ଟନାୟକ ସବୁଦିନ ପରି ଚାଲିଚାଲି ଆସୁଥାନ୍ତି ତାଙ୍କ କ୍ୱାର୍ଟରରୁ । କଲେଜର ମୁଖ୍ୟ ଫାଟକ ସମ୍ମୁଖ ରାସ୍ତାର ଟିକିଏ ପୂର୍ବରୁ ଯେଉଁଠି ଅଶ୍ୱତ୍ଥ ଗଛଟିଏ ଅଛି ଏବଂ ଯା' ମୂଳରେ ଏବେ ପ୍ରତ୍ୟେକ ଦିନ ଗୁପ୍‌ଚୁପ୍ ବାଲାଟିଏ ତା'ର ପସରା ମେଲାଇ ଦିଏ ଏବଂ ଶହଶହ ଝିଅପିଲା ଗୁପ୍‌ଚୁପ୍ ଖାଇବା ଲାଗି ତାକୁ ଘେରି ହେଇଯାଆନ୍ତି, ଠିକ୍ ସେହି ଜାଗାରେ ପ୍ରିନ୍‌ସପାଲ ଆସି ପହଞ୍ଚିଛନ୍ତି ହଠାତ୍ ପଛପଟୁ ଛୁରାମାଡ଼ ହେଲା । ବେକର ପଛପଟେ ଓ ପିଠିପଟେ ଛୁରା ମାଡ଼ । ବିଜୁଳି ବେଗରେ ଛୁରୀ ଓ ମୁଥା ମାରିଦେଇ ଜହର ପଣ୍ଡା ନାମକ ଦୁର୍ଦ୍ଦାନ୍ତ ଛାତ୍ରଟେ ପଳାୟନ କଲା । ଜହରର ଅନ୍ତରଙ୍ଗ ବନ୍ଧୁ ପ୍ରକାଶ ସେନାପତି ମୁହୂର୍ତ୍ତକ ଭିତରେ ତାକୁ ସାଇକେଲରେ ବସେଇ ଚମ୍ପଟ କଲା । ସେତେବେଳେ ଶଶୀ ଦୋକାନ ତିଆରି ହୋଇ ନଥାଏ । ତାଙ୍କ ବାପା ଠେଲାଗାଡ଼ିରେ ଛଣା ଜିନିଷ ବିକାବିକି କରୁଥାନ୍ତି । ଅଧକ୍ଷ ରକ୍ତ ଜୁଡୁବୁଡୁ ଅବସ୍ଥାରେ ତଳେ ପଡ଼ି ଛଟପଟ ହେଉଥାନ୍ତି । ଆମେ ସବୁ କିଂକର୍ତ୍ତବ୍ୟବିମୂଢ଼ ହୋଇ ତାଙ୍କ ଚାରିପଟେ ଘେରି ଯାଇଥାଉଁ । ଲେସ୍‌ଲି ବାବୁ ଦଉଡ଼ି ଆସିଲେ । ପୂର୍ବପଟୁ ସନ୍ତୋଷ ଦାସ ଆସୁଥିଲେ । ସଙ୍ଗେସଙ୍ଗେ ତାଙ୍କୁ ହସ୍‌ପିଟାଲ ନେବାର ବ୍ୟବସ୍ଥା ହୋଇଗଲା । ପରେ ବୁଝିଲୁ, ଛୁରୀ ମାରିବାର କାରଣ ଥିଲା ପରୀକ୍ଷାର ରେଜାଲ୍‌ଟକୁ ନେଇ । କିଛି ଦିନ ପୂର୍ବରୁ ଅନୁଷ୍ଠିତ ହୋଇଥିବା ପି.ୟୁ. ସପ୍ଲିମେଂଟାରୀ ପରୀକ୍ଷାରେ ଜହର ତା' ସିଟ୍ ଉପରେ ଛୁରୀ ରଖି କପି କରୁଥିଲା । କଲେଜ୍ ହଲରେ ପରୀକ୍ଷା ଚାଲିଥାଏ । କୌଣସି ଅଧ୍ୟାପକ ତା'ଠାରୁ କପି ଛଡ଼େଇବାକୁ ସାହସ କଲେନାହିଁ । ପ୍ରିନ୍‌ସପାଲଙ୍କ ପାଖକୁ ଖବର ଗଲା ଓ ନିଜେ ପ୍ରିନ୍‌ସପାଲ ତା'ଠାରୁ କପି ଜବତ୍ କଲେ ଓ ତା' ନାଁରେ ମାଲପ୍ରାକ୍ଟିସ ବୁକ୍ ହେଲା । ସେତେବେଳେ ଅଧକ୍ଷଙ୍କୁ ଧମକ ଦେଇ କହିଥିଲା ଯଦି ସେ ଏକ୍ସଫେଲ ହୁଏ ତେବେ ଦେଖିନେବ । ଘଟଣା ଦିନ କି ତା' ପୂର୍ବଦିନ ରେଜାଲ୍ଟ ବାହାରିଥାଏ । ଜହର ଫେଲ ହେଲା ଏବଂ ତା' ପୂର୍ବ ଧମକ ପାଳନ କରି ଏମିତି କାଣ୍ଡ ଭିଆଇଲା । ନନ୍ଦିନୀ ଶତପଥୀଙ୍କ ମନ୍ତ୍ରୀମଣ୍ଡଳର ସମୟ । ସାର୍‌ଙ୍କୁ ଆଉ ଏଠାକୁ ଆସିବାକୁ ପଡ଼ିଲା ନାହିଁ । ସାହସିକତାର ପୁରସ୍କାର ସ୍ୱରୂପ ତାଙ୍କୁ ଖଲ୍ଲିକୋଟ କଲେଜରେ ପ୍ରଫେସର ପଦବୀ ମିଳିଗଲା ।

କିନ୍ତୁ କୋର୍ଟରେ ଜମାନବନ୍ଦୀ ବେଳେ ଏ ଉଦାରଚେତା ମଣିଷ କହିଲେ କିଏ ଛୁରୀ ମାରିଛି ମୁଁ

ଦେଖିନାହିଁ କି ତା ନାଁ ମଧ୍ୟ ଜାଣେନାହିଁ । ଛାତ୍ରଙ୍କୁ ସଦାକାଳେ କ୍ଷମା କରିଦେବା ତ ଶିକ୍ଷକଙ୍କର ସହଜାତ ଗୁଣ !

ସ୍ନାତକ ବେଳକୁ କ'ଣ ଅନର୍ସ ରଖିବି ଚିନ୍ତା କରି ପାରିଲିନି । ସଂସ୍କୃତ ଯଦିଓ ଭଲ ହେଉଥିଲା, ତେବେ ଅନର୍ସ ନଥିଲା । ଏତେ ଦୂରରେ ରହି ଟ୍ୟୁସନ କରି ଗଣିତ ଅନର୍ସ ରଖିବାକୁ ସାହସ ହେଲାନି । ସବୁ ବିଷୟ ଛାଡ଼ି ଅନର୍ସ ରଖିଲି ଓଡ଼ିଆ ଏବଂ ପାଶ୍ ବିଷୟ ରାଜନୀତି ବିଜ୍ଞାନ । ଦୁଇଟି ଯାକ ମୋ ପାଇଁ ନୂଆ ହୋଇଗଲା । ଓଡ଼ିଆରେ ଥାଆନ୍ତି ଅଧ୍ୟାପକ ବିକ୍ରମ ଜେନା, ନାରାୟଣ ଜେନା, ରାମଚନ୍ଦ୍ର ଦାସ, ଶ୍ୟାମା ପ୍ରସନ୍ନ ମିଶ୍ର, ଉମାକାନ୍ତ ତ୍ରିପାଠୀ, ଉପେନ୍ଦ୍ରନାଥ ଦାସ ପ୍ରମୁଖ । ବିକ୍ରମ ସାର ସବୁବେଳେ କଲେଜ ଉନ୍ନୟନ କାମରେ ବ୍ୟସ୍ତ ରହୁଥିବାରୁ ଖୁବ୍ କମ୍ କ୍ଲାସ ନେଉଥିଲେ । ସେ ଆମକୁ ଓଡ଼ିଆ ସାହିତ୍ୟର ଇତିହାସ ପଢ଼ାଉଥିଲେ । ତାଙ୍କ କୋର୍ସ କେବେ ସରେନାହିଁ । କିନ୍ତୁ ଯେଉଁ କେତୋଟି କ୍ଲାସ୍ ନେଉଥିଲେ ସେଗୁଡ଼ିକୁ ବେଶ୍ ରସାଳ ଓ ପ୍ରୀତିପଦ କରି ଦେଉଥିଲେ । ନାରାୟଣ ସାର୍ ପଢ଼ାଉଥିଲେ ନାଟକ । ଶ୍ୟାମାପ୍ରସନ୍ନ ସାର୍ ମଧ୍ୟଯୁଗୀୟ କାବ୍ୟ । ସେ ସଂସ୍କୃତ ଶ୍ଳୋକ ଓ ଓଡ଼ିଆ କାବ୍ୟର ପଙ୍କ୍ତି ଗୁଡ଼ିକ ଅନର୍ଗଳ ଗାଇ ଯାଉଥିଲେ । କାବ୍ୟ-ସାହିତ୍ୟରେ ତାଙ୍କର ଅଗାଧ ପାଣ୍ଡିତ୍ୟ । ମନ୍ତ୍ରମୁଗ୍ଧ ପରି ଆମେ ଶୁଣୁଥିଲୁ । ରାମ ସାର୍ ଭାରି ସ୍ନେହୀ ମଣିଷ । ପ୍ରବନ୍ଧର ପଏଂଟ ସବୁ ବ୍ଲାକ୍‌ବୋର୍ଡ଼ରେ ଲେଖି ଦେଉଥିଲେ । ଉମାକାନ୍ତ ସାର ପଢ଼ାଉଥିଲେ ଆଧୁନିକ କବିତା । ଖୁବ୍ ଭଲ ଲାଗେ ତାଙ୍କ କ୍ଲାସ । ରାଜନୀତି ବିଜ୍ଞାନ ପଢାଉଥିଲେ ନୂଆ ହୋଇ ଆସିଥିବା ରାମଦାସ ମାରାଣ୍ଡି ଓ ରାମଚନ୍ଦ୍ର ମହାନ୍ତି । ରାମଚନ୍ଦ୍ର ମହାନ୍ତି ସେତେବେଳେ କଲେଜ ୟୁନିଅନ୍‌ର ଉପଦେଷ୍ଟା ଥାଆନ୍ତି । ମାରାଣ୍ଡି ସାର୍‌ଙ୍କ ପାଠ ପଢ଼ାଇବା ଶୈଳୀ ମନେ ପଡ଼ିଲେ ଖୁବ୍ ହସମାଡ଼େ । କ୍ରିୟା, କର୍ତ୍ତାର ଠିକ୍ ଠିକଣା ରହୁ ନ ଥିଲା । ଆମେ ହସିହସି ବେଦମ୍ ହେଉଥିଲୁ । ମାତୃଭାଷା ପଢ଼ାଉଥିଲେ ଉପେନ୍ଦ୍ର ସାର । ଥରେ ହଲରେ କ୍ଲାସ ଚାଲିଥାଏ । କେହି ଜଣେ ପିଲା 'ଅଭ୍ରଭେଦୀ ଗିରିସାନୁ'ର ଅର୍ଥ ପଚାରିଦେଲା । ସାର୍ ସେଦିନ ଯେଉଁ ଅର୍ଥ କରିଥିଲେ ଆମେ ସବୁ ବଗୁଲିଆ ଦଳ ଯା ମୁହଁକୁ ତା ମୁହଁକୁ ଚାହିଁ ମୁରୁକି ମୁରୁକି ହସୁଥିଲୁ । ସହପାଠୀ ବନ୍ଧୁ ନଟବର ପାଣିଗ୍ରାହୀ ଏବେ ବି ସେ କଥା ମନେ ପକେଇଦେଲେ ଖୁବ୍ ହସମାଡ଼େ । ଆମ ଇଂରାଜୀ କ୍ଲାସ ନେଉଥିଲେ କାର୍ତ୍ତିକ ଚନ୍ଦ୍ର ଚାଟାର୍ଜୀ, ଦେବ କୁମାର ବାନାର୍ଜୀ ଓ ପ୍ରଫୁଲ୍ଲ ଚନ୍ଦ୍ର ମିଶ୍ର । କାର୍ତ୍ତିକ ସାର ଏବଂ ପ୍ରଫୁଲ୍ଲ ସାରଙ୍କ ପଢ଼େଇବା ଶୈଳୀ ଥିଲା ନିଆରା । ପ୍ରଫୁଲ୍ଲ ସାର କେବେ ପିଲାଙ୍କ ମୁହଁକୁ ଚାହିଁ ପଢ଼ାନ୍ତି ନାହିଁ । ହଲ୍‌ରେ କ୍ଲାସ୍ ଚାଲେ । ସେ ଛାତକୁ ଚାହିଁ ପଢ଼ାନ୍ତି । ପରେ ଜଣା ପଡ଼ିଲା ସେ କୁଆଡ଼େ ଏହା ପୂର୍ବରୁ କେଉଁଠି ଏକ ମହିଳା ମହାବିଦ୍ୟାଳୟରେ ଅଧ୍ୟାପକ ଥିଲେ । ଝିଅଙ୍କୁ ନ ଚାହିଁ ଉପରକୁ ଚାହିଁ ପଢ଼ାଉଥିବାରୁ ସେହି ଅଭ୍ୟାସ ରହିଯାଇଥିଲା । ଖୁବ୍ ପ୍ରାଞ୍ଜଳଭାବରେ ସେ ଆମକୁ ବୁଝାଉଥିଲେ । କାର୍ତ୍ତିକ ସାର୍ କବିତା ପଢ଼ାଉଥିଲେ ଏବଂ ତାଙ୍କ ଷ୍ଟାଇଲ୍ ଥିଲା ସଂମ୍ପୂର୍ଣ୍ଣ ଇଂରେଜୀ ଷ୍ଟାଇଲ । ଏମାନେ ସେତେବେଳେ ନାମକରା ଅଧ୍ୟାପକ ଥିଲେ । ଆଜି କାର୍ତ୍ତିକ ସାର୍ ଇହଧାମରେ ନାହାନ୍ତି । ଅର୍ଥନୀତିରେ ପ୍ରଫେସର କୃଷ୍ଣକାନ୍ତ ଦାସ ଏବଂ ଅଶୋକ ମିଶ୍ର ସେତେବେଳେ ଖୁବ୍ ନାମ କରିଥିଲେ ।

ଆମ ସମୟରେ ଝିଅପିଲାଙ୍କ ସଂଖ୍ୟା ଖୁବ୍ କମ ଥିଲା । ଝିଅମାନଙ୍କ ଲାଗି ତ ହଷ୍ଟେଲ ନଥିଲା । କାଁ ଭାଁ କେଉଁଠି ମେସ୍ କରି ରହୁଥିଲେ । ଓଡ଼ିଆ ଅନର୍ସରେ ତୁଳସୀ ମିଶ୍ର ନାମ୍ନୀ ଜଣେ ଝିଅ କେବଳ ପଢୁଥିଲା । ଏବେ ସେ କେଉଁଠି ଏକ ସ୍କୁଲରେ ଶିକ୍ଷୟିତ୍ରୀ ଅଛନ୍ତି । ନଟବର ପାଣିଗ୍ରାହୀ, କୁଶଧ୍ୱଜ ପାତ୍ର, ଶ୍ୟାମସୁନ୍ଦର ମଲ୍ଲିକ, ରବୀନ୍ଦ୍ରନାଥ ଜେନା, ମଦନ ପତି, ରଣଜିତ ପତି ପ୍ରମୁଖ ଓଡ଼ିଆ ଅନର୍ସର ଛାତ୍ରବନ୍ଧୁମାନେ ଖୁବ୍ ମେଳାପୀ ଥିଲେ ଏବଂ ବିଭିନ୍ନ ପାଠଚକ୍ରରେ ଆମେ ଅଗ୍ରଣୀ ଭୂମିକା ନେଉଥିଲୁ । 'ଉତ୍ତରାୟଣ' ମଞ୍ଚରେ ସେତେବେଳେ ବାର୍ଷିକ ନାଟକ ହେଉଥିଲା । ଝିଅପିଲାମାନେ ନାଟକରେ ଅଭିନୟ

କରିବାକୁ କୁଣ୍ଠା ପ୍ରକାଶ କରୁଥିଲେ । ଏ ନେଇ ବେଳେବେଳେ ବାହାରୁ ଭଡ଼ାରେ ନାୟିକା ଅଣା ଯାଉଥିଲା । ୧୯୭୨ ମସିହା କଥା । ଅଭିନୟ ପାଇଁ ଝିଅ ନ ମିଳିବାରୁ କୌଣସି ଝିଅ ପାର୍ଟ ନ ଥିବା ଏକ ନାଟକ ଖୋଜାଗଲା । ଯାହ ହେଉ ନାଟକଟିଏ ମିଳିଗଲା । ପୁରୁଷୋତ୍ତମ ଭୂୟାଁଙ୍କ ନାଟକ 'ନାୟିକା ଲାଗି' । ପୁଅ ପିଲାଟିଏ ମାଇଚିଆ ଭୂମିକାରେ ଅଭିନୟ କଲା । ବେଶ୍ ମନୋମୁଗ୍ଧକର ହୋଇଥିଲା ସେ ନାଟକ । ନିଜେ ପୁରୁଷୋତ୍ତମ ବାବୁ ଏହି ନାଟକର ନିର୍ଦ୍ଦେଶନା ଦେଇଥିଲେ । ବିଜୟ ମିଶ୍ରଙ୍କର 'ଶବବାହକମାନେ' ନାଟକ ତା' ପରବର୍ଷ ଅଭିନୀତ ହେଲା । ବେଶ୍ ଚାଞ୍ଚଲ୍ୟ ସୃଷ୍ଟି କରିଥିଲା ଏହି ପରୀକ୍ଷାଧର୍ମୀ ନାଟକଟି । ବହୁ କଷ୍ଟରେ ଝିଅଟିଏ ରାଜି ହୋଇଥିଲା ଏଥିରେ ଅଭିନୟ କରିବା ଲାଗି ।

ସେତେବେଳେ ଆମେ ଅଧ୍ୟାପକମାନଙ୍କୁ ଖୁବ୍ ଭୟ କରୁଥିଲୁ ଏବଂ ଭକ୍ତି ମଧ୍ୟ କରୁଥିଲୁ । କମନ୍ ରୁମ୍‌କୁ ଯାଇ ଦେଖା କରିବା ସାହସ ହେଉ ନଥିଲା । କିନ୍ତୁ ଏବେ ସମୟ ବଦଳି ଯାଇଛି । ଅବାଧରେ ପିଲାଟିଏ କମନ୍ ରୁମ୍‌କୁ ପ୍ରବେଶ କରି ତା'ର ସମସ୍ୟା କହି ପାରୁଛି । ଅଧ୍ୟାପକ ଛାତ୍ରଙ୍କ ମଧ୍ୟରେ ସମ୍ପର୍କ ନିବିଡ଼ ହୋଇଛି ସତ୍ୟ ମାତ୍ର ପୂର୍ବ ମୂଲ୍ୟବୋଧର ଅବନତି ହୋଇଛି ଏକଥା ଅସ୍ୱୀକାର କରି ହେବନି ।

ଆମ ସମୟରେ 'ଷ୍ଟୁଡେଂଟ ଫେଡେରେସନ୍' ଓ 'ଷ୍ଟୁଡେଂଟ ୟୁନିଅନ୍' ଏହି ଦୁଇଟି ଦଳ ମଧ୍ୟରେ ପ୍ରତିଦ୍ୱନ୍ଦ୍ୱିତା ହେଉଥିଲା । ଫେଡେରେସନ୍‌ର ପିଲାମାନେ ଟିକିଏ କମ୍ୟୁନିଷ୍ଟ ମାଇଣ୍ଡେଡ୍ । ଟାଉନ୍ ଅଞ୍ଚଳର ପିଲାମାନେ ୟୁନିଅନ୍‌କୁ ସପୋର୍ଟ କରୁଥିବା ବେଳେ ଗାଁ ଗହଳିରୁ ଆସିଥିବା ପିଲାମାନେ ଫେଡେରେସନ୍‌କୁ ସପୋର୍ଟ କରୁଥିଲେ । ବିଶେଷତଃ ଆମ ପରି ଉତ୍ତର ବାଲେଶ୍ୱର ଅଞ୍ଚଳରୁ ଆସିଥିବା ପିଲାମାନେ ଥିଲୁଁ ପକ୍କା ଫେଡେରେସନ୍‌ର ସମର୍ଥକ । ଲଢ଼େଇ ଖୁବ୍ ଜୋର୍‌ସୋରରେ ହେଉଥିଲା । ଆମ ସମୟରେ ମୁଖ୍ୟତଃ ଫେଡେରେସନ୍‌ର ହିଁ ଜିତାପଟ ହେଉଥିଲା । ଅଧିକାଂଶ ସମୟରେ ବିଭିନ୍ନ ଦାବି ନେଇ ଧର୍ମଘଟ ହେଉଥିଲା ।ଏପରିକି ୧୫/୨୦ ଦିନ ଧରି କ୍ଲାସ ମଧ୍ୟ ବନ୍ଦ ହୋଇ ଯାଉଥିଲା । ସେ ସମୟରେ ଛାତ୍ରନେତା ଏବଂ ଏ ସମୟର ଛାତ୍ରନେତାଙ୍କ ମଧ୍ୟରେ ଆକାଶ ପାତାଳ ପ୍ରଭେଦ ।

ମୋର ପ୍ରିୟ ଶିକ୍ଷାନୁଷ୍ଠାନରେ ୪ ବର୍ଷ ଶିକ୍ଷା ଲାଭ କରିବା ପରେ ଏମ୍.ଏ. ପଢ଼ିବାକୁ ବାଣୀବିହାର ଗଲି । ଜୀବନରେ କେବେ ଭାବି ନଥିଲି ଅଧ୍ୟାପକଟିଏ ହେବି ବୋଲି, ପୁଣି ମୋର ପ୍ରିୟ ଅନୁଷ୍ଠାନରେ । ଆଡହକ୍‌ରେ ପ୍ରଥମେ ସାଲେପୁର କଲେଜରେ ପୋଷ୍ଟିଂ ହୁଏ । ୧୯୮୪ ମସିହା ଓଡ଼ିଶା ଲୋକସେବା ଆୟୋଗ ଦ୍ୱାରା ପରିଚାଳିତ ପରୀକ୍ଷାରେ ଓଡ଼ିଶାରୁ ପ୍ରଥମ ସ୍ଥାନ ଅଧିକାର କରି ଯେତେବେଳେ ମୋର ଏଇ ପ୍ରିୟ ଅନୁଷ୍ଠାନରେ ଯୋଗ ଦେବାର ନିଯୁକ୍ତିପତ୍ର ପାଇଲି ସେଦିନର ଆନନ୍ଦ କହିଲେ ନସରେ । ଅବଶ୍ୟ ସାଲେପୁର ମହାବିଦ୍ୟାଳୟ ଓଡ଼ିଶାର ଏକ ସୁନାମଧନ୍ୟ ଅନୁଷ୍ଠାନ । ଚିତ୍ରୋତ୍ପଳା ନଈ ପଠାରେ ଅବସ୍ଥିତ ଏଇ ମହାବିଦ୍ୟାଳୟର ଚାରିପଟେ ମନଲୋଭା ସୌନ୍ଦର୍ଯ୍ୟ ଏବଂ ଅଧ୍ୟାପକ, ଛାତ୍ରମାଙ୍କର ସୌହାର୍ଦ୍ଦ୍ୟପୂର୍ଣ୍ଣ ବ୍ୟବହାର ମୋ ଭିତରେ କେମିତି ଏକ ମାୟା ସୃଷ୍ଟି କରିଥିଲା । ତଥାପି ନିଜର ପ୍ରିୟ ଅନୁଷ୍ଠାନରେ ଶିକ୍ଷାଦାନ କରିବାର ଲୋଭ ଓ ଘର ପାଖରେ ରହିବାର ଆକର୍ଷଣ ଛାଡ଼ି ପାରିଲିନି । ପାଞ୍ଚ ବର୍ଷର ମାୟାମମତା କାଟି ୧୯୮୪ ମସିହା ଅକ୍ଟୋବର ୩୦ ତାରିଖରେ ବିଦାୟ ନେଲି ସାଲେପୁରରୁ । ଅକ୍ଟୋବର ୩୧ ତାରିଖ । ବଡ଼ି ଭୋରରୁ ଘରୁ ବାହାରି ପଡ଼ିଲି ନିଯୁକ୍ତିପତ୍ର ଧରି । ମନ ଭିତରେ ଉତ୍କଣ୍ଠା । ଅଧ୍ୟକ୍ଷଙ୍କୁ ସାକ୍ଷାତ କଲି । ମୋର ପ୍ରିୟ ଗୁରୁଦେବ ଶ୍ରୀଯୁକ୍ତ ବିକ୍ରମ ଜେନା ଅଧ୍ୟକ୍ଷ ଥାଆନ୍ତି । ଦେଖିଲା ମାତ୍ରେ କହିଲେ 'କୁଆଡ଼େ ଆସିଲ ହରିଶ୍' ! ନିଯୁକ୍ତିପତ୍ର ତାଙ୍କ ହାତକୁ ବଢ଼ାଇଦେଲି । କହିଲେ ଭଲହେଲା ଆସିଗଲ । ସେତେବେଳକୁ ସମୟ ବୋଧହୁଏ ୧୧ଟା ହେବ । ତାପରେ ସମଗ୍ର ଭାରତବର୍ଷ ପାଇଁ ଏକ ଅଶୁଭ ସମ୍ବାଦ ବିଜୁଳି ବେଗରେ ଖେଳିଯାଇଥିଲା । ପ୍ରଧାନମନ୍ତ୍ରୀ ଶ୍ରୀମତୀ ଇନ୍ଦିରା ଗାନ୍ଧୀ ତାଙ୍କ ଦେହରକ୍ଷୀଙ୍କ ଗୁଳିରେ ନିହତ । କିଛି ସମୟ ପରେ କଲେଜ ବନ୍ଦହେଲା । ଏହି ଦିନଟି ମୋ ପାଇଁ ଯେତିକି ଆନନ୍ଦଭରା ଥିଲା ତାଠୁ ବେଶି ଦୁଃଖଦ ଥିଲା, ପ୍ରଧାନମନ୍ତ୍ରୀ ଇନ୍ଦିରା ଗାନ୍ଧୀଙ୍କ ଅକାଳ ତିରୋଧାନ ଯୋଗୁଁ ।

ଚାରିବର୍ଷ ଅଧ୍ୟୟନ କରିଥିବା ମୋ ପ୍ରିୟ ଅନୁଷ୍ଠାନରେ ଦୀର୍ଘ ୧୭ ବର୍ଷ ଅଧ୍ୟାପନା କରିଛି । କେତେ ସ୍ମୃତି ବିସ୍ମୃତିର ତିଳତଣ୍ଡୁଳିତ ମୁହୂର୍ତ୍ତ ବିତି ଯାଇଛି । ଓଡ଼ିଆ ବିଭାଗର ସେମିନାର ଦାୟିତ୍ୱଠାରୁ ଆରମ୍ଭ କରି ପ୍ରଫେସର୍ସ କ୍ଲବର ସମ୍ପାଦକ, ଜାତୀୟ ସେବା ଯୋଜନାର କାର୍ଯ୍ୟନିର୍ବାହୀ ଅଧିକାରୀ ଭାବରେ ଦୀର୍ଘଦିନ କାର୍ଯ୍ୟ ନିର୍ବାହ କରିଛି । ମହାବିଦ୍ୟାଳୟର ସୁବର୍ଣ୍ଣ ଜୟନ୍ତୀ ବର୍ଷ ଷ୍ଟାଫ୍ କାଉନ୍‌ସିଲ ମିଟିଂରେ ଫକୀରମୋହନଙ୍କ ସାହିତ୍ୟକୁ ଆଧାର କରି ଡ୍ରାମାଟିଏ କରାଯିବାର ସିଦ୍ଧାନ୍ତ ନିଆଗଲା । ସ୍କ୍ରିପ୍ଟ କିଏ ଲେଖିବ କଥା ପଡୁପଡୁ ଇଂରାଜୀ ବିଭାଗର ଅଧ୍ୟାପକ ବନ୍ଧୁ ରବିନାରାୟଣ ଦାଶ କହିଲେ ହରିଶ ଲେଖିବ, ଆଉ କିଏ ଲେଖିବ ! ତାଙ୍କ କଥାକୁ ଅନ୍ୟମାନେ ସମର୍ଥନ କଲେ । ଗୁରୁ ଦାୟିତ୍ୱ ମୁଣ୍ଡେଇନେଲି ସତ, କିନ୍ତୁ କେଉଁ ନାଟକ ଲେଖିବି, ଚିନ୍ତାରେ ପଡ଼ିଗଲି । ଯାହାହେଉ କିଛିଦିନ ଭିତରେ ଫକୀରମୋହନଙ୍କ 'ଧୂଳିଆ ବାବା' ଗଳ୍ପକୁ ନାଟ୍ୟରୂପ ଦେଲି । ପୂର୍ବରୁ କେବେ ନାଟକ ଲେଖି ନଥିଲି । କିନ୍ତୁ ନାଟକଟି ଶୁଣି ବନ୍ଧୁମାନେ ପ୍ରଶଂସା କଲେ । ଅଧ୍ୟାପକଙ୍କ ଦ୍ୱାରା ନାଟକଟି ମଞ୍ଚସ୍ଥ ହେଲା । ନିର୍ଦ୍ଦେଶନା ଦେଲେ ବନ୍ଧୁ ପରମାନନ୍ଦ ସାହୁ । ଧୂଳିଆ ବାବା ଭୂମିକାରେ ଅଭିନୟ କଲେ ବନ୍ଧୁ ନଟବର ପାଣିଗ୍ରାହୀ । ମୁଁ ନିଜେ ତିନୋଟି ଭୂମିକାରେ ଅଭିନୟ କରିଥିଲି । ଅବଶ୍ୟ ଛୋଟକାଟିଆ ରୋଲ୍ । ଡେଙ୍ଗୁରାବାଲା, ତାଡ଼ିବାଲା ଓ ଘୋଷକ ଭୂମିକାରେ । ଦର୍ଶକ ଦରବାରର ମତ ଅନୁସରେ ପ୍ରଡକ୍‌ସନ କୁଆଡ଼େ ଖୁବ୍ ସଫଳ ହୋଇଥିଲା । ପ୍ରଫେସର୍ସ କ୍ଲବର ସମ୍ପାଦକ ଭାବରେ କେତେଥର ଅଧ୍ୟାପକଙ୍କ ତରଫରୁ ନାଟକ ମଞ୍ଚସ୍ଥ କରିବାର ଦାୟିତ୍ୱ ନେଇଛି । ଗତବର୍ଷ ସାଂସ୍କୃତିକ ସପ୍ତାହ ପାଳନ ଅବସରରେ ପ୍ରଫେସରର୍ସ କ୍ଲବ ତରଫରୁ ବନ୍ଧୁ ହେମେନ୍ଦ୍ର ମହାପାତ୍ରଙ୍କ ରଚିତ 'ଭୂତ ନୁହେଁ ଅଦ୍ଭୁତ' ନାଟକଟି ଅଭିନୀତ ହୋଇଥିଲା । ଏହାର ମୁଖ୍ୟ ଚରିତ୍ର 'ମଧୁ ମାଷ୍ଟ୍ରେ' ଭୂମିକାରେ ମୁଁ ନିଜେ ଅଭିନୟ କରିଥିଲି । ନାଟକଟି ଦର୍ଶକମାନଙ୍କୁ ବେଶ୍ ଆନନ୍ଦ ଦେଇଥିଲା । ଏହା ବ୍ୟତୀତ ପ୍ରଫେସର୍ସ କ୍ଲବ ଆନୁକୂଲ୍ୟରେ ଅନେକଥର ପ୍ରଜ୍ଞାଚକ୍ର ଓ ପିକ୍‌ନିକ୍‌ର ଆୟୋଜନ କରାଇଛି । ଜାତୀୟ ସେବା ଯୋଜନାର ଅଧିକାରୀ ଭାବରେ ଆନ୍ତଃମହାବିଦ୍ୟାଳୟସ୍ତରୀୟ ସ୍ୱତନ୍ତ୍ର ସେବା ଶିବିର ଏବଂ ମହାବିଦ୍ୟାଳୟସ୍ତରୀୟ ଶିବିରମାନ ଆୟୋଜନ କରାଇ ପୋଷ୍ୟଗ୍ରାମମାନଙ୍କରେ ବୃକ୍ଷରୋପଣ ଠାରୁ ଆରମ୍ଭ କରି ବିଭିନ୍ନ ସେବାମୂଳକ କାର୍ଯ୍ୟ ହାତକୁ ନେଇଛି ଏବଂ ଅନେକାଂଶରେ ସଫଳ ହୋଇଛି । ଫକୀରମୋହନ ବିଶ୍ୱବିଦ୍ୟାଳୟର ଶ୍ରେଷ୍ଠ ପ୍ରୋଗ୍ରାମ ଅଫିସର ଭାବରେ ୨୦୦୨-୨୦୦୩ ମସିହା ପାଇଁ ପୁରସ୍କୃତ ହୋଇଛି । ପ୍ରଫେସର ବିକ୍ରମ ଜେନା, ପ୍ରଫେସର ପ୍ରଫୁଲ୍ଲ କୁମାର ରଥ, ପ୍ରଫେସର ରମେଶ ଚନ୍ଦ୍ର ସାହୁ, ପ୍ରଫେସର କାର୍ତ୍ତିକ ଚନ୍ଦ୍ର ଚାଟାର୍ଜୀ, ପ୍ରଫେସର ଏନ୍.ଦାସବସୁ, ପ୍ରଫେସର ଗୋପାଳ ଘୋଷ, ପ୍ରଫେସର ରାମଚନ୍ଦ୍ର ସାମନ୍ତରାୟ, ପ୍ରଫେସର ତରୁଣ କୁମାର ସିହ୍ନା, ପ୍ରଫେସର ଦେବେନ୍ଦ୍ର ନାଥ ରାଉତ, ଶ୍ରୀମତୀ ଲକ୍ଷ୍ମୀପ୍ରିୟା ମହାନ୍ତି, ଶ୍ରୀଯୁକ୍ତ ସରୋଜ କୁମାର ସିଂହଙ୍କ ପରି ସୁନାମଧନ୍ୟ ଅଧକ୍ଷଙ୍କ ଅଧୀନରେ ଅଧ୍ୟାପନା ଏବଂ ଅତିରିକ୍ତ କାର୍ଯ୍ୟ ସମ୍ପାଦନ କରିବାର ସୁଯୋଗ ପାଇଛି, ଏହା ହିଁ ଭାଗ୍ୟର କଥା ।

୧୯୭୨ ମସିହାରେ ମୋ ପ୍ରିୟ ଅନୁଷ୍ଠାନର 'ରଜତ ଜୟନ୍ତୀ' ପାଳନ ବେଳେ ମୁଁ ଛାତ୍ର ଥିଲି,, ୧୯୯୫ ମସିହାରେ 'ସୁବର୍ଣ୍ଣ ଜୟନ୍ତୀ' ପାଳନ ସମୟରେ ଅଧ୍ୟାପକ ଥିଲି ଏବଂ ଏହାର ହୀରକ ଜୟନ୍ତୀ ପାଳନ ସମୟରେ ମଧ ଅଧ୍ୟାପକ ଥିବି ବୋଲି ଭାବୁଛି । ଏମିତି ସୌଭାଗ୍ୟ କେତେଜଣଙ୍କ ଭାଗ୍ୟରେ ଜୁଟେ । ଦୀର୍ଘ ୨୩ ବର୍ଷ ଧରି ଯେଉଁ ଅନୁଷ୍ଠାନ ସହ ଓତପ୍ରୋତଭାବେ ଜଡ଼ିତ ତା'ର ରୋମାଞ୍ଚକର ସ୍ମୃତିସଜଳ ଦିନଗୁଡ଼ିକର କଥା ଲେଖିଲେ ଏକ ଦୀର୍ଘ ଇତିହାସ ହେବ । ମୋ ପ୍ରିୟ ଅନୁଷ୍ଠାନର ପ୍ରତିଟି ବାଲି ମୋ ପାଇଁ ବଡ଼ଦାଣ୍ଡ ଧୂଳି, ତା'ର ପ୍ରତିଟି ସ୍ମୃତି ମୋର ସନ୍ତାପିତ ପ୍ରାଣରେ ସୁଧା ପ୍ରଦାୟିନୀ ଚନ୍ଦନ ବିଭୂତି ।

• ବରିଷ୍ଠ ଅଧ୍ୟାପକ,
ଫକୀରମୋହନ ମହାବିଦ୍ୟାଳୟ, ବାଲେଶ୍ୱର

# 'ରାଜେନ୍ଦ୍ର'ରୁ 'ଫକୀର'

## ଖଗେଶ୍ୱର ମହାପାତ୍ର

'ଆଜି ଯେ ରାଜେନ୍ଦ୍ରାସନେ କାଲି ସେ ଫକୀର'। ବିଦାୟ ସଭାରେ ଏହି ଉଦ୍ଧୃତି ଦେଇ ମୁଁ ବଲାଙ୍ଗୀର ରାଜେନ୍ଦ୍ର କଲେଜରୁ ବଦଳି ହୋଇ ବାଲେଶ୍ୱର ଫକୀରମୋହନ କଲେଜରେ ୧୯୬୦ ଅଗଷ୍ଟରେ ଯୋଗଦେଲି। ସକାଳ ଓଳି କଲେଜରେ ପଢ଼ାଯାଏ, ତାପରେ ସେଠି ହାଇସ୍କୁଲ ଚାଲେ। ବର୍ଷକ ଭିତରେ ସ୍କୁଲ ନିଜର ନୂଆଘରକୁ ଉଠିଗଲା। ଓଡ଼ିଆ ବିଭାଗରେ ତିନିଜଣ ପ୍ରବୀଣ ଅଧ୍ୟାପକ ଥାଆନ୍ତି। ମତେ ସେମାନେ କନିଷ୍ଠ ଦୃଷ୍ଟିରେ ଦେଖିଲେ। ଅନ୍ୟ ବିଭାଗର ବରିଷ୍ଠ ଓ କନିଷ୍ଠମାନଙ୍କ ସହିତ ଖୁବ୍ ଶୀଘ୍ର ମେଳାପ ହେଲା। ବଡ଼ ମଜାକିଆ ସହାଧ୍ୟାପକମାନେ ଥିଲେ। କମନ୍‌ରୁମ୍ ହସକୌତୁକରେ ଉଚ୍ଛୁଳୁଥିଲା। ଅବଶ୍ୟ ଜଣେ ଦୁଇଜଣଙ୍କୁ ପ୍ରିନ୍‌ସପାଲଙ୍କ ଗୁପ୍ତଚର ବୋଲି ସନ୍ଦେହ କରାଯାଉଥିଲା। ମନେ ହେଉଥିଲା ସେମାନେ ଉପରଠାଉରିଆ ଭାବ କରନ୍ତି। ଏମିତି ସବୁଠି ଥାଆନ୍ତି, ତେଣୁ କେହି ଦୁଃଖ କରୁନଥିଲେ। ଦିବାକର ସାହୁ, ଫକୀରୁଦ୍ଦିନ, ପ୍ରଫୁଲ୍ଲ ପାତ୍ର, ପ୍ରାଣବନ୍ଧୁ ତ୍ରିପାଠୀ, ଗୋପୀନାଥ ମିଶ୍ର, ତରୁଣ ରାୟ, ସିନ୍ଧୁମତୀ ଦେବୀ, ଧୀରେନ ନନ୍ଦ ପ୍ରମୁଖ ସମେତ ଆମର ଏକ ଆଭ୍ୟନ୍ତରୀଣ ଚକ୍ର ଥିଲା।

ଅନ୍ୟପକ୍ଷରେ ଛାତ୍ରମାନେ ଆଜିଭଳି ଏତେ ରାଜନୀତିପ୍ରବଣ ନଥିଲେ। ସବୁ ରକମ ଅଭାବ-ଅସୁବିଧାକୁ କେମିତି ଆପଣେଇ ନେଉଥିଲେ। ଭବିଷ୍ୟତରେ ସେମାନଙ୍କ ମଧ୍ୟରୁ ଅନେକ ପୁଅ-ଝିଅ ବଡ଼ବଡ଼ ପଦବୀ ପାଇଲେ, ସମାଜରେ ସୁପ୍ରତିଷ୍ଠିତ ହେଲେ। କୋଉଠି କେମିତି ଦେଖା ହେଇଯାନ୍ତି- ଭଗବାନ, ଚନ୍ଦ୍ର, ବାସବ, ବିଦ୍ୟୁତ, ପଦ୍ମଲୋଚନ, ତାପସ ଏବଂ ନାମ ମନେ ନପଡୁଥିବା ଅନେକ ଚିହ୍ନା ମୁହଁ ଆଖି ଆଗରେ ଝପସି ଯାଏ। ମନେପଡ଼େ ବାର୍ଷିକ ନାଟ୍ୟାଭିନୟରେ ଝିଅମାନେ ଭୂମିକା ନେବା ଓ ବଙ୍ଗାଳୀ ଝିଅମାନଙ୍କୁ ମୋର ବଙ୍ଗଳା ସାହିତ୍ୟ ପଢ଼େଇବା। ବଙ୍ଗଳାରେ ଅଧ୍ୟାପକ ନଥିଲେ ବି ଝିଅମାନେ ଓଡ଼ିଆ ପରିବର୍ତ୍ତେ ବଙ୍ଗଳା ନେଉଥାନ୍ତି। କଠିନପାଠ୍ୟ-'ସୋନାରତରୀ', 'ମେଘନାଦ ବଧ' ଇତ୍ୟାଦି। ବଙ୍ଗାଳୀପୁଅମାନେ ମତେ ଏହାର ସମାଜତାତ୍ତ୍ୱିକ କାରଣ ଦର୍ଶାଇ କହିଲେ ଯେ କଲିକତା ଆଡ଼େ ବାହାହେବାର ଆକାଂକ୍ଷା ରଖି ଏମାନେ ବଂଗଳା ସାହିତ୍ୟ ପଢୁଛନ୍ତି !

ସେତେବେଳର ବାଲେଶ୍ୱର ଏକ ଛୋଟସହର। ସିନେମାଛକ ଠାରୁ ମୋତିଗଞ୍ଜ ଥାନା ପର୍ଯ୍ୟନ୍ତ ମୁଖ୍ୟ ବଜାର। ଖାନଦାନୀ ଭୋଜି ପାଇଁ ଏକମାତ୍ର ଜାଗା ରେଳବାଇ କାଣ୍ଟିନ୍, ଜଳଖିଆ ପାଇଁ ସିନେମା ପାଖର ଏକ କ୍ୟାଣ୍ଟିନ୍, ଭଲ ଜିନିଷପତ୍ର ପାଇଁ ବାର୍‌ଜରଜି ଷ୍ଟୋର। ଯା'ହେଉ, ନାନାରକମର ଜଣା, ଅଜଣା ବର୍ଗର ମାଛ ପ୍ରଚୁର ମିଳେ। ଚଳଣି ଶସ୍ତା ଥିଲା। ସେତେବେଳର ଦରମା ଦୁଇଶ ପଚାଶ ଟଙ୍କା ଖର୍ଚ୍ଚ ହେଉନଥାଏ। ଆର୍ତ୍ତକବିରାଜଙ୍କର ଗୋଟିଏ ଘର ଭଡ଼ା ନେଇଥାଏ। ବର୍ଷକପରେ ନର୍ଥ-ହଷ୍ଟେଲ ତତ୍ତ୍ୱାବଧାରକ ଭାବରେ ସେଠି ଆସି ରହିଲି। ହଷ୍ଟେଲ ପକ୍ଷରୁ ପର୍ଯ୍ୟଟନ, ବଣଭୋଜି, ନାନାରକମର ପ୍ରତିଯୋଗିତା ଇତ୍ୟାଦି ଏବଂ 'ଆଗନ୍ତୁକ' ନାମରେ ଏକ ପତ୍ରିକା ପ୍ରବର୍ତ୍ତନ କରାଗଲା। ସେହି ପତ୍ରିକାଟି ନର୍ଥ ହଷ୍ଟେଲର ପ୍ରଥମ ପତ୍ରିକାଭାବରେ ସିନେମାଛକରେ ଥିବା କବି ବ୍ରଜନାଥ ରଥଙ୍କ 'ବିଶ୍ୱଶ୍ରୀ ପ୍ରେସ'ରୁ ପ୍ରକାଶ ପାଇଥିଲା। ସେଠି ମୋର ଏକମାତ୍ର ସମସ୍ୟା ଥିଲା ମସୁରଡାଲି ବନାମ ମୁଗଡାଲି ବିବାଦ !

କଲେଜ ବାହାରେ ସାମାଜିକ-ସାଂସ୍କୃତିକ ପରିମଣ୍ଡଳ ବାଲେଶ୍ୱରର ଥିଲା ଏକ ଆକର୍ଷଣ। ଯଦୁନାଥ ଦାଶ ମହାପାତ୍ର ଓ ବ୍ରଜନାଥ ରଥ ପ୍ରମୁଖଙ୍କ ସହିତ ଅନ୍ତରଙ୍ଗ ସଂପର୍କ ଥାଏ। କବିତାଟିଏ

ଲେଖିବା, ସଭା ସମିତିକୁ ନିମନ୍ତ୍ରିତ ହେବା, ସମୁଦ୍ର ଆଡ଼େ ବୁଲିଯିବା ଇତ୍ୟାଦିର ଅବସର ସେମାନେ ସୃଷ୍ଟି କରି ଦେଉଥିଲେ । 'ନିଦ୍ରାବତୀ' ବୋଲି ଗୋଟିଏ ଦ୍ରୁମ ମଲ୍ଲିକାଶପୁରରେ ମୁଁ ପ୍ରଥମେ ଦେଖିଲି ଏବଂ ରୋମାଞ୍ଚିତ ହୋଇଗଲି । ଗଛଟି କ'ଣ ଏବେ ଅଛି ? ସୁନହଟରେ ଗୋଟିଏ ଘରେ ଦଶହରା ଅବସରରେ ବିଜୟା ଭୋଜି ମିଳିଥିଲା । ସେ ଛାତ୍ରୀ ଜଣକ ଏବେ କେଉଁଠି ? ସବୁ ଭଲ ସତ୍ତ୍ୱେ ଗୋଟିଏ ବିଷୟରେ ବାଲେଶ୍ୱର ମତେ ନିରାଶ ଲାଗିଥିଲା । ଦିନେ ଓଡ଼ିଶାର ନବଜାଗରଣର ମୁଖ୍ୟଦ୍ୱାର ଥିଲା ଯେଉଁ ସ୍ଥାନ ଓ ସମାଜ, ଶହେ ବର୍ଷ ମଧ୍ୟରେ କିପରି ସେ ଉନ୍ମାଦନା ଶିଥିଳ ଓ ଶୀତଳ ହୋଇଗଲା ? ମୁଁ ସେଠି ଦେଖୁଥିଲି କେବଳ ଇତିହାସର ସମାଧି ।

ଫକୀରମୋହନ କଲେଜ୍‌ରେ ପୂରା ଦୁଇବର୍ଷ ରହି ୧୯୬୨ ଜୁଲାଇରେ ଶାନ୍ତିନିକେତନରେ ଯୋଗଦେଲି । ଚାକିରୀ ଜୀବନରେ ଏହା ଥିଲା ସଂକ୍ଷିପ୍ତତମ ଅଧ୍ୟାୟ । ତଥାପି ସେଇ ସ୍ମୃତିରେ ମୋର ସତ୍ତା ବିଗ୍ରହାନ୍ୱିତ ହୋଇଛି । ସେଦିନର ବନ୍ଧୁ-ବାନ୍ଧବୀ, ଛାତ୍ରଛାତ୍ରୀଙ୍କୁ ମନେ ପକାଇ ସମୟ-ଅସମୟରେ ପୁଲକିତ ହେଉଛି । ଏମିତି ଦିନ ଗଡ଼ି ଯାଉ । ପୁରାତନ ଛାତ୍ରମାନଙ୍କର କଲେଜର ଉନ୍ନତି ପାଇଁ ରଚନାତ୍ମକ ପ୍ରଚେଷ୍ଟା ଲାଗିରହୁ । କୌଣସି ଅନୁଷ୍ଠାନର ମହତ୍ତ୍ୱ ତାର ପ୍ରସୂତ ବ୍ୟକ୍ତିବିଶେଷଙ୍କ କୃତିତ୍ୱ ଉପରେ ପ୍ରତିଷ୍ଠିତ ହୁଏ । ଫକୀରମୋହନ କଲେଜ କ୍ଷେତ୍ରରେ ତାହାହିଁ କାମ୍ୟ ।

• ଭି.ଆଇ.-ସି ୪/୧,
ୟୁନିଟ-୧, ଭୁବନେଶ୍ୱର

# ସୁନାର ମହାବିଦ୍ୟାଳୟକୁ ହୀରା କରିବାର ସ୍ୱପ୍ନ

ଡକ୍ଟର ଅରୁଣ ରଞ୍ଜନ ମିଶ୍ର

ଫକୀରମୋହନ ସ୍ୱୟଂଶାସିତ ମହାବିଦ୍ୟାଳୟର ଶିକ୍ଷକ ଥାଇ ମୁଁ ନିଜକୁ ଏହାର ଜଣେ ଛାତ୍ର ବୋଲି ମନେକଲେ । ଜଣେ ଶିକ୍ଷକ ଆଜୀବନ ଛାତ୍ର ହୋଇ ରହିଥାନ୍ତି । ତା'ନହେଲେ ସେ ନିଜର ଶିକ୍ଷକତ୍ୱ ହରାଇ ବସନ୍ତି । ଏ ମହାବିଦ୍ୟାଳୟର ହୀରକ ଜୟନ୍ତୀ ଆମମାନଙ୍କ ଉପସ୍ଥିତିରେ ପାଳିତ ହେଉଛି-ଏହା ଏକ ସୌଭାଗ୍ୟର କଥା ।

ତଥାପି ମନେହୁଏ ରାଜ୍ୟବାସୀ ଓ ରାଜ୍ୟ ସରକାର ଏଇ ଅନୁଷ୍ଠାନଟିରୁ ଯେତିକି ପାଇଛନ୍ତି, ତା ତୁଳନାରେ ବିଶେଷ କିଛି ଦେଇ ନାହାନ୍ତି । ପୁରାତନ ଛାତ୍ର ସଂସଦର ସ୍ନେହ ନଥିଲେ ଅନୁଷ୍ଠାନଟି ଆହୁରି ଶ୍ରୀହୀନ ଦିଶୁଥାନ୍ତା । ଓଡ଼ିଶାରେ ଏପରି କୌଣସି ମହାବିଦ୍ୟାଳୟ ନାହିଁ ଯେଉଁଠି ପୁରାତନ ଛାତ୍ର ସଂସଦ ଲକ୍ଷଲକ୍ଷ ଟଙ୍କା ଯୋଗାଡ଼ କରି ନୂତନ ଅଟ୍ଟାଳିକା ନିର୍ମାଣ କରିପାରେ ଏବଂ ରାଜନୈତିକ ଇଚ୍ଛାଶକ୍ତିକୁ ମହାବଦ୍ୟାଳୟର ସ୍ୱାର୍ଥ ଆଡ଼କୁ ଆକର୍ଷିତ କରିବା ପାଇଁ ନିରନ୍ତର ଉଦ୍ୟମ କରିପାରେ । ସମାଜର ଧନୀ ଓ ଶକ୍ତିଶାଳୀ ବ୍ୟକ୍ତିମାନେ ଶିକ୍ଷା ଅନୁଷ୍ଠାନଗୁଡ଼ିକୁ ଆକର୍ଷିତ କରିବା ପାଇଁ ନିରନ୍ତର ଉଦ୍ୟମ କରିପାରନ୍ତି । ସେମାନେ ଶିକ୍ଷା ଅନୁଷ୍ଠାନଗୁଡ଼ିକ ପ୍ରତି ଶ୍ରଦ୍ଧା ରଖିବା ଏକ ଉନ୍ନତ ଭାରତୀୟ ପରମ୍ପରା । ପ୍ରାଚୀନ ଭାରତରେ ଶିକ୍ଷାନୁଷ୍ଠାନମାନଙ୍କୁ ରାଜାଙ୍କ ବ୍ୟତୀତ ସମାଜର ଅନ୍ୟ ବର୍ଗର ଲୋକେ ମଧ୍ୟ ସହାୟତା ଦେଉଥିଲେ । ଗୁରୁକୁଳ ଆଶ୍ରମଗୁଡ଼ିକ ଏହି ଶ୍ରଦ୍ଧାଳୁମାନଙ୍କର ସହାୟତାରେ ଚାଲୁଥିଲା । ବୁଦ୍ଧଦେବଙ୍କ ଦ୍ୱାରା ଅନୁପ୍ରାଣିତ ବହୁ ରାଜା ଓ ଧନୀ ବ୍ୟକ୍ତି ବିହାରମାନ ନିର୍ମାଣ କରି ଶିକ୍ଷା ଓ ସଦାଚାରୀ ଜୀବନକୁ ଏକତ୍ର ରଖିଥିଲେ । ବୁଦ୍ଧଙ୍କ ସମୟରେ ଧନୀ ବ୍ୟବସାୟୀ ଅନାଥପିଣ୍ଡିକା ଜେତବନ ବିହାର ନିର୍ମାଣ କରି ଶିକ୍ଷାର ପ୍ରସାର କରାଇଥିଲେ । ରାଜଗୃହ, ଶ୍ରାବସ୍ତୀ, ବୈଶାଳୀ, କପିଳବସ୍ତୁ ଏ କୌଶାମ୍ବୀ ପରି ସ୍ଥାନରେ ଜନସାଧାରଣଙ୍କ ଧନରେ ବହୁ ବିହାର ଗଠିତ ହୋଇ ଶିକ୍ଷାର ପ୍ରସାର କରା ଯାଇଥିଲା । ରାଜାମାନଙ୍କର ପ୍ରମୁଖ ଅବଦାନ ସହିତ ତକ୍ଷଶିଳା, ନାଳନ୍ଦା, ବଲ୍ଲଭୀ, ବିକ୍ରମଶିଳା ଓ ଦନ୍ତପୁରୀ, ଦାଗଦ୍ଧଳ, ସୋମପୁରୀ, ମିଥିଳା, କାମରୂପ, ନବଦ୍ୱୀପ ଓ କାଶୀ ବିଶ୍ୱବିଦ୍ୟାଳୟଗୁଡ଼ିକ ପ୍ରାଚୀନ ଭାରତର ଧନିକମାନଙ୍କର ସହାୟତାରେ ଗଢ଼ି ଉଠୁଥିଲା । ବିଦେଶରେ ଧର୍ମପ୍ରଚାର କରୁଥିବା ବୌଦ୍ଧସନ୍ନ୍ୟାସୀମାନେ ବହୁ ପ୍ରାଚୀନ ଭାରତୀୟ ବିଶ୍ୱବିଦ୍ୟାଳୟକୁ ସହାୟତା ଦେଉଥିଲେ । ଆଜିକାଲି ଦେଶବିଦେଶରେ ବହୁ କମ୍ପାନୀ ନିଜ ସ୍ୱାର୍ଥପାଇଁ ହେଉପଛେ, ବିଭିନ୍ନ ବିଜ୍ଞାନ ଓ ବୈଷୟିକ ବିଭାଗକୁ ସହାୟତା ଦେଉଛନ୍ତି । ଏ ଦିଗରେ ଫକୀରମୋହନ ମହାବିଦ୍ୟାଳୟ ଚେଷ୍ଟିତ ହେବାକୁ ଆରମ୍ଭ କରିବା ଅତି ଆନନ୍ଦର ବିଷୟ ।

ମହାବିଦ୍ୟାଳୟର ପ୍ରଫେସର କ୍ଲବ ଦ୍ୱାରା ବିଭିନ୍ନ ସମୟରେ ଆୟୋଜିତ ହେଉଥିବା 'ପ୍ରଜ୍ଞାଚକ୍ର'ର ଏକ ବିଶେଷ ସ୍ୱାତନ୍ତ୍ର୍ୟ ରହିଛି । ସମାଜର ବିଶେଷ କୃତିସମ୍ପନ୍ନ ବ୍ୟକ୍ତିମାନେ ମଧ୍ୟ ବହୁ ସମୟରେ ଏଥିରେ ଭାଗ ନିଅନ୍ତି । ଉତ୍ତର-ଓଡ଼ିଶାର ଛାତ୍ର ଓ ଶିକ୍ଷକମାନଙ୍କ ପାଇଁ ଏହି ବହୁ ବୁଦ୍ଧିଦୀପ୍ତ ପ୍ରଜ୍ଞାଚକ୍ର ଏକପ୍ରକାର ତାତ୍ତ୍ୱିକ ଜୀବନୀଶକ୍ତି ପ୍ରଦାନ କରିଥାଏ । ତେଣୁ ଏହା ମହାବିଦ୍ୟାଳୟର ଏକ ଘଟଣା ନହୋଇ ବସ୍ତୁତଃ ଉତ୍ତର ଓଡ଼ିଶାର ଏକ ବୌଦ୍ଧିକ ଅନୁଷ୍ଠାନ ରୂପେ ପରିଚିତି ପାଇଛି ।

ମହାବିଦ୍ୟାଳୟର ଅଣଶିକ୍ଷକ କର୍ମଚାରୀ ବନ୍ଧୁମାନେ ଯେଉଁ ନାଟ୍ୟ ପରିଷଦ ଗଢ଼ିଛନ୍ତି, ତାର ଇତିହାସ ବହୁ ପୁରାତନ । ଏମାନେ ଶିକ୍ଷାବର୍ଷର ଶେଷାଂଶରେ ଏକ ସୁନ୍ଦର ନାଟକକୁ ଅତି ପୋଖତ

ଭଙ୍ଗୀରେ ପରିବେଷଣ କରି ସମସ୍ତଙ୍କୁ ମୁଗ୍ଧ କରିଥାନ୍ତି । କହିବା ବାହୁଲ୍ୟ ଯେ ନାଟକର ନିଶାରେ ସାରା ଅନୁଷ୍ଠାନର ଶିକ୍ଷକ ଓ କର୍ମଚାରୀ ପୁଣି ଥରେ ଏକାକାର ହୋଇଯିବାର ସୁଯୋଗ ଖୋଜିଥାନ୍ତି ।

ଏଠି ପ୍ରତିଟି ଶିକ୍ଷାବର୍ଷ ଶୃଙ୍ଖଳିତ ଶିକ୍ଷାଦାନରେ ସମୃଦ୍ଧ । ବର୍ଷଶେଷରେ ଯୁକ୍ତ ଦୁଇ ଓ ଯୁକ୍ତ ତିନି ଶ୍ରେଣୀଗୁଡ଼ିକର ପରୀକ୍ଷା ଫଳର ଔଜ୍ଜ୍ୱଲ୍ୟରୁ ଅନୁଷ୍ଠାନର ଛାତ୍ର ଓ ଶିକ୍ଷକଙ୍କର ଜ୍ଞାନ ପ୍ରତି ଶ୍ରଦ୍ଧା ଓ ଆନ୍ତରିକତା ପ୍ରମାଣିତ ହୁଏ । ଅନୁଷ୍ଠାନର ପରିସରରେ ରାଜନୀତିର କୌଣସି ପ୍ରଭାବ ଅନୁଭୂତ ହୁଏନାହିଁ । ଛାତ୍ରମାନେ ଆନ୍ଦୋଳନକୁ ସମସ୍ୟାର ସମାଧାନ ବୋଲି ମନେ କରନ୍ତି ନାହିଁ । ଏହି କାରଣରୁ ଓଡ଼ିଶାର ବିଭିନ୍ନ ଜିଲ୍ଲା ଓ ପଡ଼ୋଶୀ ରାଜ୍ୟମାନଙ୍କରୁ ଛାତ୍ରଛାତ୍ରୀମାନେ ଆକର୍ଷିତ ହୋଇ ବାଲେଶ୍ୱର ଆସିଥାନ୍ତି । ବ୍ୟକ୍ତିଗତ ଉଦ୍ୟମରେ ବାଲେଶ୍ୱରରେ ଚାଲିଥିବା ବହୁ ମେସ୍ ଦୂରଦୂରାନ୍ତର ଛାତ୍ରମାନଙ୍କୁ ଅବଧିକ ଆଶ୍ରୟ ଦେଇଥାନ୍ତି । କାରଣ ଅନୁଷ୍ଠାନର ଛାତ୍ରାବାସ ସଂଖ୍ୟା ଓ ଆକାର ସନ୍ତୋଷଜନକ ନୁହେଁ । ଛାତ୍ରୀମାନଙ୍କ ପାଇଁ ଛାତ୍ରାବାସର ସୁବିଧା ଯଥେଷ୍ଟ ଅଧିକ ବଢ଼ାଇବାର ଆବଶ୍ୟକ ରହିଛି । ସାମଗ୍ରିକ ଭାବେ ଶିକ୍ଷାକ୍ଷେତ୍ରରେ ସେମାନଙ୍କ ସଂଖ୍ୟା ଛାତ୍ରମାନଙ୍କଠାରୁ ଅଧିକ ହୋଇଚାଲିଛି ବୋଲି ପ୍ରତିବର୍ଷର ଅନୁଭୂତିରୁ ଜଣାପଡ଼େ ।

୨୦୦୦ ମସିହାରୁ ମହାବିଦ୍ୟାଳୟଟି ସ୍ୱୟଂଶାସିତ ହେବାପରେ ବିଶେଷକରି ଡଃ ଦେବେନ୍ଦ୍ର ନାଥ ରାଉତ ଅଧ୍ୟକ୍ଷ ହୋଇ ଆସିବା ପରେ ଏହାର ଶିକ୍ଷା, ପରୀକ୍ଷା ଓ ଛାତ୍ର ସଂସଦ କ୍ଷେତ୍ରରେ ପରିବର୍ତ୍ତନଗୁଡ଼ିକ ପ୍ରାଞ୍ଜଳ ହୋଇଛି । ନିର୍ବାଚନର ଚିରାଚରିତ ସରଣିକୁ ବନ୍ଦ କରି ତାକୁ ଅଧିକ ପ୍ରତିକାତ୍ମକ ଓ ପ୍ରତିନିଧି-ସମ୍ବଳିତ କରିବାରେ ସେ ଏକ ସାହସିକ ପଦକ୍ଷେପ ନେଇଥିଲେ । ଫଳରେ ଛାତ୍ର ନିର୍ବାଚନକୁ ନେଇ ପ୍ରତିବର୍ଷ ଆଶଙ୍କା କରାଯାଉଥିବା ଆନ୍ଦୋଳନ, ଉତ୍ତେଜନା ରାଜନୈତିକ ହସ୍ତକ୍ଷେପ ଏବଂ ମୂଲ୍ୟବାନ ସମୟନାଶର ପ୍ରବୃତ୍ତି ପ୍ରଶମିତ ହୋଇଛି । ଶିକ୍ଷାର ଏକ ଶାନ୍ତ ପରିବେଶ ଆଡ଼କୁ ମହାବିଦ୍ୟାଳୟ ମୁହାଁଇ ଚାଲିଛି । ଏହା ଅଧିକ ସମ୍ଭବ ହୋଇଛି ପ୍ରବେଶିକା ପରୀକ୍ଷା ମାଧ୍ୟମରେ କେବଳ ପାଠନେଛୁ ଛାତ୍ରମାନଙ୍କୁ ଗ୍ରହଣ କରିବାର ନୂତନ ନିୟମ ଯୋଗୁଁ । ଶିକ୍ଷାର ପ୍ରବେଶିକା ପରୀକ୍ଷାର ପରମ୍ପରା ବହୁ ପୁରାତନ କାଳରୁ ଭାରତରେ ଚଳି ଆସିଚି । ଛନ୍ଦୋଗ୍ୟୋପନିଷତ୍‌ରେ ନାରଦଙ୍କୁ ଶିଷ୍ୟରୂପେ ଗ୍ରହଣ କରିବା ଆଗରୁ ଋଷି ସନତ୍ କୁମାର ତାଙ୍କର ଜ୍ଞାନର ପରିସରକୁ ପ୍ରଥମେ ଜାଣିବାକୁ ଚେଷ୍ଟା କରିଛନ୍ତି । ନଚିକେତାଙ୍କୁ ଆତ୍ମଜ୍ଞାନ ଦେବା ଆଗରୁ ଗୁରୁ ଯମ ତାଙ୍କୁ ବହୁ ପ୍ରଲୋଭନରେ ପକାଇ ପରୀକ୍ଷା କରିଛନ୍ତି (କଠୋପନିଷତ୍) । ନାଳନ୍ଦା ବିଶ୍ୱବିଦ୍ୟାଳୟରେ ପ୍ରବେଶ କରିବା ପୂର୍ବରୁ ଛାତ୍ରମାନଙ୍କୁ ପ୍ରଥମେ ଦ୍ୱାରପାଳର ଯେଉଁ କଠିନ ପ୍ରଶ୍ନମାନଙ୍କର ଉତ୍ତର ଦେବାକୁ ପଡୁଥିଲା, ସେ କଥା ହୁଏନ୍‌ସାଂ ତାଙ୍କ ବିବରଣୀରେ ଲେଖିଛନ୍ତି । ତେଣୁ କର୍ମ-ନିଯୁକ୍ତି ପୂର୍ବରୁ ପ୍ରାର୍ଥୀମାନଙ୍କୁ ସେତେବେଳେ ଯେପରି ବିବିଧ ପରୀକ୍ଷାରେ ସମ୍ମୁଖୀନ ହେବାକୁ ପଡୁଥିଲା (୧୯୯୯ରେ କେନ୍ଦ୍ର ସାହିତ୍ୟ ଏକାଡେମୀ ପ୍ରକାଶିତ ପୁସ୍ତକ 'Kautilya and Social Welfare'ରେ ମୋ ରଚିତ ପ୍ରବନ୍ଧ 'Selction of Officers in Kautilya's Arthas'astra.' ଦ୍ରଷ୍ଟବ୍ୟ) ଜ୍ଞାନଲାଭ ପୂର୍ବରୁ ଛାତ୍ରମାନଙ୍କୁ ମଧ୍ୟ ସେପରି ପରୀକ୍ଷାର ସମ୍ମୁଖୀନ ହେବାକୁ ପଡୁଥିଲା । ଆମେ ଏବେ ସେପରି ପ୍ରବେଶିକା ପରୀକ୍ଷା କରାଇ ଭାରତୀୟ ପରମ୍ପରାକୁ ପ୍ରୟୋଗ କରୁଛେ ।

ତେବେ ହୀରକ ଜୟନ୍ତୀ ପାଳନ ଅବସରରେ ବାଲେଶ୍ୱରର ଛାତ୍ର, ନାଗରିକ, ଶିକ୍ଷକ ଓ ଏ ନେତୃବର୍ଗ ଏହି ଅନୁଷ୍ଠାନ କିପରି ଜାତୀୟ ସ୍ତରରେ ବହୁ ଅନୁଷ୍ଠାନମାନଙ୍କର ସମକକ୍ଷ ହୋଇ ପାରିବ, ସେ ବିଷୟରେ ସାମୂହିକ ଚିନ୍ତନ କରିବା ଆବଶ୍ୟକ । ସାରା ପୃଥିବୀରେ ବର୍ତ୍ତମାନ ଶିକ୍ଷାନୁଷ୍ଠାନଗୁଡ଼ିକରେ ଶିକ୍ଷା ଓ ଗବେଷଣାକୁ ନିକଟତର କରାଯାଉଛି । ପ୍ରତ୍ୟେକ ପାଠ୍ୟ ବିଷୟରେ ପ୍ରଗତି ଅତ୍ୟନ୍ତ ଦ୍ରୁତଗତିରେ ହୋଇ ଚାଲିଛି । ତା' ସହିତ ତାଳମିଳାଇ ଚାଲିବାକୁ ହେଲେ ବିଶେଷକରି ଯେଉଁଠି ପୁରୁଣା ବହିମାନଙ୍କ ସହ ନୂଆ ନୂଆ ପ୍ରକାଶିତ ବହିଗୁଡ଼ିକ ଶୀଘ୍ର ଆସି ଡିସ୍‌ପ୍ଲେ ଥାକରେ ପହଞ୍ଚୁଥିବେ ସେ କ୍ଷେତ୍ରରେ ଶିକ୍ଷକମାନଙ୍କ ପାଇଁ

ଉନ୍ନତ ପାଠାଗାର ଓ ସ୍ୱତନ୍ତ୍ର ବିଭାଗୀୟ କକ୍ଷର ବ୍ୟବସ୍ଥା କରିବାକୁ ହେବ । ପ୍ରତି ବିଷୟର ପ୍ରମୁଖ ଶୋଧ ପ୍ରତିକାଗୁଡ଼ିକ ନିୟମିତ ପାଠାଗାରକୁ ଆସିବା ଦରକାର । ଶିକ୍ଷକମାନେ ଗବେଷଣା କରୁଥିବା କ୍ଷେତ୍ରରେ ପୁସ୍ତକଗୁଡ଼ିକ କିପରି ତୁରନ୍ତ ମଗାଯାଇ ପାରିବ, ତାର ସ୍ୱତନ୍ତ୍ର ବ୍ୟବସ୍ଥା ହେବା ଆବଶ୍ୟକ । ପଠନର ଅଭ୍ୟାସକୁ ପ୍ରଚୋଦିକ କରିବା ପାଇଁ ପାଠାଗାରର ଆକାର ଓ ବ୍ୟକ୍ତିତ୍ୱରେ ବ୍ୟାପକ ପରିବର୍ତ୍ତନ ହେବା ବାଞ୍ଛନୀୟ । ୟୁ.ଜି.ସି. ସବୁବେଳେ ଚାହିଁ ଆସିଛି ଯେ ଶିକ୍ଷକମାନେ ଅଧିକରୁ ଅଧିକ ସମୟ କଲେଜରେ ରହନ୍ତୁ । ଏଥିପାଇଁ ପାଠାଗାରର ଶକ୍ତି ଓ ଆକାର ଯେ ବ୍ୟାପକ ହେବା ଆବଶ୍ୟକ ତାହା ସହଜରେ ଅନୁମେୟ । ବର୍ତ୍ତମାନ ୟୁ.ଜି.ସି.ର ଚେୟାରମ୍ୟାନ୍ ପ୍ରଫେସର ଅରୁଣ ନିଗବେକର୍ । ଏକଦା ସେ ପଢ଼ିଥିବା ଓ ପଢ଼ାଇଥିବା ଶିକ୍ଷାନୁଷ୍ଠାନଟି ହେଉଛି ପୁଣେ ବିଶ୍ୱବିଦ୍ୟଳୟ । ଅନ୍ୟମାନଙ୍କ ପରି ସେ ମଧ ବିଶ୍ୱବିଦ୍ୟାଳୟ ପରିସରରେ ରହୁଥିଲେ । ବିଜ୍ଞାନ ବିଭାଗର ଛାତ୍ର ଓ ଶିକ୍ଷକମାନେ ପାଠାଗାର ଓ ପ୍ରୟୋଗଶାଳାକୁ କିପରି ବ୍ୟବହାର କରନ୍ତି, ସେଠି ଥାଇ ମୁଁ ଦେଖିଛି । ରାତି ଦୁଇଟା ଯାଏ ପ୍ରୟୋଗଶାଳା ଖୋଲାଥାଏ । ଛାତ୍ର ଓ ଶିକ୍ଷକମାନେ କାମ କରୁଥାନ୍ତି । ଆମେ ପଢୁଥିବା ସମୟରେ ପ୍ରଫେସର ଭି.ଜି. ଭିଡ଼େ ଥାନ୍ତି କୁଳପତି । ସେ ନିଜେ ବଳମ୍ବିତ ରାତ୍ରି ପର୍ଯ୍ୟନ୍ତ ଛାତ୍ରମାନଙ୍କ ସହ ପ୍ରୟୋଗଶାଳାରେ ଗବେଷଣାରତ ରହୁଥିବା ମୁଁ ଦେଖିଛି । ପାଠାଗାର ପ୍ରତି ଟର୍ମ ପରୀକ୍ଷା ବେଳକୁ ରାତି ଏଗାରଟା ଯାଏ ଖୋଲା ରହେ । ଶହଶହ ଛାତ୍ର ନିଶାର୍ଦ୍ଧରେ ହଷ୍ଟେଲ ଫେରନ୍ତି । ଅନ୍ୟ ପକ୍ଷରେ ସେତେବେଳେ କଳା ବିଭାଗର ପାର୍ଶ୍ୱଦ୍ୱାର ଗୁଡ଼ିକ ମଧ ଗବେଷକମାନଙ୍କ ଇଚ୍ଛା ଅନୁସାରେ ଡେରି ରାତିଯାଏ ଖୋଲା ରହୁଥିଲା ।

ଗବେଷଣା ସାକଶ ଏପରି ଏକ ଉଚ୍ଚ ଆଗ୍ରହ ସୃଷ୍ଟି ପାଇଁ ପ୍ରତ୍ୟେକ ସ୍ୱୟଂଶାସିତ ମହାବିଦ୍ୟାଳୟ ସମର୍ଥ ହୋଇ ପାରିବ । ଏଥିପାଇଁ ସ୍ୱତଃ ପ୍ରେରଣା ଓ ପରତଃ ପ୍ରେରଣା ଆବଶ୍ୟକ । ଏପରିକି ପାଠାଗାରରେ ଅଧିକ ସମୟ କଟାଉଥିବା ଏବଂ ପାଠାଗାରରୁ ନିୟମିତ ବହି ନେଇ ବ୍ୟବହାର ପରେ ଫେରାଉଥିବା ଶିକ୍ଷକ ଓ ଛାତ୍ରମାନଙ୍କୁ ଅଧକ୍ଷ ବେଳେବେଳେ ପ୍ରଶଂସାପତ୍ର ପଠାଇଲେ ଭାରି ସୁନ୍ଦର ହୁଅନ୍ତା । ଏହା ଫଳରେ ନୂତନ ଶୋଧ ଓ ପଠନ ପ୍ରସୂତ ଜ୍ଞାନ ଶ୍ରେଣୀଗୃହଗୁଡ଼ିକୁ ପ୍ରବେଶ କରି ପାରିବ । ନହେଲେ ଆମେ ଛାତ୍ର ଥିବାବେଳେ ଯେତିକି ପଢ଼ିଥିଲେ, ସେତିକି ମାତ୍ରକୁ ଆମ ପିଲାଙ୍କୁ ପଢ଼ାଇ ଛାଡ଼ିଦେବା ଏବଂ ସେମାନେ ଦୁନିଆର ଦୌଡ଼ରେ ପଛରେ ପଡ଼ିଯାଇ ଆମକୁ ଦୋଷ ଦେବେ । ଶିକ୍ଷକମାନଙ୍କୁ ଅଧିକ ସୃଷ୍ଟିଶୀଳ କରିବାର ଅନ୍ୟ ଏକ ଉପାୟ ହେଉଛି, ବର୍ଷଶେଷରେ ସେମାନେ ଯାହାଯାହା ରଚନା କଲେ ତାର ଏକ ବିବରଣୀ ପୁସ୍ତିକା ପ୍ରକାଶନ । ଏହା ମୁଖପତ୍ରର ଏକ ଅଂଶ ରୂପେ ମଧ ବାହାରିପାରେ । ଏଥିରେ ପୁରାତନ ଛାତ୍ରମାନେ ଦେଶବିଦେଶରେ କଣ ସବୁ ସୁନ୍ଦର କାର୍ଯ୍ୟ କରୁଛନ୍ତି ତାର ପ୍ରତିଫଳନ ରହି ପାରିବ ଏବଂ ବର୍ତ୍ତମାନର ଛାତ୍ରମାନଙ୍କ କୃତିତ୍ୱ ମଧ ସ୍ଥାନ ପାଇ ପାରିବ । ଇଣ୍ଟରନାଲ୍ ପରୀକ୍ଷାରେ ସର୍ବାଧିକ ନମ୍ବର ହାସଲ କରିଥିବା ପିଲାଙ୍କ ନାମ ମଧ ଏଥିରେ ଉଲ୍ଲିଖିତ ରହିପାରିବ । ଏହି ପରୀକ୍ଷାକୁ ଶିକ୍ଷକମାନଙ୍କ ଦାୟିତ୍ୱରେ ଶ୍ରେଣୀ ପରୀକ୍ଷା ରୂପେ ଛାଡ଼ିଦେଲେ ବହୁ ସମୟ ଓ ଅର୍ଥ ସଞ୍ଚିତ ହୋଇ ପାରିବ । ଅଶୀ ପ୍ରତିଶତ ଉପସ୍ଥାନରେ ଥିବା ଛାତ୍ରମାନେ ଶିକ୍ଷକମାନଙ୍କର ଦକ୍ଷତା ସମ୍ପର୍କିତ ପ୍ରଶ୍ନାବଳୀର ଉତ୍ତର ଦେଇ ଅଧକ୍ଷଙ୍କୁ ଦେଲେ ଅଧାପନାର ଗୁଣବତ୍ତା ଓ ନିୟମିତତାରେ ମଧ ଉନ୍ନତି ଘଟିବାର ସମ୍ଭାବନା ଅଛି । ବହୁ ସମୟରେ ଛୁଟୀରେ ଥିବା ଅଧାପକଙ୍କ ଶ୍ରେଣୀରେ ପିଲାମାନେ ବସି ପାଟିତୁଣ୍ଡ କରନ୍ତି ଏବଂ ଏହା ଆଖପାଖ ଶ୍ରେଣୀର ପଠନ-ପାଠନରେ ବିଘ୍ନ ଘଟାଏ । ଛାତ୍ରମାନେ ଅନୁପସ୍ଥିତ ଶିକ୍ଷକମାନଙ୍କର ଅନୁପସ୍ଥିତ ବିଜ୍ଞାପନ 'Non-enganement' ବୋର୍ଡ଼ରୁ ପଢ଼ି ପାରିଲେ ଏପରି ବିଘ୍ନ ଘଟନ୍ତା ନାହିଁ । ଏପରି ଏକ ବୋର୍ଡ଼ର ପ୍ରଚନଳନ ସମସ୍ତଙ୍କ ପାଇଁ ଲାଭଦାୟକ ହୋଇ ଥାଏ ।

ଆମେ ଜାଣୁ ଯେ ମହାବିଦ୍ୟାଳୟର ଶିକ୍ଷକମାନେ ବ୍ୟକ୍ତିଗତ ସ୍ତରରେ ଚେଷ୍ଟା କରି କିଛି Ph.D.

ଛାତ୍ରଙ୍କୁ ଦିଗ୍‌ଦର୍ଶନ ଦେଇଥାନ୍ତି । ଏକ ସ୍ୱୟଂଶାସିତ ମହାବିଦ୍ୟାଳୟରେ ଏଥିପାଇଁ ସ୍ୱତନ୍ତ୍ର ପ୍ରୋତ୍ସାହନ ମିଳିବା ଉଚିତ । କାରଣ ଏପରି ମହାବିଦ୍ୟାଳୟ ଗୁଡ଼ିକୁ ଯେଉଁ ଏକାଡେମିକ୍ ସ୍ୱାଧୀନତା ଦିଆ ଯାଇଛି, ତାହା ଜ୍ଞାନ-ତପସ୍ୟା ଓ ଶିକ୍ଷାକୁ ବଢ଼ାଇବା ପାଇଁ ଦିଅ ଯାଇଛି । ସ୍ୱୟଂଶାସିତ ମହାବିଦ୍ୟାଳୟର ମାନ୍ୟତା ପାଇବା ପରେ ମଧ ଯଦି ଶିକ୍ଷା ଓ ଗବେଷଣାର ଗୁଣ ଓ ପରିମାଣରେ ସକାରାତ୍ମକ ପରିବର୍ତ୍ତନ ନହୁଏ ଏବଂ କେବଳ ଆଡ୍‌ମିଶନ୍, ପରୀକ୍ଷା, ଖାତାଦେଖା ଓ ଉତ୍ସବଗୁଡ଼ିକ ପାଇଁ ଆମେ ଅଧିକ ସମୟ ଦେବାକୁ ବାଧ ହେଉ, ତେବେ ଆମେ ଏକ ମହାର୍ଘ ସୁଯୋଗକୁ ହାତଛଡ଼ା କରୁଛେ ବୋଲି ବୁଝିବାକୁ ହେବ ।

ଫକୀରମୋହନ ମହାବିଦ୍ୟାଳୟରେ ଛାତ୍ରସଂଖ୍ୟା କିଛି କମ୍ ନୁହେଁ । ଏହା ସହର ମଝିରେ ଥିଲେ ମଧ ଅନ୍ତତଃ ଦୁଇପଟେ ରାସ୍ତା ସେପାଖରେ ଏହାର ଯାଗା ଥିବାରୁ ଆମେ ଅନେକ କିଛି କରିବାର ସ୍ୱପ୍ନ ଦେଖି ପାରିବା । ପାଖରେ ବହୁ ଐତିହାସିକ, ଧାର୍ମିକ ଓ ପର୍ଯ୍ୟଟନ ସମ୍ପର୍କିତ କ୍ଷେତ୍ର ସହ ସମୁଦ୍ର ମଧ ଥିବାରୁ ମହାବିଦ୍ୟାଳୟର ପାଠ୍ୟକ୍ରମରେ ତଦନୁରୂପ ବିଷୟ ଗ୍ରହଣ କରିବା କ୍ରମଶଃ ଅବଶ୍ୟମ୍ଭାବୀ ହୋଇ ପଡ଼ିବ । ତାତ୍ତ୍ୱିକ ବିଷୟମାନଙ୍କର ପଠନ୍-ପାଠନ ସହିତ ଆମକୁ ଜୀବନ ଓ ଜୀବିକା ସହିତ ଘନିଷ୍ଠତା ରକ୍ଷା କରୁଥିବା ବିଷୟମାନଙ୍କୁ ମଧ ପାଠ୍ୟକ୍ରମର ଅନ୍ତର୍ଭୁକ୍ତ କରିବାକୁ ହେବ । ଛାତ୍ରମାନଙ୍କର ଆଗ୍ରହ ଓ ଭବିଷ୍ୟତ ଉଭୟକୁ ମଣ୍ଡିତ କରିପାରୁଥିବା ବିଷୟମାନଙ୍କୁ ଆମକୁ ପଢ଼ାଇବାକୁ ପଡ଼ିବ । ତାହାହେଲେ ଯେ କୌଣସି ଛାତ୍ର ଭିତରେ ଶୋଇ ରହିଥିବା ପ୍ରତିବା ଚେଇଁ ଉଠିବ । ବୈଦିକ ଯୁଗରେ ପ୍ରସିଦ୍ଧ ଋଷି ସତ୍ୟକାମ ଜାବାଳ ଋଷି ବ୍ୟାଘ୍ରପଦଙ୍କ ପୁତ୍ର ଗୋଶ୍ରୁତିଙ୍କୁ ପ୍ରାଣବିଦ୍ୟା ପଢ଼ାଇ ସାରି କହିଲେ-ଏହା ଏପରି ଏକ ବିଦ୍ୟା ଯାହା ଏକ ଶୁଖିଲା ଖୁଣ୍ଟକୁ ପଢ଼ାଇଲେ ସେଥିରେ ମଧ ଶାଖା-ପତ୍ର ବାହାରି ଆସିବ : ''ଯଦ୍ୟପ୍ୟେନଂ ଶୁଷ୍କାୟ ସ୍ଥାଣବେ ବ୍ରୂୟାତ୍, ଜାୟେରେନ୍ ଏବଂ ଅସ୍ମିନ୍ ଶାଖାଃ, ପ୍ରରୋହେୟୁଃ ପଲାଶାନି ଇତି ।'' (ଛାନ୍ଦୋଗ୍ୟୋପନିଷତ୍, ୫/୨/୩) । ଆମକୁ ଛାତ୍ରମାନଙ୍କୁ ଖୋଜି କାଢ଼ିବାକୁ ହେବ । ଦିନେ ଅନୁଭବ ହେବ ଯେ ପ୍ରତ୍ୟେକ ସ୍ୱୟଂଶାଶିତ ମହାବିଦ୍ୟାଳୟ ଗୋଟିଏ ଗୋଟିଏ କ୍ଷୁଦ୍ର ବିଶବିଦ୍ୟାଳୟ ଏବଂ ଏହି କ୍ଷୁଦ୍ରତା ହିଁ ଏଗୁଡ଼ିକୁ ବହୁ ଚମତ୍କାରିତା ଆଣି ଦେଇଛି । ଏଥିପାଇଁ ଆମ ମହାବିଦ୍ୟାଳୟ ଯେ ଅନେକାଂଶରେ ଯୋଗ୍ୟ ଏଥିରେ ସନ୍ଦେହ ନାହିଁ ।

• ବରିଷ୍ଠ ଅଧାପକ, ସଂସ୍କୃତ ବିଭାଗ,
ଫକୀରମୋହନ ସ୍ୱୟଂଶାସିତ ମହାବିଦ୍ୟାଳୟ
ବାଲେଶ୍ୱର

# ଗୁରୁମାନେ

## ଡ. ଲକ୍ଷ୍ମୀକାନ୍ତ ତ୍ରିପାଠୀ

ମୋର ପ୍ରିୟବନ୍ଧୁ କଇଳାଶ ପଟ୍ଟନାୟକ ଓ ମୁଁ କିଛି ଗୋଟେ କରିବାର ନିଶାରେ ସବୁବେଳେ ମସଗୁଲ ହୋଇଥାଉ । ଛୁଟିଦିନ ବି ବେଳେବେଳେ କଲେଜ ଭିତରେ ବୁଲିବାର ଆମକୁ ଆନନ୍ଦ ମିଳିଥାଏ । ଛୁଟିଦିନଟିଏରେ କଲେଜ ଅଫିସ ଖୋଲାଥିବାର ଦେଖି କ'ଣ ହେଉଛି ବୋଲି ଆମେ ଦୁଇଜଣ ଅଫିସ ଭିତରକୁ ପଶିଗଲୁ । ସେଠାରେ ବୁଝିଲୁ ଇଂରାଜୀରେ ଗୋଟିଏ ପ୍ରବନ୍ଧ ପ୍ରତିଯୋଗିତା ହେବାର ଅଛି । ବିଷୟବସ୍ତୁ ହେଲା 'ଫିଫଥ୍ ଫାଇଭ୍ ଇଅର ପ୍ଲାନ' ବା 'ପଞ୍ଚମ ପଞ୍ଚ ବାର୍ଷିକ ଯୋଜନା' । ଯେଉଁ ଅଧ୍ୟାପକ ଜଣକ ପ୍ରତିଯୋଗିତା କରାଇବା ପାଇଁ ସେଠାରେ ଉପସ୍ଥିତ ଥିଲେ ଆମେ ବିନମ୍ର ସହକାରେ ତାଙ୍କୁ ପଚାରିଲୁ -ମହାଶୟ, ପଞ୍ଚମ ପଞ୍ଚବାର୍ଷିକ ଯୋଜନାର ମାନେ କ'ଣ ? ମହାଶୟ ବୁଝାଇଦେଇ କହିଲେ ଯେ ଏହି ଯେଜନା ସଂପର୍କରେ ଅର୍ଥଶାସ୍ତ୍ରରେ ଅଧ୍ୟୟନ କରାଯାଇଥାଏ । ଆଉ ଟିକିଏ ସ୍ପଷ୍ଟଭାବରେ କହିଲେ -ଦେଶର ଅଗ୍ରଗତି ପାଇଁ ପାଞ୍ଚବର୍ଷକୁ ଥରେ ଲେଖାଏଁ ଗୋଟିଏ ଗୋଟିଏ ଯୋଜନା ପ୍ରଣୟନ କରାଯାଇଥାଏ । ପଞ୍ଚମ ଥର ପାଇଁ ସେହିପରି ଏକ ଯୋଜନା ପ୍ରସ୍ତୁତ କରାଯାଇଥିବାରୁ ଯୋଜନାଟିର ନାମ ପଞ୍ଚମ ପଞ୍ଚବାର୍ଷିକ ଯୋଜନା ।

ମହାଶୟଙ୍କର କଥା ମଧ୍ୟରୁ ଆମେ ଦୁଇଜଣ ପ୍ରବନ୍ଧର ବିଷୟବସ୍ତୁ ପାଇଗଲୁ । ସେ ପର୍ଯ୍ୟନ୍ତ ଆମେ ଅର୍ଥଶାସ୍ତ୍ର କେବେହେଲେ ଅଧ୍ୟୟନ କରି ନଥିଲୁ । ଅର୍ଥଶାସ୍ତ୍ର ଯିଏ ଅଧ୍ୟୟନ ନ କରିଛି ସେ ଯେ ତତ୍ ସଂପର୍କିତ କୌଣସି ପ୍ରଶ୍ନର ଉତ୍ତର ଦେଇ ନପାରିବ ଏପରି କଥାକୁ ଆମେ ବିଶ୍ୱାସ କରୁ ନଥିଲୁ । ବରଂ ଇଂରାଜୀ ଭାଷାରେ ଆମର ଦକ୍ଷତା ନଥିବା ଯୋଗୁଁ ଇଂରାଜୀ ଭାଷାରେ କିପରି ଏତେବଡ଼ ପ୍ରବନ୍ଧଟିଏ ରଚନା କରିବା ସେହି ଚିନ୍ତାରେ କିଛିକ୍ଷଣ ମୌନ ରହିଥିଲୁ । ସାମାନ୍ୟ ସମୟ ଚିନ୍ତା କରିବା ପରେ ଆମେ ସିଦ୍ଧାନ୍ତରେ ଉପନୀତ ହୋଇଗଲୁ ଯେ ଆମକୁ ଏହି ପ୍ରବନ୍ଧ ପ୍ରତିଯୋଗିତାରେ ଅଂଶଗ୍ରହଣ କରିବାକୁ ହିଁ ପଡ଼ିବ । ପ୍ରତିଯୋଗିତାରେ ଭାଗନେବା ପାଇଁ ଅନ୍ୟ କୌଣସି ପ୍ରତିଯୋଗୀ ଆସିଲେ ନାହିଁ । ତେଣୁ ପ୍ରବନ୍ଧ ପ୍ରତିଯୋଗିତାରେ ଆମେ ଦୁଇଜଣ ହିଁ କେବଳ ଭାଗନେଲୁ । ପଞ୍ଚମ ପଞ୍ଚବାର୍ଷିକ ଯୋଜନା ସଂପର୍କରେ ଇଂରାଜୀ ଭାଷାରେ ଦୁଇଘଣ୍ଟା ଧରି ଅନର୍ଗଳ ପ୍ରବନ୍ଧ ଲେଖି ଚାଲିଲୁ । ମୁଁ ସାତ ପୃଷ୍ଠାର ପ୍ରବନ୍ଧ ରଚନା କରିଥିଲି । କଇଳାଶ କେତେପୃଷ୍ଠାର ପ୍ରବନ୍ଧ ଲେଖିଥିଲେ ମୋର ଏବେକୁ ଠିକ୍ ଭାବରେ ମନେ ନଥିଲେ ମଧ୍ୟ ଆମ ଭିତରେ ଜଣେ ପ୍ରଥମ ଓ ଅନ୍ୟ ଜଣେ ଦ୍ୱିତୀୟ ହେବ ବୋଲି ବେଶ୍ ଗର୍ବ କରି ଏକଥା ସର୍ବତ୍ର ପ୍ରଚାର କରିଦେଲୁ । ସାଙ୍ଗସାଥୀ ବନ୍ଧୁବାନ୍ଧବ ସବୁଆଡ଼େ ଆମର ଗୌରବ ଡିଣ୍ଡିମ ନିଜେ ନିଜେ ବଜାଇବାରେ ଲାଗିଲୁ ।

ମଝିରେ ମଝିରେ ଅର୍ଥଶାସ୍ତ୍ର ବିଭାଗକୁ ଯାଇ ପଚାରୁଥିଲୁ ଯେ ଆମ ଦୁଇଜଣଙ୍କ ମଧ୍ୟରୁ ପ୍ରଥମ କିଏ ହେଲା ? ବିଭାଗ ପକ୍ଷରୁ କୌଣସି ଉତ୍ତର ଆମକୁ ଦିଆଯାଉ ନଥିଲେ ମଧ୍ୟ ଆମେ ବାରମ୍ବାର ସେହି ପ୍ରଶ୍ନକୁ ପଚାରୁଥିଲୁ । ଶେଷରେ ଆମ ଆଗ୍ରହର ପରିପୂର୍ତ୍ତି ଘଟାଇ ଫଳାଫଳ ନୋଟିସ ବୋର୍ଡ଼ରେ ପ୍ରକାଶ ପାଇଗଲା । ନୋଟିସ ବୋର୍ଡ଼ରେ ଏଇୟା ଲେଖା ହୋଇଥିଲା ଯେ ପ୍ରବନ୍ଧ ପ୍ରତିଯୋଗିତାରେ ଜଣେ ହେଲ ଯୋଗ୍ୟଛାତ୍ର ଅଂଶଗ୍ରହଣ କରିନଥିବାରୁ ଏହି ପ୍ରତିଯୋଗିତାକୁ ବାତିଲ କରି ଦିଆଗଲା ।

ଆମର ଯୋଗ୍ୟତା ନଥିବା କଥାଟା ଆମକୁ ଖୁବ୍ ବାଧିଥିଲା । ଆଉ କୌଣସି ପ୍ରବନ୍ଧ

ପ୍ରତିଯୋଗିତା ହେଲେ ଆମେ ଆମର ଯୋଗ୍ୟତା ପ୍ରମାଣ କରିବାକୁ ପ୍ରସ୍ତୁତ ହୋଇ ରହିଥିଲୁ । ମାତ୍ର ଦୁଃଖର କଥା ଆମର ପ୍ରସ୍ତୁତିଟା ପ୍ରସ୍ତୁତିରେ ରହିଯାଇଥିଲା । ମହା ବିଦ୍ୟାଳୟରୁ ବିଦାୟ ନେଇ ଆସିବା ପର୍ଯ୍ୟନ୍ତ ଆଉ କୌଣସି ପ୍ରତିଯୋଗିତାର ସମ୍ମୁଖୀନ ହେବାପାଇଁ ସୁଯୋଗ ବି ମିଳି ନଥିଲା । ବରଂ ଆମେ ସାହିତ୍ୟସେବାରେ ନିଜକୁ ନିୟୋଜିତ କରିଦେଇଥିଲୁ । ସାହିତ୍ୟ ସେବା କରିବାରେ ଓଡ଼ିଆ ଓ ଦର୍ଶନ ବିଭାଗର ଅଧ୍ୟାପକ ଓ ଅଧ୍ୟାପିକାମାନେ ଆମକୁ ବିଶେଷ ଉତ୍ସାହ ପ୍ରଦାନ କରୁଥିଲେ ।

କଲେଜରେ ଉପାଧ୍ୟକ୍ଷ ଓ ପରୀକ୍ଷା ବିଭାଗର ନିୟନ୍ତ୍ରକ ଥିଲେ ଶ୍ରୀଯୁକ୍ତ ବିକ୍ରମ ଜେନା । ପରୀକ୍ଷା କାର୍ଯ୍ୟରେ ଅଧିକ ସମୟ ସେ ନିଜକୁ ନିୟୋଜିତ କରୁଥିବା ଯୋଗୁଁ ତାଙ୍କ ନିକଟରୁ ପାଠ ପଢ଼ିବାର ସୁଯୋଗ ସମସ୍ତଙ୍କ ଭାଗ୍ୟରେ ଜୁଟେ ନାହିଁ । ଆମର ସୌଭାଗ୍ୟକୁ ସପ୍ତାହରେ ଗୋଟିଏ ପିରିଅଡ୍ ଶ୍ରୀଯୁକ୍ତ ଜେନାଙ୍କର ପଢ଼ାଇବା ପାଇଁ ଉଦ୍ଦିଷ୍ଟ ଥିଲା । ଆମେ ଅନୁରୋଧ କରି ତାଙ୍କୁ ଡାକି ଆଣୁଥିଲୁ ପଢ଼ାଇବା ପାଇଁ । ତାଙ୍କ ଅଧ୍ୟାପନାର ବିଷୟବସ୍ତୁ କ'ଣ ହେବା ଉଚିତ ସେଥିପାଇଁ ଆମର ଚିନ୍ତା ନଥିଲା । ଶ୍ରେଣୀଗୃହରେ ଏତେ କୌତୁକିଆ କଥା କହି ସେ ପଢ଼ାଉଥିଲେ ଯେ ଅନ୍ୟ ଶ୍ରେଣୀର ଛାତ୍ରମାନେ ବାହାରେ ଠିଆହୋଇ ତାଙ୍କ କଥାକୁ ଶୁଣୁଥିଲେ । ରାଧାନାଥ ସାହିତ୍ୟରେ ଶ୍ରୀଯୁକ୍ତ ଜେନାଙ୍କର ଅଗାଧ ପାଣ୍ଡିତ୍ୟ । ରାଧାନାଥଙ୍କର ଅନେକ ସୃଷ୍ଟି ତାଙ୍କର କଣ୍ଠସ୍ଥ । ଭଂଜ ସାହିତ୍ୟର ଅନେକ ଅର୍ଥ ହୋଇପାରେ ବୋଲି ଆମେ ଜାଣିଥିଲୁ । ରାଧାନାଥଙ୍କ କବିତାର ଯେ ଅନେକ ଅର୍ଥ ହୋଇପାରେ ଅଧ୍ୟାପକ ଜେନାଙ୍କଠାରୁ ହିଁ ଆମେ ପ୍ରଥମେ ସେ କଥା ଜାଣିଲୁ ।

ସାର୍‌ଙ୍କର ଚେହେରା ଥିଲା ଅତ୍ୟନ୍ତ ପତଳା । ଜୋରରେ ପବନ ବୋହିଲେ ସେ ଉଡ଼ି ଯିବାର ଭୟ ମଧ୍ୟ ଆମ ନିକଟରେ ରହୁଥିଲା । ଏସବୁ ସତ୍ତ୍ୱେ ବି ଆପଣଙ୍କର ନାଁ କାହିଁକି ବିକ୍ରମ ହେଲା ବୋଲି ଆମେ ଶ୍ରେଣୀଗୃହରେ ଥରେ ତାଙ୍କୁ ପ୍ରଶ୍ନ କରିଥିଲୁ । ବୈକ୍ରମ୍ୟ ଶରୀର ସ୍ଥୂଳତାରୁ ଜଣା ପଡ଼େନାହିଁ, ଜଣାପଡ଼େ ମାନସିକ ଦୃଢ଼ତାରୁ ବୋଲି ସେ ଆମ ପ୍ରଶ୍ନର ଉତ୍ତର ଦେଇଥିଲେ ।

ପରବର୍ତ୍ତୀ ସମୟରେ ଆମେ ମହାବିଦ୍ୟାଳୟ ପରିତ୍ୟାଗ କରବାପରେ ଯେତେବେଳେ ସାର୍ ଅଧ୍ୟକ୍ଷ ଦାୟିତ୍ୱ ଗ୍ରହଣ କଲେ ସେତେବେଳେ ଆମେ ତାଙ୍କର ପ୍ରକୃତ ବିକ୍ରମକୁ ଜାଣିବାକୁ ପାଇଥିଲୁ । ଉଦ୍ଧତ ଛାତ୍ର ଓ ଅହଙ୍କାରୀ ଅଧ୍ୟାପକମାନଙ୍କୁ କିପରି ଦମନ କରିବାକୁ ପଡ଼େ ତାହା ଦେଖାଇ ଦେଇ ଆମମାନଙ୍କୁ ସାର୍ ଉଦାହରଣ ପାଲଟି ଯାଇଥିଲେ।

ଉଚ୍ଛୃଙ୍ଖଳ ଛାତ୍ରମାନଙ୍କୁ ଶାସନ କରିବା ଅନ୍ୟଜଣେ ଅଧ୍ୟାପକଙ୍କୁ ମଧ୍ୟ ଭଲ ଭାବରେ ଜଣାଥିଲା । ସେ ଆମର ପ୍ରିୟଗୁରୁ ଦୁର୍ଗାପ୍ରସନ୍ନ ପଣ୍ଡା । ଏକ ସଙ୍ଗରେ ଦୁଇଗୋଟି ଗୁଣ ତାଙ୍କ ନିକଟରେ ସନ୍ନିହିତ ଥିଲା; ଉଚ୍ଛୃଙ୍ଖଳ ଛାତ୍ରମାନଙ୍କ ପାଇଁ ସେ ଯମ ସାଜିଥିବା ବେଳେ ଶୃଙ୍ଖଳିତ ଛାତ୍ରମାନଙ୍କ ପାଇଁ ସେ ଥିଲେ ସ୍ୱର୍ଗବୈଦ୍ୟ ଅଶ୍ୱିନୀ କୁମାର ।

ସାହିତ୍ୟର ସବୁ ବିଭାଗରେ ତାଙ୍କର ପାଣ୍ଡିତ୍ୟ ଥିଲା ଅସାଧରଣ । ଯେଉଁ ବିଷୟରେ ତାଙ୍କର ଜ୍ଞାନ କମ୍ ବୋଲି ସେ ଅନୁଭବ କରୁଥିଲେ ସେହି ବିଷୟକୁ ସେ ମନଯୋଗ ସହ ଅଧ୍ୟୟନ କରି ନିଜର ଜ୍ଞାନ ପିପାସା ମେଣ୍ଟାଉଥିଲେ । କଲେଜ ଜୀବନରେ ଆମେ ଯେତେ ପ୍ରକାର ସାହିତ୍ୟିକ ଘଟଣାମାନ ଘଟାଇଛୁ ସବୁ ମୂଳରେ ଆମେ ଶ୍ରୀଯୁକ୍ତ ପଣ୍ଡାଙ୍କର ପରାମର୍ଶ ଲୋଡ଼ିଛୁ । ଅକୁଣ୍ଠ ଚିତ୍ତରେ ସେ ସର୍ବଦା ଆମକୁ ତାଙ୍କର ମମତାର ହାତ ବଢ଼ାଇ ଦେଇଛନ୍ତି ।

ଡଃ ଭାଗିରଥୀ ନାୟକଙ୍କର ପାଣ୍ଡିତ୍ୟ ଓ ସ୍ନେହ-ଏ ଉଭୟ ଥିଲା ଆମ କଲେଜ ଜୀବନର ଅନ୍ୟତମ ପାଥେୟ । ତାଙ୍କର ଗବେଷଣାର ସନ୍ଦର୍ଭ ଥିଲା କବିସମ୍ରାଟ ଉପେନ୍ଦ୍ର ଭଂଜଙ୍କ ଚିତ୍ରକାବ୍ୟ ବନ୍ଧୋଦୟ କାବ୍ୟକୁ ଭିତ୍ତିକରି । ଆଫ୍ରିକାର ଘନଜଙ୍ଗଲ ଭିତରକୁ ବିନା ଅସ୍ତ୍ରରେ ପ୍ରବେଶ କରିବାର ଅବସ୍ଥା

ଯାହା ଚିତ୍ରକାବ୍ୟ ବନ୍ଧୋଦୟ କାବ୍ୟପାଠକରି ତାକୁ ହୃଦୟଙ୍ଗମ କରିବାର ଅବସ୍ଥା ମଧ ସେଇୟା ବୋଲି ଆମେ ମନେ କରୁଥିଲୁ । ଅସହଜବୋଧ ଚିତ୍ରକାବ୍ୟ ବନ୍ଧୋଦୟ କାବ୍ୟଟି ଆମକୁ ଉତ୍ତୁଙ୍ଗ ହିମାଳୟ ପରି ପ୍ରତୀୟମାନ ହେଉଥିଲା । ସେହି ଗ୍ରନ୍ଥ ଉପରେ ହିଁ ସାରଙ୍କର ଗବେଷଣା ପର୍ଯ୍ୟବେକ୍ଷିତ ହୋଇଥିବା ଯୋଗୁଁ ଆମେ ତାଙ୍କୁ ଏଭେରେଷ୍ଟ ବିଜେତା ଏଡମଣ୍ଡ ହିଲାରୀଙ୍କ ସମ୍ମାନ ଦେଉଥିଲୁ ।

ଭାଗୀରଥି ସାରଙ୍କର ପଢାଇବାର ଶୈଳୀ ଥିଲା ଅନ୍ୟ ସମସ୍ତଙ୍କଠାରୁ ନିଆରା । ଯେଉଁ ବିଷୟଟିକୁ ସେ ପଢ଼ାଉଥିଲେ ତାହାକୁ ତନ୍ନ ତନ୍ନ କରି ବୁଝାଉଥିଲେ ଓ ଯେଉଁ କ୍ରମରେ ପ୍ରଶ୍ନର ଉତ୍ତର ଲେଖିଲେ ପରୀକ୍ଷାରେ ଅଧିକ ନମ୍ବର ମିଳିବ ସେହିପରି ପଏଣ୍ଟ ଅନୁସାରେ ତାଙ୍କର ବକ୍ତବ୍ୟ ବିତରଣ କରୁଥିଲେ । ତେଣୁ ତାଙ୍କର ପାଠପଢ଼ାଇବାର ଶୈଳୀ ଯେମିତି ହୃଦୟକୁ ଛୁଇଁଥିଲା ସେହିପରି ତାଙ୍କର ବକ୍ତବ୍ୟରେ ମିଠାମିଠା ମଧୁର ଶବ୍ଦାବଳୀର ଉଚ୍ଚାରଣ ଆମକୁ ମୋହମୁଗ୍ଧ କରୁଥିଲା ।

ଶ୍ୟାମପ୍ରସନ୍ନ ମିଶ୍ରଙ୍କର ପଢ଼ାଇବାର ଶୈଳୀ ମଧ ଥିଲା ଉଚ୍ଚକୋଟୀର । ଶ୍ରୀରାଧା ବାତୁଳୀ/ ପ୍ରେମରତ୍ନ ତୁଳୀ/ଘେନ ଚିହ୍ନରା ଗ୍ରାହକମାନେ କବିତାକୁ ସ୍ୱର ସହିତ ଗାନ କରି ସେ ଯେତେବେଳେ ଶ୍ରେଣୀଗୃହରେ ବିଷୟବସ୍ତୁକୁ ଉପସ୍ଥାପନ କରୁଥିଲେ ସେତେବେଳେ କଲ୍ଲୋଳିନୀ ପରି ହୃଦୟ ମଧରେ ଏକ ସ୍ନିଗ୍ଧ କଲ୍ଲୋଳ ପ୍ରବାହିତ ହୋଇ ଯାଉଥିଲା ।

ଶ୍ରୀଯୁକ୍ତ ରାଘବାନନ୍ଦ ନାୟକ ଅଧ୍ୟାପକ ଭାବରେ ଯୋଗଦେବା ପରେ ସେ ସାହିତ୍ୟ ସହିତ ଆଧ୍ୟାତ୍ମବିଦ୍ୟାର ମିଶ୍ରଣ ଘଟାଇବାକୁ ଉଦ୍ୟମ କରାଇଥିଲେ । ସେତେବେଳକୁ ସେ ବୋଧହୁଏ ସ୍ୱାମୀ ହରିହରନନ୍ଦଙ୍କର କ୍ରିୟାଯୋଗ ସହିତ ସଂପୃକ୍ତ ହୋଇ ପଡ଼ିଥିଲେ । ଏକଦା ଶ୍ରେଣୀଗୃହରେ ଘୋଷଣା କଲେ ଯେ "ଆସନ୍ତା କାଲି ମୁଁ ସମସ୍ତଙ୍କୁ ଈଶ୍ୱରଙ୍କ ସହିତ ସମ୍ପର୍କ କରାଇଦେବି ।" ତହିଁ ପରିଦିନ ଆମେ ସମସ୍ତେ ଉତ୍ସୁକତାର ସହିତ ତାଙ୍କର ଆଗମନୀକୁ ଅପେକ୍ଷା କରି ରହିଲୁ । ସେ ଶ୍ରେଣୀଗୃହରେ ପହଞ୍ଚିବା କ୍ଷଣି ଆମେ ସମସ୍ତେ ଅନୁରୋଧ କଲୁ ଈଶ୍ୱରଙ୍କ ସହିତି ଆମର ସମ୍ପର୍କ କରାଇ ଦେବାପାଇଁ । ସାର୍ ପ୍ରଥମେ ଘରର କବାଟକୁ ଆଉଜାଇ ଆଣିଲେ । ସମସ୍ତଙ୍କୁ କହିଲେ ଆଖିବୁଜି ବସ । ଆମେ ସମସ୍ତେ ଆଖିବୁଜି ବସିଲୁ । କହିଲେ -ମନକୁ ଦୁଇ ଆଖିର ମଝାମଝିରେ ସ୍ଥିର ରଖ । ରଖିଲୁ । କହିଲେ -ଦେଖ, ଗୋଟିଏ ଆଲୋକ ସେହି ସ୍ଥାନରେ ନିର୍ଗତ ହେଉଛି । ସମସ୍ତେ ଆଲୋକ ନିର୍ଗତ ହେବାର ଲକ୍ଷ୍ୟକଲେ । ମୋ ଲକ୍ଷ୍ୟ କିନ୍ତୁ ଅଲଗା ଆଡ଼କୁ ଭ୍ରମିତ ହୋଇ ଗଲା । ମୁଁ ଯେଉଁଠାରେ ଘରଭଡ଼ା ନେଇ ରହୁଥିଲି ତାହାରି ନିକଟରେ କିଛି ସହଧ୍ୟାୟୀ ଛାତ୍ରୀ ମଧ ମେସ୍ କରି ରହୁଥିଲେ । ସେମାନେ ଆମ୍ବୁଲ କରି ପ୍ରତ୍ୟହ ବାହାରେ ଖରାରେ ଶୁଖାଉଥିଲେ । ମୁଁ ଓ ମୋର ବନ୍ଧୁ ବୁଦବୁଦ ସେମାନଙ୍କର ଅବର୍ତ୍ତମାନରେ ବେଳେବେଳେ ଯାଇ ସେଇ ଆମ୍ବୁଲକୁ ଚୋରୀ କରି ଆଣି ଖାଇ ଦେଉଥିଲୁ । ଶ୍ରେଣୀଗୃହରେ ଆମେ ସବୁ ଧ୍ୟାନସ୍ଥ ଥିବା ସମୟରେ ଆଲୋକ ନିର୍ଗତ ହେବା ପରିବର୍ତ୍ତେ ମୋ ଦୁଇ ଆଖି ମଝିରେ ପୁରୁଣା କଥା ଭାବି ଖାଲି ଆମ୍ବୁଲମାନ ନିର୍ଗତ ହେବାକୁ ଲାଗିଲା । ସାର୍ ଯେତେବେଳେ ଆଖି ଖୋଲିବାକୁ ନିର୍ଦ୍ଦେଶ ଦେଲେ ସମସ୍ତଙ୍କ ସହିତ ମୁଁ ମଧ ଆଖି ଖୋଲିଲି । ସମସ୍ତେ ଆଲୋକ ନିର୍ଗତ ହେବାର ଦେଖିଛନ୍ତି ବୋଲି ସ୍ୱୀକାର କଲେ । କେବଳ ମୁଁ ସେହି ଆଲୋକକୁ ଦେଖି ପାରିନାହିଁ ବୋଲି କହି ସାରଙ୍କ ଦ୍ୱାରା ପାପୀ ବୋଲି ଅଖ୍ୟାୟିତ ହୋଇଥିଲି ।

ଉମାକାନ୍ତ ତ୍ରିପାଠୀ ଥିଲେ ସେତେବେଳେ ଆମର ଜଣେ ପ୍ରିୟ ଅଧ୍ୟାପକ । ମୋର ପିତାଙ୍କର ନାମ ଉମାକାନ୍ତି ତ୍ରିପାଠୀ ହୋଇଥିବା ଯୋଗୁଁ ତଥା ସାରଙ୍କର ସାନଭାଇର ନାମ ଲକ୍ଷ୍ମୀକାନ୍ତି ତ୍ରିପାଠୀ ହୋଇଥିବା ଯୋଗୁଁ ମୁଁ ସାରଙ୍କୁ ପିତୃତୁଲ୍ୟ ଓ ସାର୍ ମୋତେ ଅନୁଜତୁଲ୍ୟ ମନେ କରୁଥିଲେ । ସାର୍ ଅଧ୍ୟାପକ ନାରାୟଣ ଜେନାଙ୍କର ଘର ଭଡ଼ାନେଇ ରହୁଥିଲେ ଓ ତାଙ୍କର ଆଉ ଗୋଟିଏ ଘରକୁ ଭଡ଼ାନେଇ ରହୁଥିଲେ ମୋର ଦୁଇ ପ୍ରିୟବନ୍ଧୁ ଶିରୀଶ ଚନ୍ଦ୍ର ଜେନା ଓ ନିରଂଜନ ପଣ୍ଡା । ଏକଦା ବାଲେଶ୍ୱରର ସରକାରୀ

ଚିକିତ୍ସାଳୟରେ ସାର୍‌ଙ୍କର ମାଆଙ୍କର ଯକ୍ଷ୍ମା ରୋଗରେ ଦେହାନ୍ତ ହୋଇଗଲା । ଚିକିତ୍ସାଳୟରୁ ମରଶରୀରକୁ କାନ୍ଧରେ ବୋହିବୋହି ଆମେ ନେଇଥିଲୁ ଫକୀରମୋହନଙ୍କ ସମାଧୀପିଠସ୍ଥିତ ଶ୍ମଶାନ ନିକଟକୁ । ଶବଦାହର କିଛି ଦିନ ପରେ ଶିରୀଶ ଓ ନିରଞ୍ଜନକୁ ଘର ଜଗାଇ ଦେଇ ସାର୍ କିଛିଦିନ ପାଇଁ ନିଜ ଗ୍ରାମକୁ ଯିବାର ଦୁଇଦିନ ପରେ ଶିରୀଶ ଓ ନିରଂଜନ ଆସି ଅଚାନକ ମୋ ନିକଟରେ ପହଞ୍ଚିଯାଇ କହିଲେ- ଲକ୍ଷ୍ମୀକାନ୍ତ, ସାର୍‌ଙ୍କ ମାଆଙ୍କର ଭୂତ ଆସୁଛି । ମୁଁ କହିଲି କେମିତି ଜାଣିଲୁ ? ସେ କହିଲେ ସବୁଦିନ ଠିକ୍ ରାତି ଆଠଟା ସମୟରେ ଘରଭିତରୁ ଚାଉଳ ପାଛୋଡ଼ିବାର ଶବ୍ଦ ଆସୁଛି ।

ଭୂତର ଚାଉଳ ପାଛୋଡ଼ା ଶବ୍ଦ ଶୁଣିବାକୁ ମୋ ମନରେ ମଧ୍ୟ କୌତୁହଳ ଜାଗ୍ରତ ହେଲା । ମୁଁ ସଂଧ୍ୟା ସମୟରେ ନିରଂଜନ ଓ ଶିରୀଶଙ୍କର ରହିବା ସ୍ଥାନରେ ପହଞ୍ଚିଲି । ଆମେ ରାତି ଆଠଟାକୁ ଅପେକ୍ଷା କରି ବସିଲୁ । ଠିକ୍ ଆଠଟା ବେଳରେ ହିଁ ଘର ଭିତରୁ କୁଲା ପାଛୋଡ଼ିବାର ଶବ୍ଦ ଆରମ୍ଭ ହୋଇଗଲା ।

ଭୟରେ ଛାତିଟା ବରଡ଼ାପତ୍ର ପରି ଥରୁଥିଲେ ମଧ୍ୟ ଅନ୍ୟ ଦୁଇବନ୍ଧୁଙ୍କୁ ମୁଁ ସାହସ ଦେଲି । କହିଲି- ଆମେ ତ ତିନିଜଣ ଅଛୁ । ଭୂତ ଆମର କ'ଣ କରି ପକାଇବ । ବରଂ ଆସ ଦେଖିବା କେଉଁ ଜାଗାରୁ ଶବ୍ଦଟା ବାହାରୁଛି । ସେ ଦୁଇଜଣଙ୍କର ହାତ ଧରି ମୁଁ ଧୀରେଧୀରେ ରୁମ୍ ବାହାରକୁ ଆସିଲି । ଏଥର କୁଲା ପାଛୋଡ଼ିବାର ଶବ୍ଦ ଶୁଭିଲା ମୁଖ୍ୟ ଦରଜା ନିକଟରେ । ଆମେ ତିନିଜଣ ସନ୍ତପର୍ଣରେ ମୁଖ୍ୟ ଦରଜା ନିକଟକୁ ଯାଇ କବାଟ ଖୋଲିଦେଲୁ । ଏଥର ଶବ୍ଦଟା ଆଉଟିକିଏ ଦୂରେଇଗଲା ଗେଟ୍ ନିକଟକୁ । ଆମେ ଗେଟ୍ ପାଖରେ ପହଞ୍ଚିବା କ୍ଷଣି ଆହୁରି ଦୂରେଇ ଦୂରେଇ ଚାଲିଲା । ଶବ୍ଦକୁ ଅନୁସରଣ କରିକରି ଆମେ ଆଉ କିଛି ବାଟ ଆଗେଇଗଲୁ । ଯେଉଁଠି ଅଟକି ଗଲୁ ସେଠିଥିଲା ମେଞ୍ଚାଏ ଗଛପତ୍ରର ଗହଳି । ସେଇ ଝଂକାଳିଆ ଗଛପତ୍ର ଭିତରେ ଦିକିଦିକି ହୋଇ ଜଳୁଥିଲା ଛୋଟିଆ ଚିମିନିଟିଏ । ସେଇ ଚିମିନିର ଆଲୋକରେ ଆଲୋକିତ ହେଉଥିଲା ଗୋଟିଏ ବୁଢ଼ୀର ଦେହ ଏବଂ ସେଇ ଆଦିବାସୀ ବୁଢ଼ୀଟିଏ ବସି ହିଁ ସେଠାରେ ଚାଉଳ ପାଛୋଡୁ ଥିଲା । ସେଇଟା ଥିଲା ଗୋଟିଏ ଆଦିବାସୀ କୁଡ଼ିଆ । ସକାଳେ ଉଠି ସେମାନେ ସମସ୍ତେ କାମ କରିବାକୁ ଚାଲି ଯାଆନ୍ତି । ରାତି ଘଡ଼ିଏ ବେଳକୁ ଫେରି ଅପାଛୋଡ଼ା ଚାଉଳକୁ ଛଡ଼ାଇ ଭାତ କରନ୍ତି । ଆମ ହୃଦୟରୁ ଭୂତଭୟ ବିଦୂରିତ ହୋଇଗଲା । କିନ୍ତୁ ଉମାକାନ୍ତ ସାର୍‌ଙ୍କ ଆଗେ ଏସବୁ କଥା ନ କହିବାର ପ୍ରସ୍ତାବ ନେଇଥିଲୁ ।

ଶିକ୍ଷକମାନଙ୍କ ସହିତ ଆମମାନଙ୍କର ଯେମିତି ପାରିବାରିକ ସମ୍ପର୍କ ରହୁଥିଲା ସହପାଠୀ ତଥା ସହପାଠିନୀଙ୍କ ସହିତ ମଧ୍ୟ ଆମର ଥିଲା ଅନାବିଳ ସଂପର୍କ । ଗୋଟିଏ ବିରାଟ ଘରରୁ ଗୋଟିଏ ରୁମ୍ ଭଡ଼ାନେଇ ରହୁଥିଲେ ଆମର ଜଣେ ସହପାଠିନୀ । ସହପାଠିନୀଟି ଅତ୍ୟନ୍ତ ସରଳା ଥିବାରୁ ଆମ ସମସ୍ତଙ୍କର ଥିଲା ଅତ୍ୟନ୍ତ ପ୍ରିୟ । ସେ ଯେଉଁ ଘରେ ରହୁଥିଲା ଘରଟି କଲେଜଠାରୁ ବେଶୀ ଦୂର ନଥିଲା । ଘରର ଚାରିପଟେ ପର୍ଯ୍ୟାପ୍ତ ପରିମାଣର ଜାଗା ରହିଥିଲା । ସେହି ଜାଗା ଭିତରେ ଥିଲା ନାନା ପ୍ରକାରର ଫଳଗଛ । ଅଧା ଉଚ୍ଚା ଫଳନ୍ତି ନଡ଼ିଆଗଛରେ ଏତେ ନଡ଼ିଆ ଧରିଥିଲା ଯେ ଆମର ଲୋଭିଲା ଆଖିକୁ ବାରମ୍ବାର ତାହା ଆକର୍ଷିତ କରୁଥିଲା । ସେ ଘରେ ଅନ୍ୟଜଣେ ଭଦ୍ରବ୍ୟକ୍ତି ଭଡ଼ାରେ ରହୁଥିଲେ ମଧ୍ୟ ଘରର ମାଲିକ ସେଠାରେ ନରହି ଅନ୍ୟତ୍ର ଅବସ୍ଥାନ କରୁଥିଲେ ।

ଏକଦା ଆମର ସହପାଠିନୀ ଘରଭଡ଼ା ଦେବାରେ କିଛିଦିନ ବିଳମ୍ବ କରିଦେବା ହେତୁ ଘରର ମାଲିକ ଉପସ୍ଥିତ ହୋଇ ତାଙ୍କ ପ୍ରତି ଅସନ୍ତୁଷ୍ଟ ହୋଇଥିଲେ । ଆମ ସହପାଠିନୀଟି ଆଖିରୁ ଲୋତକ ବୁହାଇ ତାର ଦୁଃଖ ଆମ ଆଗରେ ପ୍ରକାଶ କରିଥିଲା ।

ସହପାଠିନୀର ଦୁଃଖ ଦେଖି ଆମେ ଘର ମାଲିକ ଉପରେ କ୍ରୋଧିତ ହୋଇ ପ୍ରତିଶୋଧ ନେବାର

ଚିନ୍ତାରେ ମଗ୍ନ ହୋଇଗଲୁ । ତାଙ୍କ ନଡ଼ିଆଗଛର ନଡ଼ିଆମାନେ ଆମ ଆଖି ସାମ୍ନାରେ ବାରମ୍ବାର ଝଲସି ଉଠିଲା । ସେହି ନଡ଼ିଆଗୁଡ଼ିକୁ ଅପହରଣ କରିବାର ଏକ ନିଷ୍ଠୁର ଯୋଜନା ଆମ ମନ ମଧ୍ୟରେ ପ୍ରବେଶ କରିଗଲା । ରାତି ଆଠଟା ବେଳକୁ ମୁଁ, ବୁଦ୍‌ବୁଦ ଓ ଆଉ ଜଣେ ଦୁଇଜଣ ସାଥି ସେହି ନଡ଼ିଆଗଛ ମୂଳରେ ଉପସ୍ଥିତ ହୋଇଗଲୁ । ଜୋତାକୁ ଗଛର ତଳେ ଥୋଇ ଅନ୍ଧାରର ବୁକୁଚିରି ମାଙ୍କଡ଼ ପରି ଚଢ଼ିଚଢ଼ି ମୁଁ ନଡ଼ିଆଗଛର ଅଗ୍ରଭାଗକୁ ଚାଲିଗଲି । ନଡ଼ିଆକୁ ମୋଡ଼ିମୋଡ଼ି ଗୋଟିଏ ଗୋଟିଏ କରି ତଳକୁ ଖସାଇବାକୁ ଲାଗିଲି । ଅନ୍ୟମାନଙ୍କ ଦ୍ୱାରା ତାହା ଯଥାଶୀଘ୍ର ଉଠାଇ ନିଆଯାଇ ସହପାଠିନୀର ମାଟିକାନ୍ଥର କୋଠା ଉପରେ ଲୁଚାଇ ଦିଆଗଲା । ଅନ୍ଧାରରେ ଅଣ୍ଡାଳି ଅଣ୍ଡାଳି ସବୁ ନଡ଼ିଆଗଛରୁ ତଳକୁ ଖସାଇବା ପରେ ମୁଁ ତଳକୁ ଓହ୍ଲାଇ ଆସିଲି । ସେହି ନଡ଼ିଆ ସବୁକୁ ଆମେ ମାସମାସ ଧରି ଖାଇଥିଲୁ । ମାତ୍ର ପରବର୍ତ୍ତୀ ସମୟରେ ଜାଣି ପାରିଥିଲୁ ଯେ ସେହି ଘରର ମାଲିକ ଥିଲେ ଆମକୁ ଶ୍ରେଣୀଗୃହରେ ବିଦଗ୍ଧ ଚିନ୍ତାମଣି ପଢ଼ାଉଥିବା ଅଧ୍ୟାପକ ଉପେନ୍ଦ୍ର ଦାସ ।

ନାଗମଣି ସାମନ୍ତ, ଶ୍ୟାମାପ୍ରସନ୍ନ ମିଶ୍ର ବା ଅନ୍ୟ କୌଣସି ପ୍ରିୟ ଅଧ୍ୟାପକ ବାହାରକୁ ଗଲେ ତାଙ୍କ ଘର ଜଗିବାର ଦାୟିତ୍ୱ ମୋ ଉପରେ ନ୍ୟସ୍ତ ରହୁଥିଲା । କିଛିଦିନ ପାଇଁ ସେହିଘର ଆମ ସାହିତ୍ୟର ଖଟି ପାଲଟି ଯାଉଥିଲା । ଅଧ୍ୟାପକ ଗଣେଶ ପ୍ରସାଦ ଦାସ, ବନମାଳୀ ଦାସ ଆଦି ଆମର ଥିଲେ ବନ୍ଧୁସମ ଗୁରୁ । ଅଧ୍ୟକ୍ଷ ମନାନ୍ ସାର୍‌ଙ୍କର ପୁଅକୁ ଓଡ଼ିଆ ସାହିତ୍ୟ ଟିଉସନ୍ କରି ମୁଁ ତାଙ୍କର ଅତି ପ୍ରିୟ ହୋଇ ପାରିଥିଲି ।

ପାଠପଢ଼ା ଉପରେ ଅଧିକ ଗୁରୁତ୍ୱ ନ ଦେଇ ଆମେ ସାହିତ୍ୟଚର୍ଚ୍ଚାରେ ଅଧିକ ମନନିବେଶ କରୁଥିଲୁ । କଇଳାଶ ଥିଲେ ସୃଜନୀ ସାହିତ୍ୟ ସଂସଦ ଓ ହାତଲେଖା ସବୁଜ ପତ୍ରର ସମ୍ପାଦକ । ମୋ ସଂପାଦନାରେ ସୂଚନା ସାହିତ୍ୟ ପତ୍ରିକାର ତିନୋଟି ସଂଖ୍ୟା ପ୍ରକାଶିତ ହୋଇଥିଲା । ଏହି ସମୟରେ ପ୍ରଦୀପ୍ତ ଦାସଙ୍କ ସମ୍ପାଦନାରେ 'ପରିଚୟ', ଶଶିକାନ୍ତ ପଣ୍ଡାଙ୍କ ସଂପାଦନାରେ 'ଘାସଫୁଲ' ଓ ଅନନ୍ତ ଜେନାଙ୍କ ସମ୍ପାଦନାରେ 'କୋରକ' ମଧ୍ୟ ପ୍ରକାଶିତ ହୋଇଥିଲା । 'ଆସନ୍ତା କାଲି'ରେ କଇଳାଶ ପଟ୍ଟନାୟକଙ୍କର ଗଳ୍ପ ଓ ମୋର କବିତା ପ୍ରକାଶିତ ହୋଇଥିଲା ।

ଆମେ କଲେଜରେ ଅଧ୍ୟୟନ କରିବାଠାରୁ ଏହା ମଧ୍ୟରେ ଆନେକ ଦିନ ଅତିକ୍ରାନ୍ତ ହୋଇ ଗଲାଣି । ଆମର ଅନେକ ଗୁରୁଦେବ ଏହା ମଧ୍ୟରେ ଅବସର ଗ୍ରହଣ କରି ସାରିଲେଣି । ଦୀର୍ଘ ଚାରିବର୍ଷ ଧରି କଲେଜରେ ଅଧ୍ୟୟନ କରୁଥିବା ସମୟରେ ଯେଉଁ ସାହିତ୍ୟିକ ବାତାବରଣ ମଧ୍ୟରେ ଆମେ ମଜ୍ଜି ହୋଇ ରହିଥିଲୁ ପରବର୍ତ୍ତୀ ସମୟରେ ତାହା ଆଉ ପାଇନାହିଁ । ଯେଉଁ ଗୁରୁମାନେ ଆମକୁ ଅଧ୍ୟାପନା କରିଥିଲେ ସେମାନଙ୍କ ସହିତ ପାରିବାରିକ ସମ୍ପର୍କ ଏଯାବତ୍ ଅତୁଟ ରହିଛି ।

ମଧୁର ସଂପର୍କ ଯେ ଦୁଇ ଦିନର ନୁହେଁ, ସବୁଦିନର କିମ୍ବା କର୍ତ୍ତବ୍ୟରେ ଅବହେଳା ନ କରିବା ହିଁ ଉନ୍ନତିର ଚାବିକାଠି-ଏହାଥିଲା ଆମ ଗୁରୁମାନଙ୍କର ଆମପ୍ରତି ଉଦାତ୍ତ ଆଦେଶ । ସେହି ଗୁରୁବାକ୍ୟକୁ ଏଯାବତ୍ ଆମେ ପାଳନ କରି ଆସିଛୁ ।

• ଭାରତୀୟ ଷ୍ଟେଟ ବ୍ୟାଙ୍କ୍,
ବାଲେଶ୍ୱର

# ପ୍ରଫେସର୍ସ୍ କ୍ଲବ : ଅନନ୍ୟତାର ଅନ୍ୟନାମ

## ପ୍ରାଧ୍ୟାପକ ରବିନାରାୟଣ ଦାଶ

୧୯୭୦-୭୨ରେ ଜଣେ ଛାତ୍ର ହିସାବରେ ସାର୍‌ମାନଙ୍କ କମନ୍ ରୁମ୍ ଭିତରକୁ ସନ୍ତର୍ପଣରେ ଅନାଉଥିବା ଅବଧିରେ ଫକୀରମୋହନ କଲେଜ ଅବଶ୍ୟ ମୋର ପ୍ରିୟଥିଲା । କିନ୍ତୁ ପ୍ରିୟତର ହେଲା ୧୯୮୨-୧୯୯୮ରେ ଯେତେବେଳେ ଅଧ୍ୟାପକ ଭାବେ ନିଜେ ଯାଇ ସେ ରୁମ୍‌ରେ ବସି ପାରିଲି । ସେଦିନରୁ ମୋ ପ୍ରୀତିରେ ଭଟ୍ଟା ପଡ଼ିନି । ବହୁ ବୌଦ୍ଧିକ ଓ ଭାବଗତ ଦିଆନିଆର ତୀର୍ଥ ସେହି କମନ୍ ରୁମ୍ ଯାହା ଭିତରେ Staff Club ସେତେବେଳେ ଏମିତି ସେମିତି ଚାଲିଥାଏ । ୧୯୯୧-୯୨ ସମୟ । ସ୍ୱର୍ଗତ କାର୍ତ୍ତିକ ଚାଟାର୍ଜୀ ଅଧ୍ୟକ୍ଷ ଥାଆନ୍ତି । Staff Club ନାମାନ୍ତରିତ ହେଲା ମର୍ଯ୍ୟାଦାପୂର୍ଣ୍ଣ Professors' Clubକୁ । ଯୁକ୍ତି, ଏ କ୍ଲବ କେବଳ ଶିକ୍ଷକମାନଙ୍କର, ଯାହା Staff ଅର୍ଥର ବ୍ୟାପକତାରେ ନିଜର ସ୍ୱାତନ୍ତ୍ର୍ୟ ହରାଉଛି । ବାସ୍ ସେଇଦିନୁ Professors' Clubର ଜୈତ୍ର ଯାତ୍ରା । ପୂର୍ବ ପଶ୍ଚିମ ଦକ୍ଷିଣ ଉତ୍ତର ହୋଇ ଓଡ଼ିଶାର ବହୁ ସରକାରୀ କଲେଜରେ ଚାକିରୀ କରିଛି । ସବୁଠି Staff Club ଅଛି । କିନ୍ତୁ ଫକୀରମୋହନ କଲେଜର Professors' Club ଏ ସବୁଠାରୁ ଅଲଗା; ଠିକ୍ ଯେମିତି ଏହାର ପୁରାତନ ଛାତ୍ର ସଂସଦ । ଏ କଲେଜର କୃତି ଛାତ୍ରଛାତ୍ରୀଙ୍କୁ ଉତ୍ସାହ, ସମ୍ମାନ ଓ ପୁରସ୍କାର ଦେବାରେ ଏ ସଂସଦ ଯେଭଳି ଅଗ୍ରଣୀ, ବିନା ସରକାରୀ ସାହାଯ୍ୟରେ କଲେଜ ପରିସରରେ ଦୁଇଟି ତ୍ରିତଳ ଭବନର ନିର୍ମାଣ, କଲେଜର ପୁନଃନିର୍ମାଣ ଓ ପରିଚାଳନାରେ ଏ ସଂସଦ ଓଡ଼ିଶାରେ ସେଭଳି ଅନନ୍ୟ । Alumni Association ଓ Professors' Club ଫକୀରମୋହନ କଲେଜର ଦୁଇଟି ଅନନ୍ୟ ଅନୁଷ୍ଠାନ । ଅଧ୍ୟାପକ ଭାବେ ଏଠାରେ ଅବସ୍ଥାନ କାଳରେ ଏଇ କ୍ଲବର ବିଶେଷତ୍ୱ ବିଷୟରେ ଯାହାଜାଣେ ସେଥିରୁ ପଦେ ।

ପିରିୟଡ୍ ମଝିରେ ଏକାଠି ହୋଇ ତାସ୍ କି କେରମ୍ ଖେଳିବା, ଗୁଲିଗପ କରିବା ବା ଭୋଜିଭାତ ଆୟୋଜନରେ ଏ କ୍ଲବ ସୀମିତ ନୁହେଁ । ବରଂ ଏହା ଅଧ୍ୟାପକମାନଙ୍କର ବୌଦ୍ଧିକ, ସାଂସ୍କୃତିକ ଓ ସାମାଜିକ ଜୀବନର ଏକ ମଞ୍ଚ । ଅଧ୍ୟକ୍ଷ ଏହାର ସଭାପତି, ଆଉ ଦୁଇଜଣ ଅଧ୍ୟାପକ ଏହାର ସଂପାଦକ ଓ ସହ-ସଂପାଦକ ଭାବେ କାର୍ଯ୍ୟ କରନ୍ତି । କଲେଜର ସବୁ ଅଧ୍ୟାପକ ଓ ଅଧ୍ୟାପିକା ଏହାର ସଭ୍ୟ । 'ପ୍ରଜ୍ଞାଚକ୍ର' ଏହି କ୍ଲବର ଏକ ବୌଦ୍ଧିକ forum ଓ ଅଧ୍ୟାପକମାନଙ୍କ ବୌଦ୍ଧିକ ବିଚାରର ଏକ ସାଧାରଣ ସଂସଦ । ସେମାନେ ବିଭିନ୍ନ ବିଷୟ ଉପରେ ଏହି ଚକ୍ରରେ ନିଜ ଅନୁଶୀଳନଲବ୍ଧ ବକ୍ତବ୍ୟ ରଖିଥାନ୍ତି । ତାପରେ ଚାଲେ ଉପସ୍ଥାପକ ଓ ଶ୍ରୋତାଙ୍କ ମଧ୍ୟରେ interaction । ଥରେ ଓଡ଼ିଆ ବିଭାଗର ଅଧ୍ୟାପକ ଚଣ୍ଡୀ ଚରଣ କର ଚଣ୍ଡୀ ଉପରେ ତିନିଦିନ ଧରି ଏହି ଚକ୍ରରେ ନିଜ ବକ୍ତବ୍ୟ ରଖିଥିଲେ । କୋରାନ ଉପରେ ବକ୍ତବ୍ୟ ରଖିଥଲେ ଇଂରାଜୀ ଅଧ୍ୟାପକ ଏମ୍. ଏ. ୱାହିଦ । କେତେକ ଚକ୍ରରେ ବାହାରୁ ମଧ୍ୟ ବକ୍ତାମାନେ ଆସି ବକ୍ତବ୍ୟ ରଖୁଥିଲେ । ଯେଉଁମାନଙ୍କ ଭିତରେ ଅନ୍ୟତମ ଥିଲେ ମନୋଜ ଦାସ (କଲେଜର ସୁବର୍ଣ୍ଣ ଜୟନ୍ତୀ ଅବସରରେ) ।

Professors' Club ବିଭିନ୍ନ ସାଂସ୍କୃତିକ କାର୍ଯ୍ୟକ୍ରମ ମାନ କରିବା ସହିତ ସଂସ୍କୃତି ଓ ପ୍ରତିଭାକୁ ପ୍ରୋତ୍ସାହନ ଦେଇ ଏହି କଲେଜରେ ଏକ Cultural Renaissanceର ସୂତ୍ରପାତ କରିଥିଲା । ଅଗଷ୍ଟ ପନ୍ଦର ସଂଧ୍ୟାରେ କବିତା ପାଠୋତ୍ସବରେ କ୍ଲବର ସଭ୍ୟମାନେ ସ୍ୱରୋଚିତ କବିତା ପାଠ କରନ୍ତି । ଥରେ କ୍ଲବର 'ବସନ୍ତ ପର୍ବ' ପାଳନ ଅବସରରେ ଏକ ବିଶେଷ କବିତା ପାଠ ଅନୁଷ୍ଠାନରେ ଯୋଗଦେଇଥିଲେ ବିଶିଷ୍ଟ

କବି ବ୍ରଜନାଥ ରଥ ଓ ଚନ୍ଦ୍ର କୁମାର ମହାନ୍ତି । ସ୍ଥାନୀୟ ଲୋକ ସଂସ୍କୃତିକୁ ପ୍ରୋତ୍ସାହନ ଦେବାପାଇଁ ଏହି କ୍ଲବ ଅନେକ ସମାବେଶର ଆୟୋଜନ ମଧ କରିଛି । କଲେଜ ହଲର ମଞ୍ଚ ଉପରେ ସୋରରୁ ଆଗତ ଦାସକାଠିଆ ଦଳ ଦାସକାଠିଆ ପରିବେଷଣ କରିଛନ୍ତି । ମଙ୍ଗଳପୁରର ମୁଖାଯୁକ୍ତ ରାମଲୀଳା, କାମଶୁଳି କଲେଜର ସଂସ୍କୃତ ଅଧ୍ୟାପକ ବିଜୟ ଘୋଷଙ୍କ ପାଲା, ବାଲେଶ୍ୱରର ଇଂଜିନିୟର ଚିନ୍ମୟ ରକ୍ଷିତଙ୍କର ମ୍ୟାଜିକ୍ ସୋ'ଆଦି କ୍ଲବ ପୃଷ୍ଠପୋଷକତାରେ ପରିବେଶିତ ହୋଇଛି । ବାଲେଶ୍ୱରର ଅଗ୍ରଣୀ ନାଟ୍ୟସଂସ୍ଥା 'ସ୍ରଷ୍ଟା' ପ୍ରଯୋଜିତ ତଥା କଟକଠାରେ ଓଡ଼ିଶା ଶିଶୁ ନାଟକ ପ୍ରତିଯୋଗିତାରେ ଶ୍ରେଷ୍ଠ ବିବେଚିତ ଶିଶୁ ନାଟକ 'ନୂଆ ସକାଳର ସୂର୍ଯ୍ୟ' କ୍ଲବ ପୁଣିଥରେ ଏହି କଲେଜରେ ମଞ୍ଚସ୍ଥ କରାଇଥିଲା । ଏଇ କଲେଜର ବହୁ ଶିଳ୍ପୀ-ଛାତ୍ରଛାତ୍ରୀଙ୍କୁ କ୍ଲବ ନିଜର ବିଭିନ୍ନ ସମାବେଶ ମାନଙ୍କରେ ଯନ୍ତ୍ର ଓ କଣ୍ଠ ସଂଗୀତ ପରିବେଷଣ ପାଇଁ ନିମନ୍ତ୍ରଣ କରି ଉତ୍ସାହିତ କରିଥାଏ ।

ସଭ୍ୟ/ ସଭ୍ୟାଙ୍କର ନିଜସ୍ୱ କଳାତ୍ମକ ଓ ସଂସ୍କୃତି ପ୍ରତିଭାର ମଞ୍ଚାୟନ ପାଇଁ ଏହି କ୍ଲବ କେତେକ ଅନୁଷ୍ଠାନ କରିଛି । ଥରେ Staff Common Roomରେ ଇଂରାଜୀ ଅଧ୍ୟାପିକା ଡଃ କ୍ରିଷ୍ଣା ବୋଷଙ୍କ ଅଙ୍କିତ ସମସ୍ତ ପେଣ୍ଟିଂ ଓ ତାଙ୍କ ସଦ୍ୟପ୍ରକାଶିତ କବିତା ପୁସ୍ତକ 'Spray of Flowers' ର ଏକ ପ୍ରଦର୍ଶନୀ କ୍ଲବ ଦ୍ୱାରା ଅନୁଷ୍ଠିତ ହୋଇଥିଲା । ସେଇ ଅବସରରେ କମନରୁମ୍‌କୁ କ୍ଲବ ଉପହାର ଦେଇଥିଲା ସ୍ଥାନୀୟ କୃତି ଶିଳ୍ପୀ ନିତ୍ୟାନନ୍ଦ ସାହୁଙ୍କ ଅଙ୍କିତ ଫକୀରମୋହନଙ୍କ ପଟ୍ଟଚିତ୍ର ଯାହା ଏବେ ବି କମନରୁମ କାନ୍ଥରେ ଶୋଭା ପାଉଛି । ୧୯୯୫ January ମାସ କଲେଜ ସୁବର୍ଣ୍ଣ ଜୟନ୍ତୀ ପାଇଁ Professors' Club ଏକାଥରେ ଦୁଇଟି ନାଟକ ମଞ୍ଚସ୍ଥ କରିବାର ସିଦ୍ଧାନ୍ତ ନେଲା- Shakespeare ଙ୍କର Merchant of Venice (Trial Scene) ଓ ଫକୀରମୋହନଙ୍କର 'ଧୂଳିଆ ବାବା' (ନାଟ୍ୟରୂପ : ଡଃ ହରିଶ୍ଚନ୍ଦ୍ର ବେହେରା) । ଉଦ୍ଦେଶ୍ୟ, ଏଭଳି ଏକ ସାଂସ୍କୃତିକ ଉତ୍ସବ ଅବସରରେ ସଭ୍ୟ/ସଭ୍ୟାମାନଙ୍କର ଲୁକ୍କାୟିତ ନାଟ୍ୟ ପ୍ରତିଭାର ଉନ୍ମେଷ ଓ ପ୍ରକାଶ ସହିତ ମୁହଁରେ କେବେ ରଙ୍ଗ ମାଖି ନଥିବା ଅଧ୍ୟାପକ ବନ୍ଧୁମାନଙ୍କୁ ମଞ୍ଚ ଅଭିନୟର ସୁଯୋଗ ପ୍ରଦାନ । ତାପର ଠାରୁ କ୍ଲବ ଆଉ ପଛକୁ ଚାହିଁ ନାହିଁ । ମଞ୍ଚସ୍ଥ କଲା ଗୋଟିଏ ପରେ ଗୋଟିଏ ନାଟକ । ୧୯୯୬ରେ 'ରାଜଦର୍ଶନ', ୧୯୯୭ରେ 'କସ୍ତୁରୀ ମୃଗ', ୧୯୯୮ରେ 'ତଳିଆ ସେକ୍ରେଟେରୀ' +....ଏମିତି । ୧୯୯୮ ନାଟକରେ ଏକ ବିଶେଷତଃ ଥିଲା କଲେଜ ଅଧକ୍ଷ କୃଷ୍ଣକାନ୍ତ ଦାସଙ୍କର ଉକ୍ତ ନାଟକରେ ଅଭିନୟ ନିଜ ଅଜାଣତରେ ପ୍ରଫେସର ଦାସ ଇତିହାସ ସୃଷ୍ଟିକରେ ଏକ ଛୋଟ ଅଭିନୟ ମାଧମରେ, ଇତିହାସ ବି ବେଳେବେଳେ ସେହିଭଳି ସୃଷ୍ଟିହୁଏ । ସାରା ଓଡ଼ିଶାରେ କଲେଜ ମଞ୍ଚ ଇତିହାସରେ ପ୍ରଥମ ଥର ପାଇଁ ଜଣେ ଅଧକ୍ଷ ଅଭିନୟ କଲେ । ଏଇ ନାଟକଦଗୁଡ଼ିକର ଗୋଟିଏ ବଡ଼ ବିଫଳତା ଥିଲା ନାରୀ ଚରିତ୍ର ପାଇଁ କ୍ଲବର ସଭ୍ୟାନାରୀମାନେ ସମ୍ମତି ନଦେବା । ସେଥିପାଇଁ କଲେଜର ଛାତ୍ରୀମାନଙ୍କ ଉପରେ ନିର୍ଭର କରିବାକୁ ପଡୁଥାଏ । ତେବେ ଗୋଟିଏ ବଡ଼ ସଫଳତା ଥିଲା ଅଣଶିକ୍ଷକ କର୍ମଚାରୀମାନଙ୍କୁ ଅଭିନୟରେ ସ୍ଥାନ ଦେଇ ସମସ୍ତଙ୍କ ମଧରେ ସୌହାର୍ଦ୍ଧ୍ୟ ସୃଷ୍ଟି କରିବା । 'ରାଜ ଦର୍ଶନ'ରେ କଲେଜ ଅଫିସର ବଡ଼ବାବୁ ପରମାନନ୍ଦ ସାହୁ ଓ ଉଦ୍ଭିଦ ବିଜ୍ଞାନର ଡେମୋନଷ୍ଟ୍ରେଟର ଚନ୍ଦ୍ରଶେଖର ଖିଲାର ଖାଲି ଅଭିନୟ କରିନଥିଲେ, ସବୁ ନାଟକରେ ଖିଲାର ବାବୁ ନିର୍ଦ୍ଦେଶନା ମଧ ଦେଉଥିଲେ । ତାଙ୍କ ସୁନ୍ଦର ନିର୍ଦ୍ଦେଶନା ଏଇ ନାଟକଗୁଡ଼ିକୁ ଆକର୍ଷଣୀୟ କରୁଥିଲା ।

ଖେଳ ଉପରକୁ ଆସନ୍ତୁ । ଅଧ୍ୟାପକମାନେ ପୂର୍ବରୁ କିଏ କେବେ Cricket ଖେଳୁଥିଲେ । କ୍ଲବ ସେଇ ପ୍ରତିଭାକୁ ପୁର୍ଣ୍ଣଜୀବିତ କଲା Cricket Match ମାଧମରେ । କେତେବେଳେ Principal's eleven Vs Vice-Principal's eleven ତ କେତେବେଳେ Science & Commerc Vs Arts । ଗୋପାଳ ଘୋଷ ଅଧକ୍ଷ ଥିଲାବେଳେ ନିଜେ Science teamରେ ଖାଲି Captain ନଥିଲେ, ସେ ଥିଲେ ସେ Matchର ଜଣେ

ତାରକା Batsman । ଛାତ୍ରମାନଙ୍କ ମଧ୍ୟରେ ନିଜ ଅଧକ୍ଷଙ୍କୁ Bat ସହ ଦେଖିବାର ଶୀହରଣ କିଛି କମ ନଥିଲା । ଏ କଲେଜ ଅଧ୍ୟାପକଙ୍କର Cricket Team Bhadrak College ଓ M.P.C. କଲେଜ ଯାଇ Cricket ଖେଳିଛି । ପୁଣି ସେଠାକାର ଅଧ୍ୟାପକମାନଙ୍କୁ ନିଜ Pitchକୁ ଡାକି ସେମାନଙ୍କ ସହ ଖେଳିଛି । ବାରିପଦାର MPC College Team ବାଣିଜ୍ୟର Iswar Chandra Jenaଙ୍କ ନେତୃତ୍ୱରେ ଏ କଲେଜ ଆସି ଏକ ଚିତ୍ତାକର୍ଷକ ମେଚ ଖେଳିଥିଲା । ଏଇ ତ ଗଲା Outdoor game । ନାଟକ ପରେ ଆରମ୍ଭ ହୁଏ ପ୍ରତିଦିନ ସଂଧ୍ୟାରେ Chess,Card (Bridge) ଓ Carrom (Single And Doubles)ରେ ମାସାଧିକାଳ Indoor Tournament । ଅଧକ୍ଷମାନେ ମଧ ଏଇ ପ୍ରତିଯୋଗିତାରେ ଅଂଶଗ୍ରହଣ କରନ୍ତି ।

ପୂଜ୍ୟପୂଜା ପ୍ରଫେସର କ୍ଳବ ସଂସ୍କୃତିର ଅନ୍ୟ ଏକ ବିଭାଗ । ସ୍ୱାଧୀନତାର ହିରଣ୍ୟ ଜୟନ୍ତୀ ଅବସରରେ ରକ୍ତତୀର୍ଥ ଇରମ ଗ୍ରାମର ଏକଦା ଗୁଳିବିଦ୍ଧ ସ୍ୱାଧୀନତା ସଂଗ୍ରାମୀ ଗଣେଶ ତ୍ରିପାଠୀ, ବାଞ୍ଛାନିଧି ମହାନ୍ତିଙ୍କ ପଟ୍ଟଶିଷ୍ୟ ତାଙ୍କ ଗୀତର ଚାରଣ ଗାୟକ ବାସୁଦେବପୁର କରଂଜଆଡ଼ିଆ ଗ୍ରାମର ବଳରାମ ପାଣ୍ଡବଙ୍କୁ କ୍ଳବ ଏକ ବିଶେଷ ଅଧିବେଶନରେ ସାଲ ଓ ମାନପତ୍ରସହ ସମ୍ମାନିତ କରିଥିଲା । ପ୍ରଞ୍ଚାଚକ୍ରର ଏକ ସ୍ୱତନ୍ତ୍ର ଅଧିବେଶନକୁ ଆସିଥିଲେ ସ୍ଥାନୀୟ ସ୍ୱାଧୀନତା ସଂଗ୍ରାମୀ ତଥା ଏହି କଲେଜର ଏକଦା ଛାତ୍ରନେତା ପିତାମ୍ବର ପାଣି ।

ଏବେ ଅଧ୍ୟାପକ ଅଧ୍ୟାପିକାମାନଙ୍କର ସାମାଜିକ ଜୀବନର ଜୀବନମଞ୍ଚଭାବେ ପ୍ରଫେସର କ୍ଳବ ଉପରେ ଦୃକ୍‌ପାତ କରାଯାଉ । Transfer/joining ଆଦିର ଧୂଳି ଥମିଗଲେ ପୂଜାଛୁଟି ପରେ ପରେ ହୁଏ Professor's Clubର ସ୍ୱାଗତ ସମାବେଶ । ଅଧ୍ୟାପକ ଅଧ୍ୟାପିକାମାନଙ୍କର ପରିବାର ସଭ୍ୟମାନଙ୍କୁ Clubର Ex-officio ସଭ୍ୟଭାବେ ଧରି ନିଆଯାଏ । Any social get-together of the club was a family get-together. Campus ଭିତରର ଭୋଜି ହେଉ ବା ବାହାରର ପିକ୍‌ନିକ୍ ହେଉ ସଭ୍ୟ/ସଭ୍ୟାମାନେ ସେମାନଙ୍କର ସ୍ତ୍ରୀ/ସ୍ୱାମୀ ଓ ପୁଅଝିଅଙ୍କ ସହ ଯୋଗ ଦିଅନ୍ତି । ଲୁଲୁଙ୍ଗ, ଦେବକୁଣ୍ଡ, ଚକ୍ରତୀର୍ଥ ଓ ଚାନ୍ଦିପୁରକୁ ପଡ଼ିଥିବା family picnic ଉପଭୋଗ୍ୟ ହୋଇଥିଲା । ହୋଲି ଅବସରରେ ରଙ୍ଗଖେଳ, ସଂଧ୍ୟାରେ ଭୋଜି, ବିଷୁବ ସଂକ୍ରାନ୍ତି ସଂଧ୍ୟାରେ ରଙ୍ଗାରଙ୍ଗ କାର୍ଯ୍ୟକ୍ରମସହ ପଣା ପରିବେଷଣ କ୍ଳବର ସାମାଜିକ ଜୀବନର ଆଉ ଦୁଇଟି ଆଲେଖ୍ୟ । ସେ ପଣା ପାନୀୟ ନୁହେଁ, ଏକ ପୁଷ୍ଟିକର ବହଳ ଲିକ୍ୟୁଡି, ଯାହାକୁ ଚାମଚରେ ଖିଆଯାଏ । ଅବସର ଗ୍ରହଣ କରୁଥିବା ଓ ବଦଳି ହେଉଥିବା ଅଧକ୍ଷମାନଙ୍କୁ କ୍ଳବର ସ୍ୱତନ୍ତ୍ର ଅନୁଷ୍ଠାନରେ ଉପହାର ଓ ମାନପତ୍ରସହ ସମ୍ବର୍ଦ୍ଧିତ କରାଯାଏ । କ୍ଳବର ସବୁଠାରୁ ବଡ଼ ସାମାଜିକ ସମାବେଶ ହେଉଛି Summer vacationର ଠିକ୍ ପୂର୍ବରୁ College Hall ରେ ସଂଧ୍ୟାରେ ପାଳିତ ହେଉଥିବା Annual Day । ଅଧ୍ୟାପକ ଅଧ୍ୟାପିକାମାନେ ସପରିବାର ସେଇ ଉତ୍ସବରେ ଯୋଗ ଦିଅନ୍ତି ଓ ମଞ୍ଚ ଉପରେ ନିଜ ପିଲାମାନଙ୍କର କଳାତ୍ମକ ପ୍ରତିଭା (ନାଚଗୀତି ଆଦି) ଦେଖାଇଥାନ୍ତି । ଥରେ ଇତିହାସର ଅଧ୍ୟାପକ ଦୟାନିଧି ପାଢୀ ତାଙ୍କ ପତ୍ନୀଙ୍କ ସହ ମଞ୍ଚ ଉପରେ ଏକ ଦ୍ୱୈତଗାନ ପରିବେଷଣ କରିଥିଲେ । House Wife ମାନଙ୍କ ପାଇଁ ମଞ୍ଚରେ ଅନୁଷ୍ଠିତ ହୁଏ Musical Chair । ବିଜୟିନୀ ପୁରସ୍କାର ମଧ ପାଆନ୍ତି । ମାସଧରି ଚାଲିଥିବା Chess, Card ଓ Carromର Champion ଓ Runners Upଙ୍କୁ ବଡ଼ବଡ଼ କପ ଦେଇ ପୁରସ୍କୃତ କରାଯାଏ । ଏଇ ପୁରସ୍କାରର ଶୈଳୀ ଭିନ୍ନ । ଅଧ୍ୟାପକ/ଅଧ୍ୟାପିକାମାନେ ବିଭିନ୍ନ କପକୁ Sponsored କରିଥାନ୍ତି । ବିପୁଳ କରତାଳି ମଧ୍ୟରେ Sponsor କରିଥିବା ଦମ୍ପତି ମଞ୍ଚ ଉପରକୁ ଯାଇ ଅଧକ୍ଷଙ୍କୁ ଉକ୍ତ କପଟି ଦିଅନ୍ତି ଓ ପୁରସ୍କୃତ ହେଉଥିବା ଅଧ୍ୟାପକ ସପତ୍ନୀକ ଉକ୍ତ କପଟିକୁ ତାଙ୍କ ଠାରୁ ଗ୍ରହଣ କରନ୍ତି । ଥରେ ପ୍ରଫୁଲ୍ଲ କୁମାର ମିଶ୍ର (ପୂର୍ବତନ D.H.E.) ସେଠାରେ ଗଣିତ ମୁଖ୍ୟ ଥିଲାବେଳେ ଏତେ ଗୁଡ଼ିଏ କପ ପାଇଥିଲେ ଯେ ତାଙ୍କ ପତ୍ନୀ ଭାବବିହ୍ୱଳିତା ହୋଇ ପଡ଼ିଥିଲେ । ଏସବୁ କାର୍ଯ୍ୟକ୍ରମ ପରେ

ସମସ୍ତେ ଏକ ଆକର୍ଷଣୀୟ ଭୋଜିରେ ଯୋଗଦେଇ ବିଳମ୍ବିତ ରାତିରେ ଘରକୁ ଫେରନ୍ତି । ଗୋଟିଏ ଶିକ୍ଷାବର୍ଷ ପାଇଁ ଏହି ଉତ୍ସବରେ କ୍ଲବର ସବୁ ଅନୁଷ୍ଠାନର ଯବନିକା ପଡ଼ିଯାଏ । ଚଳଚଞ୍ଚଳ ହେବାପାଇଁ କ୍ଲବ ପୁଣି ଅପେକ୍ଷା କରେ ପରବର୍ତ୍ତୀ ଶିକ୍ଷାବର୍ଷକୁ ।

Proffesors' Clubର ଏଭଳି ଅନୁଷ୍ଠାନମାନ ଏବେ ବି ଉଣାଅଧିକେ ଚାଲୁ ରହିଛି । ଏଇ ୨୦୦୩ ଜାନୁଆରୀ ମାସ କ୍ଲବ ମଞ୍ଚସ୍ଥ କରିଥିଲା ନାଟକ 'ଭୂତ ନୁହେଁ ଅଭୁତ' । ଅଧ୍ୟାପକ ପ୍ରକୋଷ୍ଠ ଆଲୁମିନି ଆସୋସିଏସନ ସହୟତାରେ ନବନିର୍ମିତ Jubilee ଭବନକୁ ସ୍ଥାନାନ୍ତିରତ ହେବାଦ୍ୱାରା Clubର ବହୁମୁଖୀ କାର୍ଯ୍ୟକ୍ରମ ପାଇଁ ଏବେ ଅଧିକ ସୁବିଧା ଓ ସୁଯୋଗ ସୃଷ୍ଟି ହୋଇଛି । ଅଧ୍ୟାପକ/ଅଧ୍ୟାପିକା ମାନଙ୍କ ମଧ୍ୟରେ ବୌଦ୍ଧିକ ଓ ସାମାଜିକ ସମ୍ପର୍କକୁ ବଳିଷ୍ଠ କରିବା ସାଥେସାଥେ ଏହି କ୍ଲବ ଛାତ୍ର ଓ ଅନ୍ୟ କର୍ମଚାରୀଙ୍କ ଉପରେ ସୁପ୍ରଭାବ ପକାଇଥାଏ । ପରିଣାମ ସ୍ୱରୂପ ଅଧକ୍ଷ କଲେଜ ପରିଚାଳନାରେ ସହକର୍ମୀମାନଙ୍କର ବିପୁଳ ସହଯୋଗ ପାଇଥାନ୍ତି । ଆଜିକାଲି ଉଚ୍ଚଶିକ୍ଷାୟତନ ମାନଙ୍କରେ ସଂପର୍କହୀନତାର ନକାରାତ୍ମକ ପିରବେଶ ଗଢ଼ି ଉଠୁଥିବାବେଳେ ଏହି କ୍ଲବ କଲେଜ ପ୍ରଶାସନ, ଅଧ୍ୟାପକ ଓ ଛାତ୍ରମାନଙ୍କର ତ୍ରିଭୂଜୀୟ ସଂପର୍କକୁ ଅଧିକ ଅନ୍ତରଙ୍ଗ କରିଥାଏ । କ୍ଲବର କାର୍ଯ୍ୟକ୍ରମକୁ ରଚନାତ୍ମକ ଭାବେ ଅଭିଭାବକ ଓ ଜନସାଧାରଣଙ୍କ ପାଖକୁ ନେଇ ପାରିଲେ ଏଇ ତ୍ରିଭୂଜୀୟ ସଂପର୍କ ଚତୁର୍ଭୂଜୀୟ ସଂପର୍କକୁ ପ୍ରସାରିତ ହୋଇ ପାରିବ । ଏଇ ସବୁ କୃତି ଓ ସମ୍ଭାବନାକୁ ନେଇ ଫକୀରମୋହନ କଲେଜର Professors' Club ଓଡ଼ିଶାର ଅନ୍ୟ ସମସ୍ତ କଲେଜ ପାଇଁ ନିଶ୍ଚୟ ଅନୁସରଣୀୟ ଓ ଅନୁକରଣୀୟ ।

• ଇଂରାଜୀ ବିଭାଗ,
ସରକାରୀ ମହିଳା କଲେଜ, ବାରିପଦା

# ଆଜିର ଏ ଅପରାହ୍ଣେ ସେ ତରୁଣ ସ୍ମୃତି

## ମଧୁସୂଦନ ଦାସ

ଫକୀରମୋହନ କଲେଜ ପାଖକୁ ଆସିଲେ ଏମିତି ଲାଗେ, ବହୁଦିନ ବାହାରେ ରହି ଯିବାପରେ ମୁଁ ଗାଁକୁ ଫେରିଛି; ଘରକୁ ଫେରିଆସିଛି । ହତା ଭିତରେ ପଶିଗଲେ ମା'କୋଳ । ଶାଗ ପଖାଳ, ସୁଖଦୁଃଖର ସ୍ମୃତିରେ ତୃଷାନିବାରଣ ପରି ପରିତୃପ୍ତି । ପଶିଲାବେଳେ ଘଂଟା ବାଜିଉଠିଲେ ମନେହୁଏ, ଶ୍ରେଣୀରୁ ଶ୍ରେଣୀକୁ ଚଳଚଂଚଳ କୋଳାହଳ ଭିତରୁ କେଉଁ ପିଲାକୁ ପଚାରିଦେବି, ''କେଉଁ ପିରିୟଡ଼ ଓଭର ହେଲା ?'' କେହି କହିଦେଇ ପାରେ, କେଡ଼େ ମଫସଲୀ, କେଉଁ ପିରିଅଡ଼ ହେଲା ଜାଣି ପାରୁନୁ ?'' ସେ ଡହରା କୁଆଡ଼େ ଜାଣିବ, ମୋ ପରି କେତେ ପିଲା କେତେ ଆଡୁ କେମିତି ଆସଂତି, ମୋ ସାଂଗ ଭୋଗରାଇଆମାନେ ଗାଁରୁ ପାଂଚଦଶ ମାଇଲ ବାଟ ଚାଲିଚାଲି ଆସି ବାଟଗ୍ରାମଠାରେ ତା'ପରେ କେନାଲ୍ ନୌକାରେ ଚିଡେଇ ନଈ ପାରିହୋଇ ବସ୍‌ରେ ରାଜଘାଟ, ପୁଣି ନୌକାରେ ସୁବର୍ଣ୍ଣରେଖା ପାରିହେଲା ପରେ ବସ୍‌ରେ ବାଲେଶ୍ୱର ଆସଂତି, ପଦବ୍ରଜେ ମେସ୍, ସେଇଠୁ କଲେଜ କେମିତି ଭାବି ପାରିବ, ପାଣି କାଦୁଅରେ କିଏ କେତେଥର କଚଡ଼ା ଖାଇଥିବ ? କେଉଁ ପିରିଅଡ଼ ସରିଲା ସହଜରେ ଜାଣିବା ପାଇଁ ବାଁହାତ କଚଟିକୁ ଚାହିଁଦେବା ସୁବିଧା କେତେଜଣଂକୁ ଅବା ମିଳୁଥିଲା ?

ଫାଟକ ନ ଟପୁଣୁ ଆପଣାପଣର ସ୍ମିତ ହସ -ହଲ୍ ଉଆନ୍, ହିତୈଷିଣୀ, ଆତ୍ମପରିଚୟ ଦଂଭ । ବାହାରେ ମଟର ସାଇକେଲ, ସ୍କୁଟର, ସ୍କୁଟି ଭିଉ ଯଦି ନଥାଂତା, ପୁଅଝିଅଙ୍କ କେତୋଟି ବାଇସାଇକେଲ୍ କେବଳ ଠିଆ ହୋଇଥାଂତା । ଏଠାରେ ଅଧ୍ୟାପନାରତ ମୋର କେତେଜଣ ଛାତ୍ରଛାତ୍ରୀ ହାବୁଡ଼ି ନଯାଆଂତି । ଦୁଇହଜାର ତିନି ଓ ଉଣେଇଶ ଶହ ବାଷଠି -ଛ'ଷଠି ଭିତରେ ବ୍ୟବଧାନ ଉଭେଇ ଯାଆଂତା; ମୁଁ ହୁଏତ ସୁଧାର ଛାତ୍ରଟିଏ ପରି ପିଲାଂକ ସାଂଗରେ ପଶିଯାଆଂତି, ଧସେଇ ପଶିବାରେ ପଛୁଆ, ପଛଆଡ଼େ ଗୋଟିଏ ସିଟ୍‌ରେ ବସିଯାଇ ଖାତାକଲମ ପ୍ରସ୍ତୁତ କରି ଅଧ୍ୟାପକଂକଠାରେ ଧ୍ୟାନ ଲଗାଇ ଦିଅଂତି । କୌଣସି ଅଧ୍ୟାପକଂକ ମଟର ସାଇକେଲ୍ ବା ସ୍କୁଟର ଥିଲା କିନା ମନେ ପଡୁନାହିଁ । ସାଇକେଲହିଁ କେବଳମ୍ । ବାଲେଶ୍ୱର ଜିଲ୍ଲାସ୍କୁଲ ହଲ୍ -ଫକୀରମୋହନ କଲେଜର ହଲ୍ ଉଆନ୍-ସଭାଗୃହ-ନାଟ୍ୟ ମଂଦିର-ଏବେ ଫକୀରମୋହନ ବିଶ୍ୱବିଦ୍ୟାଳୟର ପ୍ରି ଡିଗ୍ରୀ ପରୀକ୍ଷାଖାତା ମୂଲ୍ୟାୟନ କେଂଦ୍ର ଏଇ ହଲ୍‌ରେ ପଶିଛି ସେବାନିବୃତ୍ତ, ବରିଷ୍ଠତମ ମୁଖ୍ୟ ଇଂରାଜୀ ପରୀକ୍ଷକ ଭାବରେ, ହୁଏତ ଶେଷଥର ପାଇଁ ଟେବ୍‌ଲ ଉଆନ୍ ନିର୍ଦ୍ଦିଷ୍ଟ ହୋଇଛି ମଂଚ ତଳ ଡାହାଣ ପଟକୁ ପ୍ରଥମ ଧାଡ଼ିରେ । ଇଏ ତ ଠିକ୍ ସେଇ ଜାଗା ଯେଉଁଠି ମୁଁ ଗୋଟିଏ ପିରିଅଡ଼୍‌ରେ ବିନା ଠେଲାପେଲାରେ ବସିବା ସୁଯୋଗ ପାଇଯାଇଥିଲି । ମଂଚ ଉପରେ ରାଜନୀତି ବିଜ୍ଞାନର ଧୁରୀଣ ଅଧ୍ୟାପକ ରଘୁନାଥ ରାମ୍ । ରୋଲ୍‌କଲ୍ ଚାଲିଥାଏ । ଟେବ୍‌ଲ ଉପରେ ପ୍ରି-ୟୁନିଭର୍ସିଟି (ପ୍ରାକ୍ ବିଶ୍ୱ ବିଦ୍ୟାଳୟ) କଳା ଶ୍ରେଣୀର ପ୍ରିଟେଷ୍ଟ ଜି.କେ (General Knowledge-ସାଧାରଣ ଜ୍ଞାନ) ଖାତା ବିଡ଼ା । ସାର୍ କହିବେ କିଏ କେତେ ନଂବର ରଖିଛି । ପିଲାଙ୍କ ଆଂତକ ଥିଲା ସେ ପାଠ । ଏକାଦଶ ଶ୍ରେଣୀୟ ହାଇସ୍କୁଲ ପରେ ପ୍ରି.ୟୁ. ଆର୍ଟସ୍ ବା ପି.ୟୁ ସାଇନ୍‌ସ ଏକବର୍ଷ, ତା'ପରେ ଏକବର୍ଷିଆ ପ୍ରି-ଡିଗ୍ରୀ କଳା ବା ବିଜ୍ଞାନରେ ପ୍ରି-ପ୍ରଫେସନାଲ (Pre-Professional) ପଢ଼ା ହେଉଥିଲା, ଦୁଇ ବର୍ଷିଆ ଡିଗ୍ରୀ ପୂର୍ବରୁ । ଛାତ୍ରଛାତ୍ରୀମାନଙ୍କୁ ଦୁନିଆ ସଂପର୍କରେ ସାଧାରଣ ଭାବେ ଜ୍ଞାନୀ କରାଇଦେବା ପାଇଁ ପି.ୟୁ.ରେ ଥିଲା ଏକଶହ ନଂବର ଓ ତା'ପର ବର୍ଷ ପଚାଶ ନମ୍ବର ଜି.କେ. । ପାଠ୍ୟ ଇତିହାସ, ରାଜନୀତି

ବିଜ୍ଞାନ, ପଦାର୍ଥ ବିଜ୍ଞାନ, ରସାୟନ, ...., ଉଦ୍ଭିଦ ଓ ପ୍ରାଣୀବିଜ୍ଞାନ ଇତ୍ୟାଦିର ଅତି ପୁଷ୍ଟିକର ଖିଚୁଡ଼ି । ଅନେକେ ଅଂକ, ବିଜ୍ଞାନରୁ ମୁକ୍ତି ପାଇ କଳାପ୍ରେମୀ ହୋଇଯିବାକୁ, ଆଉ ଅନେକେ କଳା କଉତୁକ ଛାଡ଼ି ବିଜ୍ଞାନମନସ୍କ ପରୀକ୍ଷାପ୍ରମାଣବାଦୀ, ଡାକ୍ତର ଇଂଜିନିଅର ହେବାକୁ ହାଇସ୍କୁଲ ଖୋଳପା ଛାଡ଼ି ବାହାରି ଆସିଥିଲେ । ସମ୍ମିଶ୍ରିତ ପାଠ ସଭିଂକୁ ହୋଇଥିଲା ଯୋଗୀଘର ଢିଙ୍କି ।

କ'ଣ ହୋଇଥିବ ପରୀକ୍ଷା ଫଳ ? ଇତିହାସର ଘଟଣାବଳୀକୁ ବର୍ଣାଢ଼୍ୟ ଇଂରାଜୀରେ ପ୍ରାଣବଂତ କରି ଦେଉଥିଲେ ଅଧ୍ୟାପକ ଦୀପକ କୁମାର ଷଡ଼ଙ୍ଗୀ; ମଧୁର ଢଂଗରେ ବିଶ୍ଳେଷଣାତ୍ମକ ଉପସ୍ଥାପନା କରୁଥିଲେ ଅଧ୍ୟାପିକା ସମଲେଶ୍ୱରୀ ବର୍ଦ୍ଧନ ଓ ଅଧ୍ୟାପକ ଜଗନ୍ନାଥ ପଟ୍ଟନାୟକ । ବିଜ୍ଞାନ ଭାଗ ପଢ଼ାଉଥିଲେ ଜୀବ ବିଜ୍ଞାନବିଳାସୀ ଅଧାପକ ଜଗମୋହନ ପଟ୍ଟନାୟକ, ପଦାର୍ଥ ବିଜ୍ଞାନୀ ଅଧାପକ ଦୁର୍ଗାଦାସ ପଟ୍ଟନାୟକ, ଅଧାପକ ସାରଦାପ୍ରସାଦ ମହାନ୍ତି, ଅଧାପକ ଦୁର୍ଗା ଚରଣ ପତି ଓ ଅନ୍ୟମାନେ । ବିଖ୍ୟାତ ଲେଖକମାନଙ୍କର ଇଂରାଜୀ ମାଧମ ବହିଗୁଡ଼ିକ ଆମେ କେତେ ଜଣ ଛାତ୍ର ନିଷ୍ଠାପର ଭାବେ ଅଧୟନ କରୁଥିଲୁଁ । ଇତିହାସ ଛାତ୍ରଭାବେ ଫରାସୀ ରାଷ୍ଟ୍ରବିପ୍ଲବ ଓ ଆମେରିକା ମୁକ୍ତି ସଂଗ୍ରାମ ମୋ ମନରେ ରଂଗୀନ ଚଳଚିତ୍ର ଭଳି ଆଂକି ହୋଇ ରହିଥିଲା । ଏ ସବୁ ତ ମୁଁ ବିସ୍ତାରିତ ଭାବେ ନିର୍ଭୁଲ ଇଂରାଜୀରେ ଲେଖିଛି । ଭଲ ନଂବର ନ ଥିବ, ତଥାପି କଳା ଶ୍ରେଣୀରେ ଅଛନ୍ତି ଅତୁଲ ପ୍ରଧାନ, ସନାତନ ପଣ୍ଡା, ନିଶାକର ବେହେରା, ବଳରାମ ଦେ, ହରିହର ନନ୍ଦୀ ଏବଂ ଅନ୍ୟମାନେ । ଏଇ ହଲ୍‌ରେ କେତେ ବକ୍ତୃତା, ପ୍ରବନ୍ଧ ଓ ଚିତ୍ରାଙ୍କନ ପ୍ରତିଯୋଗିତା । ଉଚ୍ଚଶ୍ରେଣୀସ୍ତରରେ ବକ୍ତୃତାରେ ମୁରଲୀଧର ପଟ୍ଟନାୟକ, କୁଂଜରାୟ, ପୂର୍ଣ୍ଣଚନ୍ଦ୍ର ଦାସ, ପ୍ରହରାଜ ସତ୍ୟନାରାୟଣ ନନ୍ଦ ଇତ୍ୟାଦିଙ୍କ ପରେ ଆମମାନଙ୍କ ସ୍ତରରେ ଥାଏ ପ୍ରତିଯୋଗୀ ମହାରଥ, ବିଜ୍ଞାନ ଛାତ୍ର ରବି । ସେ ଭାଗ ନେଲେହିଁ ପ୍ରଥମ । ଆମ ଭାଗରେ ପଡୁଥିଲା ଦ୍ୱିତୀୟ, ତୃତୀୟ ପୁରସ୍କାର । ଆମେ କେତେଜଣ କଳା ଶ୍ରେଣୀର ଛାତ୍ର ଅନ୍ୟମାନଙ୍କ ନଜରରେ ପଡ଼ିବାର ଏକ କାରଣ ଥିଲା କେତେ ଜଣ ଅଧାପକଙ୍କ ପଢ଼ାଇବାର ଧାରା । ଡକ୍ଟର ଗୋଷ୍ଠବିହାରୀ କାନୁନ୍‌ଗୋ (ଯିଏ ପ୍ରଥମ ଶ୍ରେଣୀଠାରୁ ବିଶ୍ୱବିଦ୍ୟାଳୟ ଯାଏଁ ସବୁ ପରୀକ୍ଷାରେ ପ୍ରଥମ ସ୍ଥାନ ହାସଲ କରିଥିଲେ), ଅଧାପକ ଦୀପକ ଷଡ଼ଙ୍ଗୀ, ଅଧାପକ ରଘୁନାଥ ରାମ୍ ଏବଂ ଇଂରାଜୀ ଅଧାପକ ମହମ୍ମଦ ଫକିରୁଦ୍ଦିନ୍ । ଏହି ବନ୍ଦନୀୟ ଅଧାପକମାନେ ପୂର୍ବପାଠରୁ ପ୍ରତିଭାସଂଧାନୀ ପ୍ରଶ୍ନମାନ ପଚାରୁଥିଲେ । ଉତ୍ତର ଦେଇପାରୁଥିବା ଛାତ୍ରମାନେ ଶ୍ରେଣୀର ଯେଉଁଠି ବସିଥିଲେ ସୁଦ୍ଧା ଅଧାପକମାନେ ଅଙ୍ଗୁଳି ନିର୍ଦ୍ଦେଶ କରୁଥିଲେ । ଡକ୍ଟର କାନୁନ୍‌ଗୋଙ୍କ କ୍ଲାସ୍ ହେଉଥିଲା ଦୁଇ ନମ୍ବର ହଲରେ । ଉତ୍ତର ଦେଇପାରୁଥିବା ଛାତ୍ରମାନେ ହିଁ ଆଗଧାଡ଼ିରେ ବସିବାକୁ ସାହସ କରୁଥିଲେ । ସେମାନଙ୍କ ପାଇଁ ଆସନ ସୁରକ୍ଷିତ ରହିଯାଉଥିଲା । ଆଉ ଯେଉଁମାନଙ୍କ ପାଇଁ ଆଗଧାଡ଼ି ବା ଆଗରେ ଗୋଟିଏ ପଟକୁ ସ୍ଥାନ ସଂରକ୍ଷିତ ରହୁଥିଲା ସେମାନେ ହେଲେ-ଶକୁନ୍ତଳା ଶତପଥୀ, ପ୍ରତିମା ନନ୍ଦ, ଅନସୂୟା ପଟ୍ଟନାୟକ, ଅରୁଣା ଦାସ, ଅଞ୍ଜଳି ରଥ, ସାନ୍ତ୍ୱନା ଦତ୍ତ ଓ ସାନ୍ତ୍ୱନା ସାଇମନ୍‌ସ । ସେମାନଙ୍କୁ ଟ୍ୟୁଟୋରିଆଲ କ୍ଲାସ୍‌ରେ ସୁଦ୍ଧା କେହି କେବେ ପ୍ରଶ୍ନ କରିଥିବା କିମ୍ବା ସେମାନଙ୍କ ଭିତରୁ କେହି କିଛି ଉତ୍ତର ଦେଇଥିବା ପରି ମନେ ପଡୁନାହିଁ । ସଶକ୍ତିକରଣ ଚେତନା ଜାଗ୍ରତ ହେବାର ଚାରି ଦଶନ୍ଧି ପୂର୍ବର ସ୍ଥିତିରେ କାହାରିକୁ ଦୋଷ ଦେଇ ହେବନାହିଁ । ସେମାନଙ୍କୁ ଯେ ଆଦୌ ଗୁରୁତ୍ୱ ଦିଆଯାଉ ନଥିଲା, ଏପରି କଦାପି ନୁହେଁ, କେହିକେହି ଅଧାପକ ହାସ୍ୟୋଦ୍ଦୀପକ କଥା କହି ସେମାନଙ୍କ ଆଡୁ ହସ ଫିଟିଲା କି ନା ଅଙ୍କେ ଦେଖି ନେଉଥିଲେ ।

ହଁ, ଏକ ନମ୍ବର ହଲ୍‌ରେ ସେ ଦିନ ମୋତେ ଦୈବାତ୍ ଆଗ ସିଟ୍ ମିଳି ଯାଇଥିଲା । ଅଧାପକ ରାମ୍ ଖାତାବିଡ଼ା ଧରି ପଚାରିଲେ, " Where is Madhusudan Das?" ମୋର ହୃତ୍‌କମ୍ପ । କିଛି ଗଡ଼ବଡ଼ ହୋଇଯାଇଛି ? ଝିଂଗାସ ଶୁଣିବା ପାଇଁ ମୋର ମାନସିକ ପ୍ରସ୍ତୁତି ହେଉହେଉ ପ୍ରଶ୍ନର ପୁନରାବୃତ୍ତି

ହୋଇଗଲା । ସାରଙ୍କ ପାଦଠାରୁ କେତେ ପାହୁଣ୍ଡ ଦୂରରେ କାଠଉଚ ମଞ୍ଚ ତଳେ ମୋର ଖର୍ବ ଉପସ୍ଥିତି ବାରିବା ପାଇଁ ତାଙ୍କୁ ଆହୁରି କେତେ ସେକେଣ୍ଡ ଲାଗିଗଲା । ତା' ପରେ ସାର୍ ଘୋଷଣା କଲେ : ''Good. Madhusudan has secured the highest mark in G.K., amongst all students of both Arts an Science streams. Eightynine.'' (ବାଃ ! କଳା ଓ ବିଜ୍ଞାନ, ଉଭୟ ଶ୍ରେଣୀର ଛାତ୍ରମାନଙ୍କ ଭିତରେ ମଧୁସୂଦନ ସାଧାରଣ ଜ୍ଞାନରେ ସର୍ବୋଚ୍ଚ ନମ୍ବର ରଖିଛନ୍ତି-ଅଣନବେ ।) ବସି ପଡ଼ିଲା ବେଳକୁ ଆଶ୍ୱସ୍ତି ଓ ଆତ୍ମବିଶ୍ୱାସରେ ମୋର ଉଚ୍ଚତା ବଢ଼ିଉଠିଲା ପରି ଲାଗୁଥିଲା । କିଛିଦିନ ପାଇଁ କଲେଜ ପରିସରରେ ମୁଁ ଏକ ଦର୍ଶନୀୟ ପ୍ରାଣୀ ହୋଇଗଲି । ଟେଷ୍ଟ ଓ ବିଶ୍ୱବିଦ୍ୟାଳୟ ପରୀକ୍ଷାରେ ଅବଶ୍ୟ ଏ ପ୍ରଭା ନ୍ୟୂନ ହୋଇଯାଇଥିଲା ପଞ୍ଚସ୍ତରୀ ଓ ଏକସ୍ତରୀ ନମ୍ବରକୁ ।

ଉପର ଶ୍ରେଣୀର ବିଜ୍ଞ ଛାତ୍ରମାନେ ଡରାଇ ଦେଇଥାନ୍ତି ଯେ ଲଜିକ୍ ଏକ ଘୋଷାପାଠ, ବହୁତ ଗୁଡ଼ାଏ ସଂଜ୍ଞା (definition) ମୁଖସ୍ଥ ରଖି ପାରିଲେ ଯାଇ ଏ ବିଷୟରେ ବହୁତ ନମ୍ବର ରହିବ । ଡ: କାନୁନ୍‌ଗୋଙ୍କ ପ୍ରଥମ କ୍ଲାସରୁ ହିଁ ଏ ଧାରଣା ଓଲଟି ଗଲା । ସାର୍ ବୁଝାଇ ଦେଲେ : ଲଜିକ ଏକ ଅତି ଆକର୍ଷଣୀୟ ବିଦ୍ୟା, ସଂଜ୍ଞା ମୁଖସ୍ଥ କରିବାର ଆଦୌ ଆବଶ୍ୟକତା ନାହିଁ; ପାଠ ବୁଝିଗଲେ ତୁମେ ନିଜେ ସଂଜ୍ଞା ତିଆରି କରିଦେଇପାରିବ । ଆମେ ତାଙ୍କରି ପରାମର୍ଶ ଓ ପଦ୍ଧତି ଅନୁସରଣ କଲୁଁ । ପାଠଟା ଆମକୁ ମ୍ୟାଜିକ୍ ଭଳି ଲାଗିଲା । ଆମେ ଆଗଧାଡ଼ିଆ ଛଅ ସାତଜଣ ଅଶୀରୁ ନବେ ଭିତରେ ନମ୍ବର ରଖିଲୁଁ ।

ଇଂରାଜୀରେ ଫକିରୁଦ୍ଦିନ ସାରଙ୍କ ଦୃଷ୍ଟିଭଙ୍ଗୀ ଥିଲା ଏମିତି : ଜଣେ ପିଲା ଯଦି ଲେଖେ, The cow has four leg ମୁଁ ତାକୁ ଶୂନ୍ ଦେବି; ଆଉ ଜଣେ ଯଦି ଲେଖ, The cow has three legs, ତାକୁ ଦେବି ପଚାଶ ପ୍ରତିଶତ ନମ୍ବର । ଭାଷାଶୁଦ୍ଧତା ଉପରେ ଅଧିକ ଗୁରୁତ୍ୱ । ଅଧ୍ୟାପକ P.C.P.(ପୂର୍ଣ୍ଣଚନ୍ଦ୍ର ପଟ୍ଟନାୟକ) ଅଦୃଶ୍ୟ ରାଜ୍ୟରେ ଦୃଷ୍ଟି ନିବେଶ କରି verb ପୂର୍ବରୁ 'do' ଠେସ ଲଗେଇ ଲଗେଇ (ଯେମିତି We do find.) ପ୍ଲାଂଚେଟ କଲା ଭଳି ଧୀରେଧୀରେ ଗୋଟି ଗୋଟି ଉଚିତ ଶବ୍ଦ ଓହ୍ଲେଇ ଆଣୁଥିଲେ । କେତେକ ବିଭାଗରେ ଏମିତି ବି ଅଧ୍ୟାପକ ଥିଲେ ଯେଉଁମାନଙ୍କ ପାଠଦାନର ଧ୍ୟାନଯୋଗକୁ ଆମେ ତନ୍ଦ୍ରା-ବେଶ ବୋଲି ବୁଝୁଥିଲୁ । ଅଥଚ ଗମ୍ଭୀର ଜଣାପଡୁଥିବା-ଅଧ୍ୟାପକ ଶ୍ରୀ ଚନ୍ଦ୍ର ପଟ୍ଟନାୟକ ଓ ପ୍ରାଣଚଞ୍ଚଳ ଅଧ୍ୟାପିକା ନନ୍ଦିତା ଦେବୀ ଅର୍ଥନୀତିର କିଟିମିଟିଆ ଗ୍ରାଫ୍ ଓ ଟେବ୍‌ଲ୍ ପାଠକୁ ପ୍ଲେଟ୍‌ରେ ଢାଳିଢାଳି ସାନ ପିଲାଙ୍କୁ ଚା' ପରି ଆନନ୍ଦରେ ପିଆଇ ଦେଉଥିଲେ । ଇଂରାଜୀରେ ଥିଲେ ଏମିତି ଜଣେ, ଯାହାଙ୍କ ନାମ ସହିତ ଲାଗି 'ଅଧ୍ୟାପକ' ପଦହିଁ ଧନ୍ୟ ହୋଇଯାଇଥିଲା । ପ୍ରବନ୍ଧ, କବିତା, ଗଳ୍ପ, ଏକାଙ୍କିକା ଓ ଡିଗ୍ରୀ ଶ୍ରେଣୀରେ ନାଟକ ଯାହା ପଢ଼ାଇଲେ ଲାଗୁଥିଲା ସେଇଟାହିଁ ତାଙ୍କର ବିଶେଷ ପ୍ରିୟ ବିଷୟ; ସେଇଥିରେ ସେ ତଲ୍ଲୀନ; ତେଣୁ ବିଦ୍ୟାର୍ଥୀମାନଙ୍କୁ ମୁଗ୍ଧ କରି ଦେଉଥାନ୍ତି । ପି.ୟୁରେ ଗୋଟିଏ ପ୍ରବନ୍ଧ ଥିଲା 'The Mahatma's Matyrdom' । ୧୯୬୨ ମସିହାରେ ଏ ବିଷୟ ପଢ଼ାଇଲା ବେଳେ ୧୯୪୮ ମସିହା ଜାନୁଆରୀ ୩୦ ତାରିଖର ଦୈନିକ ଖବର କାଗଜ 'The Statesman' ର ପୃଷ୍ଠାଟିଏ ବହି ଭିତରୁ ବାହାରକରି ପଢ଼ିଦେଲେ । ସଂପାଦକୀୟ ସ୍ତମ୍ଭ ମଧ୍ୟଭାଗରେ ଗୋଟିଏ ମାତ୍ର ନାତିଦୀର୍ଘ କାବ୍ୟ, ଗାନ୍ଧିଜୀଙ୍କ ପ୍ରତି ଶ୍ରଦ୍ଧାଞ୍ଜଳି । ସାର୍‌ଙ୍କ ବସାକୁ ଯାଇ ସେ କାବ୍ୟଟି ଟିପି ଆଣି ମୁଁ ଉତ୍ତର ପ୍ରସ୍ତୁତିରେ ଲଗାଇଥିଲି । ସେଇ ଅଧ୍ୟାପକ ଥିଲେ ଅନନ୍ୟ ହାସ୍ୟ-ବ୍ୟଙ୍ଗ ସ୍ରଷ୍ଟା, ରସନିର୍ଝର ବକ୍ତା ବସନ୍ତ କୁମାର ଶତପଥୀ, ମୋ ଦୃଷ୍ଟିରେ ହାସ୍ୟରସର ଉତ୍ସକୂପ, ତାଙ୍କ ନିଜ ମତରେ '....ଏବଂ କାରୁଣ୍ୟର ସାଗର' ।

କ୍ଷୁଦ୍ରକାୟ ଅଥଚ ବିଶାଳ ନାମଧାରୀ ଇଂରାଜୀ ଅଧ୍ୟାପକ ଥିଲେ ବକ୍‌ସୀ ଜଗବନ୍ଧୁ ବିଦ୍ୟାଧର (ଭ୍ରମରବର) ମହାପାତ୍ର । ସଂକ୍ଷେପରେ ବି.ଜେ.ବି. । ଗଦ୍ୟମୟ ପ୍ରାଜ୍ଞ ବ୍ୟକ୍ତି । ୪୨ ବର୍ଷ ବୟସରେ ସେ କହୁଥିଲେ, ''I am an old man, I am 42 !'' ଇଂରାଜୀରେ ଅଧ୍ୟାପକ ମୀନକେତନ ପୁରୋହିତ,

ଅଧ୍ୟାପକ ମହାଜିତେଶ୍ୱର ଦାସ, ଅଧ୍ୟାପକ ବିୟତ୍‌କେଶ ତ୍ରିପାଠୀ, ରାଜନୀତି ବିଜ୍ଞାନ ପ୍ରାଧ୍ୟାପକ ଜେ.ଜେ. ମୋହନ ରାଓ, ଅଧ୍ୟାପକ ସୋମନାଥ ମିଶ୍ର (ଯିଏ ସମସ୍ତଙ୍କୁ 'ଆପଣ' କହୁଥିଲେ), ସଂସ୍କୃତରେ ଅଧ୍ୟାପକ କୃଷ୍ଣଚନ୍ଦ୍ର ଆଚାର୍ଯ୍ୟ, ଇତିହାସରେ ପ୍ରାଧ୍ୟାପକ ରାଜେନ୍ଦ୍ର କୁମାର (ପାନପିକ ବୁଲେଟ୍ ଭୟରେ ଯାହାଙ୍କ କ୍ଲାସରେ ଆଗ ସିଟ୍ ପ୍ରାୟ ଏଡ଼ାଇ ଦିଆଯାଇଥିଲା), ଗଣିତରେ ଅଧ୍ୟାପକ ପାଲିତ୍ (ଧୋତି-ପଞ୍ଜାବୀ-ଫ୍ରେନ୍‌ଚକଟ ଦାଢ଼ୀ) ଓ ଅଧ୍ୟାପିକା ସିନ୍ଧୁମତୀ ଦେବୀ, ଅର୍ଥନୀତିରେ ପ୍ରାଧ୍ୟାପକ ମେଜର ରାମଚନ୍ଦ୍ର ପଟ୍ଟନାୟକ ଓ ଅଧ୍ୟାପିକା ଶାନ୍ତି ଦାସ ଏବଂ ଓଡ଼ିଆରେ ଅଧ୍ୟାପକ ଗଙ୍ଗାଧର ବଳ ସମସ୍ତେ ଥିଲେ ଦକ୍ଷ ଓ ଆମର ସ୍ମରଣୀୟ ଶିକ୍ଷାଗୁରୁ ।

୧୯୬୩ ମସିହା ପ୍ରି-ୟୁନିଭରସିଟ ଆର୍ଟସ୍ ପରୀକ୍ଷାଫଳ ସେ ସମୟର ଗୁରୁମାନଙ୍କ ଗୁରୁତ୍ୱ ଓ ଛାତ୍ରମାନଙ୍କ ସାଧନାର ସ୍ମୃତି । ଓଡ଼ିଶାରେ ବତିଶ ଜଣ ପ୍ରଥମ ଶ୍ରେଣୀରେ ଉତ୍ତୀର୍ଣ୍ଣ ହୋଇଥିଲେ । ସେମାନଙ୍କ ମଧ୍ୟରେ ଫକୀରମୋହନ କଲେଜରୁ ଥିଲୁଁ ଆମେ ଛଅ ଜଣ : ଅତୁଲ ଚନ୍ଦ୍ର ପ୍ରଧାନ,ସନାତନ ପଣ୍ଡା, ନିଶାକର ବେହେରା, ପଞ୍ଚାନନ ବେହେରା, ହରିହର ନନ୍ଦୀ ଓ ମଧୁସୂଦନ ଦାସ । ୧୯୬୬ ମସିହାର ବି.ଏ. ପରୀକ୍ଷାଫଳ କଲେଜର ଗୌରବକୁ ତୁଙ୍ଗରେ ପହଞ୍ଚାଇ ଦେଇଥିଲା । ଅନ୍ୟମାନଙ୍କ ମଧ୍ୟରେ ସେ ଗୌରବର ଅଧିକାରୀ ଥିଲେ ଦୁଇଜଣ ଛାତ୍ର । ରବି, ରବିନାରାୟଣ ଦାସଙ୍କୁ ବିଜ୍ଞାନ ସୁହାଇ ନଥିଲା । ସେ ଡିଗ୍ରୀରେ ଚାଲି ଆସିଥିଲା କଳାକୁ । ରାଜନୀତି ବିଜ୍ଞାନ ଅନର୍ସରେ ସେଇ ରବି ଓ ଇତିହାସ ଅନର୍ସରେ ଅତୁଲ ଉତ୍କଳ ବିଶ୍ୱବିଦ୍ୟାଳୟରେ ପ୍ରଥମ ସ୍ଥାନ ହାସଲ କରିଥିଲେ । ପରେ ଏମ୍.ଏ.ରେ ମଧ୍ୟ ଉଭୟ ପ୍ରଥମ ହୋଇଥିଲେ । ତେବେ ବାଧ୍ୟତାମୂଳକ ଓଡ଼ିଆ (ଏମ୍.ଆଇ.ଏଲ୍.) ରେ ମୁଁ ଆମ କଲେଜରେ ସର୍ବୋଚ୍ଚ ଏବଂ ବିଶ୍ୱବିଦ୍ୟାଳୟରେ ଦ୍ୱିତୀୟ ସର୍ବୋଚ୍ଚ ନମ୍ବର ରଖିଦେଇଥିଲି । ପି.ୟୁ. ଫଳ ଆଉ ଏଇ ଓଡ଼ିଆ ନମ୍ବର, ଏତିକି ମୋ ଗରିବ ଗଣ୍ଡିଲିରେ ଗୌରବର ଅସରପି । ଓଡ଼ିଆ ଫଳର ମୂଳରେ ଥିଲା ମୋର ପିଲାଦିନରୁ ତିଆରି ହୋଇଥିବା ବହୁପଠନ ଅଭ୍ୟାସ, ଗୁରୁଜୀମାନଙ୍କ ପ୍ରେରଣା ଏବଂ ଥିଲେ ଯଶସ୍ୱୀ ଅଧ୍ୟାପକ ଚିନ୍ତାମଣି ବେହେରା ଓ କେତେକାଂଶରେ ଅଧ୍ୟାପକ ଅଭିନ୍ନ ଚନ୍ଦ୍ର ସାହୁ । ଚିନ୍ତାମଣି ସାରଙ୍କ ବ୍ୟାଖ୍ୟା, ବିଶ୍ଳେଷଣରେ ପ୍ରତିଫଳିତ ହେଉଥିଲା ତାଙ୍କ ଜ୍ଞାନର ବ୍ୟାପ୍ତି ଓ ଗଭୀରତା । ଯିଏ ଯେତିକି ଧ୍ୟାନ ଲଗାଇ ପାରୁଥିଲା, ସ୍ମରଣରେ, ସଂଗ୍ରହରେ ସଫଳ ହେଉଥିଲା, ସେତିକି ଧନ୍ୟ ହେଉଥିଲା ତା' ବିଦ୍ୟାର୍ଥୀ ଓ ଭାଷା-ସାହିତ୍ୟପ୍ରେମୀ ଜୀବନ ।

କୃତବିଦ୍ୟ ବିଦ୍ୟାର୍ଥୀମାନଙ୍କୁ ସ୍ମରଣ କଲାବେଳେ ବାରମ୍ବାର ଗୋଟିଏ ଚେହେରା ମୋ ମାନସ-ପଟରେ ଉଭାସିତ ହୁଏ । ଫୁଲସାର୍ଟ ତଳେ ପାଦଯାଏ ଧୁତି କୁଞ୍ଚକାନି ଝୁଲୁଥାଏ । ମୋ ଜାଣିବାରେ ତା'ର ସଦା ସରସ ମୁହଁ, ଆପଣେଇ ନେବା ଚାହାଣି କେବେହେଲେ ରୁକ୍ଷ ବା ରୋଷ ଅହମିକାରେ ଅସନା ହୋଇ ନଥିଲା । ଜଣେ ଛାତ୍ରନେତାର ଏପରି ମୁହଁ, ଚିଂତା କରଂତୁ ତ ! ନିର୍ବାଚନ ଫଳାଫଳ ସଂପର୍କରେ ଅବିଚଳ । ସ୍ଥିତଧୀ । ଛାତ୍ରସଂସଦର ସଭାପତି ପ୍ରାର୍ଥୀ ରବିନାରାୟଣ ଦାସ । ସବୁ ଛାତ୍ରଛାତ୍ରୀଂକୁ ଭୋଟ ପାଇଁ ନିବେଦନ କରିବା ପ୍ରାର୍ଥୀର କର୍ତ୍ତବ୍ୟ । ମହିଳା କମନ୍‌ରୁମ୍‌କୁ ଯାଇ ଛାତ୍ରୀମାନଂକ ଭିତରେ ନିଜର ଓ ଦଳର ପ୍ରଚାର କରିବାରେ ରବିର ଆପତ୍ତି ନଥାଏ । କିଂତୁ ସାଧାରଣ ସଂପାଦକ ପ୍ରାର୍ଥୀ ଅରୁଣ ଦେଂକର ଅଦ୍ଭୁତ ଖିଆଲ । ସେ ଆମ ତଳ ଶ୍ରେଣୀର ଛାତ୍ର ଥିଲେ । ସେ ପ୍ରତ୍ୟେକ ମେସ୍‌ରେ, ହଷ୍ଟେଲରେ ଛାତ୍ରମାନଂକର ଅସୁବିଧା ବୁଝି ସୁଧାରିବା ଚେଷ୍ଟା କରୁଥିଲେ । ନୂଆ ପିଲାମାନଙ୍କର ରହିବା ବ୍ୟବସ୍ଥା କରିଦେଉଥିଲେ । ତାଂକର ଖିଆଲ : ଝିଅମାନଙ୍କୁ କହିବାକୁ ଯିବିନାହିଁ । ଭୋଟଗଣନା ବେଳେ ଦୁଇ ପ୍ରାର୍ଥୀଂକ ଚେହେରାରେ ତାରତମ୍ୟ ବାରି ହୋଇ ପଡୁଥିଲା । ଗଣନା ଚାଲିଛି । ବାହାରେ ପ୍ରାର୍ଥୀମାନଂକ ପାଖକୁ ଖବର ଆସୁଛି; ମିଶାଣ ଚାଲିଛି । ଫଳ ଯାହାହେଲେ ଗୋଟାଏ ହେବ; ରବି ଅବିଚଳ । ଆତ୍ମବିଶ୍ୱାସରେ ନିଶ୍ଚିନ୍ତ ମଧ୍ୟ । ଅରୁଣଂକ

ମୁହଁରେ ଆଶଂକାର ବାଦଲ; ମୋଟା ଚଷମା ତଳେ ଆଖି ଚଳ ଚଟଂଳ । ବିଜୟ ବାର୍ତା ଅପସୃୟମାନ ଅରୁଣଂକ ପାଖରେ ପହଂଚାଇ ଦିଆ ଯାଇଥିଲା । ବିଜୟରେ ରବିର ପ୍ରତିକ୍ରିୟା କେବଳ ସ୍ମିତ ହସଟିଏ । ସେ ଆଜି ସିନିୟର ଆଇ.ଏ.ଏସ୍. ଅଫିସର ।

ରବି ଓ ଅରୁଣଂକ ପରବର୍ତ୍ତୀ ଜୀବନକୁ ଦେଖିଲେ ସେ ସମୟର ଛାତ୍ରନେତୃତ୍ୱର ଉଚ୍ଚତା ସଂପର୍କରେ ଧାରଣା କରିହୁଏ । ଛାତ୍ର ରାଜନୀତି ଲଢ଼େଇ ବ୍ୟକ୍ତିଗତ ସଂପର୍କର ତିକ୍ତତା ସ୍ତରକୁ ନ ଓହ୍ଲେଇବାର ଅନେକ ନମୁନା ଭିତରେ ମନେ ପଡନ୍ତି ଦୁଇଜଣ ନେତା । ଦୁଇ ପରସ୍ପର ବିରୋଧୀ ଅଗ୍ନିମୁଖ ପ୍ରଚାରକ ଅକ୍ଷୟ ଦାସ ଓ ବିରଂଚି ବାବୁ । ଉପର ଓଳି ଉତ୍ତର ଛାତ୍ରାବାସରେ ଦେଖାଯାଉଥିଲା, ଦୁଇଜଣ ଗୋଟିଏ ଥଳିରେ ମୁଢ଼ି ବୁଟଡାଲ୍ଲି ପକୁଡ଼ି ଚୋବାଉଛନ୍ତି ।

୧୯୬୬ ମସିହା ଛାତ୍ରସଂସଦର ବାର୍ଷିକ ଉତ୍ସବ ସ୍ମରଣୀୟ ହୋଇ ରହିଛି । ହଲ୍ ଉଆନ୍ ଓ ବର୍ତ୍ତମାନର ପ୍ରଶାସନ କ୍ଲବ ମଝିରେ ଜନାକୀର୍ଣ୍ଣ ସଭାରେ ସଭାପତି ରବି । କଲେଜର ଅଧ୍ୟକ୍ଷ ଖଦଡ଼ ଧୂତି ପଞ୍ଜାବୀ ପରିହିତ ଅଜୟ ଚନ୍ଦ୍ର ବୀର, ବାଲେଶ୍ୱରର ଅଭିଭାବକ ସଦୃଶ ସ୍ୱାଧୀନତା ସଂଗ୍ରାମୀ ରବୀନ୍ଦ୍ରମୋହନ ଦାସ ଓ ଅନେକ ମାନ୍ୟଗଣ୍ୟ ବ୍ୟକ୍ତି ଉପସ୍ଥିତ । ମୁଖ୍ୟ ଅତିଥି ଥିଲେ ଜୟପ୍ରକାଶ ନାରାୟଣ ।

କଲେଜର ସାରସ୍ୱତ ସାଂସ୍କୃତିକ ବାତାବରଣରେ ଉଷ୍ମତା କେବେ ଊଣା ପଡୁ ନଥିଲା । ପ୍ରତିମାସ ଥରେ ଦୁଇଥର କୌଣସି ଏକ ବିଷୟରେ ବୌଦ୍ଧିକ ଚର୍ଚ୍ଚା କରିବା ପାଇଁ ପ୍ରବୁଦ୍ଧ ବ୍ୟକ୍ତିମାନେ ନିମନ୍ତ୍ରିତ ହୋଇ ଆସୁଥିଲେ । ସେଇ କ୍ରମରେ ଆସିଥିଲେ ଡ: ଶ୍ରୀରାମଚନ୍ଦ୍ର ଦାଶ, ଡ: ସଦାଶିବ ମିଶ୍ର, ଡ: ମନ୍ମଥ ନାଥ ଦାସ, ଡ: ବୈଦ୍ୟନାଥ ମିଶ୍ର, ଗାନ୍ଧିକ ପ୍ରାଧ୍ୟାପକ ରାଜକିଶୋର ରାୟ, ପ୍ରାଧ୍ୟାପକ ବୈଦ୍ୟନାଥ ରଥ, ପ୍ରାଧ୍ୟାପକ ଶ୍ରୀମଂତ ସାହୁ, କାଥାକାର ମନୋଜ ଦାସ ପ୍ରମୁଖ । ବକ୍ତୃତା ଶେଷରେ ପ୍ରଶ୍ନ କରିବାର ସୁଯୋଗ ରହୁଥିଲା । ନୃତ୍ୟସଂଗୀତ ଆକର୍ଷଣମୁକ୍ତ ସେଇ ସବୁ ସଭାରେ ଛାତ୍ରଛାତ୍ରୀ ଓ ଆଗ୍ରହୀ ସୁଧୀଜନେ ଭର୍ତ୍ତି ହୋଇଯାଉଥିଲେ । ବାର୍ଷିକ ନାଟକ ଉତ୍ସବ ସାଙ୍ଗକୁ ଏକାଂକିକା ଓ ଚିତ୍ରାଙ୍କନ ପ୍ରତିଯୋଗିତା ହେଉଥିଲା । ବକ୍ତୃତା ଓ ପ୍ରବନ୍ଧର କୌଣସି ପ୍ରତିଯୋଗିତା ଚିତ୍ରାଙ୍କନ ପ୍ରତିଯୋଗିତା ବେଳେ ମୋ ସାଙ୍ଗରେ ନ ଥିଲେ । ଦରଫୁଟା ଚିତ୍ରକରମାନଙ୍କ ଗୋଷ୍ଠୀ ଥିଲା ଅଲଗା । ଆଜିକାଲି କଲେଜମାନଙ୍କରେ ହେଲା ଭଳି ନାଟ୍ୟ ସଂସଦ ବାର୍ଷିକ ଉତ୍ସବ ନାଁରେ ପରପୋଷା ମେଲୋଡ଼ି ବା ମେଲୋଡ଼ିର ପେରୋଡ଼ି ହେଉ ନଥିଲା । ପିଲାମାନଙ୍କ ଭିତରେ ସୁପ୍ତ ଅଭିନୟ କଳାର ପରିପ୍ରକାଶ ପାଇଁ ଏକାଧିକ ନାଟକ ମଞ୍ଚସ୍ଥ କରାଯାଉଥିଲା । ନାଟକ କଥା କହିଲାବେଳେ ଦୁଇଜଣ ଅଭିନେତା ମନକୁ ଆସିଯାଆନ୍ତି । ଜଣେ ଶ୍ରେଷ୍ଠ ଅଭିନେତା, ପରବର୍ତ୍ତୀ କାଳରେ ମଞ୍ଚ ଓ ସିନେମାର ସଫଳ ଅଭିନେତା-ନିର୍ଦ୍ଦେଶକ ହିଂମାଂଶୁ ଦାସ । ଅନ୍ୟଜଣେ 'ମଲାଜହ୍ନ' ନାଟକର ନାୟକ ନାଥନନା ଭୂମିକାରେ ବଂଧୁ ଗୌରାଂଗ ଚରଣ ଦାସ । ଛାତ୍ର ରାଜନୀତି, ଜଳ ତାରତମ୍ୟ ଅତିକ୍ରମି ଆମର ଘନିଷ୍ଠ ବନ୍ଧୁତା । ଦିନେ ଶୁଣିବାକୁ ପଡ଼ିଲା, ପ୍ରେମିକାର ପ୍ରତାରଣା ସହି ନପାରି ଗୌରାଂଗ ଆତ୍ମହତ୍ୟା କରିଦେଇଛି । ଈଷତ୍ ଟେରା, ସିନେମା ଜଗତର ଗୁରୁଦତ୍ତଂକ ପରି ସେ ଚେହେରା; ଦିନ ଯେତେ ବିତିଗଲେ ବି ସେମିତି ଝଟକିଛି ।

ସ୍ନେହ ସଦିଚ୍ଛାର ଜୀବନ୍ତ ପ୍ରତିମା ଭାବରେ ମୋ ମନ ଖଟୁଲୀରେ କେତେ ଜଣ ଅଭିଷିକ୍ତ ହୋଇ ରହିଛନ୍ତି । ଜଣେ ହେଉଛନ୍ତି ଇତିହାସ ଅଧ୍ୟାପିକା ସମଲେଶ୍ୱରୀ ବର୍ଦ୍ଧନ । ସାହିତ୍ୟ ଓ ଇତିହାସ ମୋର ଅତି ପ୍ରିୟ ବିଷୟ । ଇଂରାଜୀ ଭାଷା ଶିଖିବାକୁ ହେଲେ ଇଂରାଜୀ ସାହିତ୍ୟ ଓ ଇତିହାସ ବହି ପଢ଼ିବାକୁ ହେବ । ବଡ଼ବଡ଼ ଇତିହାସ ବହି କିଣିବା ସମ୍ଭବ ନୁହେଁ । ମାଡାମଙ୍କୁ ମୋର ଆଗ୍ରହ ଓ ଅସାମର୍ଥ୍ୟ ଜଣାଇଲି । ମୁଁ ଯେଉଁ ବହି ଚାହିଁଲି ମାଡାମ୍ ଲାଇବ୍ରେରୀରୁ ଆଣିଦେଲେ । ତାଙ୍କର ଆଗ୍ରହ ଥିଲା ଓ ସେ ମୋ'ରି ଭଳି ନିଶ୍ଚିତ ଥିଲେ ଯେ ମୁଁ ଇତିହାସ ଅନର୍ସ ନେବି । ପ୍ରି-ଡିଗ୍ରୀ ପରୀକ୍ଷା ପରେ ଛୁଟିରେ ଆଗତୁରା ପଢ଼ି ପକାଇବା

ପାଇଁ ସେ ଗୁଡ଼ାଏ ବହି ଆଣି ଦେଇଥିଲେ । କିଂତୁ ମୋର ଇତିହାସ ଅନର୍ସ ପଢ଼ା ନହୋଇଲା । ଛୁଟିରେ ଜଣା ପଡ଼ିଲା, ବହୁବର୍ଷର ବିରତି ପରେ ପୁଣି ଇଂରାଜୀ ଅନର୍ସ ଶ୍ରେଣୀ ଖୋଲିବ । ମୁଁ ଇଂରାଜୀ ଅନର୍ସ ନେଲି । ପାସ୍ ବିଷୟ ରହିଲା ଇତିହାସ ଓ ରାଜନୀତି ବିଜ୍ଞାନ । ମାଡାମ୍ ଯେତକ ବହି ଦେଇଥିଲେ, ଶେଷ ପରୀକ୍ଷା ପରେ ସାଇକେଲ୍‌ରେ ଲଦି ସଯତ୍ନେ ତାଙ୍କ ବାରବାଟୀସ୍ଥିତ ଘରେ ଫେରାଇ ଦେଇଥିଲି । ଅଧ୍ୟାପକ ଜଗନ୍ନାଥ ପଟ୍ଟନାୟକ ଓ ରାଜନୀତି ବିଜ୍ଞାନ ଅଧ୍ୟାପକ ପ୍ରଫୁଲ୍ଲ କୁମାର ରଥ କଟକରେ ମୁଁ ଏମ୍.ଏ. ପଢ଼ିବା ବେଳେ ମୋର ସ୍ଥାନୀୟ ଅଭିଭାବକ ଭାବେ ଯୋଗାଯୋଗ କରାଇ ଦେଇଥିଲେ ୟୁନିଭର୍ସି ପ୍ରତିଷ୍ଠାତା ଶ୍ରୀଯୁକ୍ତ ଗିରିଜା ଭୂଷଣ ପଟ୍ଟନାୟକଙ୍କ ସହିତ ।

୧୯୬୨ ମସିହାରେ କଲେଜର ବୀର ବୀରାଙ୍ଗନାମାନଙ୍କୁ ପ୍ରବଳ ଭାବରେ ସାମରିକ ତାଲିମ ଦିଆ ଯାଉଥିଲା । ଆମ ପ୍ରଧାନମନ୍ତ୍ରୀ ନେହୁରଙ୍କର ମାଓ-ସେ-ତୁଙ୍ଗ ଓ ଚାଓଏନ୍ ଲାଇଙ୍କ ସହିତ ହିନ୍ଦୀ-ଚୀନି ଭାଇଭାଇ ଭାବବିହ୍ୱଳତାର ପ୍ରତାରଣାପୂର୍ଣ୍ଣ ପରିଣତି ହୋଇସାରି ଥାଏ । ଭାରତ ଉପରେ ଚୀନ୍ ଆକ୍ରମଣ କରି ସହସ୍ରାଧିକ ବର୍ଗକିଲୋମିଟର ଅଞ୍ଚଳ ଦଖଲ କରି ସାରିଥାଏ । ସାରା ଦେଶରେ କଲେଜମାଙ୍କରେ ସୈନିକ ନିର୍ମାଣ ଯୋଜନା ଆରମ୍ଭ ହୋଇ ଯାଇଥିଲା । ଆମ୍ଭମାନଙ୍କୁ ସୈନିକ ଭାବେ, ନିକୁଛରେ ଖାଦ୍ୟ ଓ ଅନ୍ୟାନ୍ୟ ସରଞ୍ଜାମ ଯୋଗାଣକାରୀ ପଛୁଆ ବାହିନୀବାବେ ଯୁଦ୍ଧକ୍ଷେତ୍ରକୁ ଯିବାକୁ ପଡ଼ିପାରେ । ଏନ୍.ସି.ସି. ଓ ଏନ୍.ସି.ସି. (ଆର୍) ରେ ଛାତ୍ରଛାତ୍ରୀମାନଙ୍କୁ ତାଲିମ୍ ଦିଆଯାଉଥିଲା । ରବିବାର ସକାଳେ ଛାତ୍ରଛାତ୍ରୀ ସମସ୍ତଙ୍କର ସମବେତ ବ୍ୟାୟମ ଏବଂ ଉପରଓଳି କେବଳ ଛାତ୍ର କେଡେଟ୍‌ମାନଙ୍କ ପ୍ୟାରେଡ୍ ଓ ରାଇଫଲ୍ ପରିଚୟ ହେଉଥିଲା । ଅନ୍ୟ ସମୟରେ ତୃତୀୟ ବର୍ଷର ରାଇଫ୍‌ଲ ଚାଳନା ଶିକ୍ଷା ଦିଆଯାଉଥିଲା । ମାତ୍ର ଆପତ୍‌କାଳୀନସ୍ଥିତିରେ ଆମେ ପ୍ରଥମ ବର୍ଷରେ ତାହା ଅଭ୍ୟାସ କଲୁଁ । ସେ କାଳର ନିର୍ଜନ ଅଞ୍ଚଳ ସହଦେବଖୁଣ୍ଟାର ଚାନ୍ଦମାରି ପଦାକୁ ଆମେ ସୈନିକ ଗାଡ଼ିରେ ବୁହା ହୋଇ ଯାଉଥିଲୁ । ଅନେକ କେଡେଟ୍‌ଙ୍କ ବୁଲେଟ ଟାର୍ଗେଟ୍‌ର ସବୁ ବୃତ୍ତକୁ ଚକମା ଦେଇ ଶୂନ୍ୟେଶୂନ୍ୟେ କେଉଁ ଅଜଣା ମାର୍ଗରେ ହୁଏତ ସୀମାନ୍ତକୁ ଉଡ଼ିଯାଉଥିଲା । ପି.ୟୁ. ଶ୍ରେଣୀର ଦୁଇଜଣ କେଡେଟ୍, କଟିଆ (ଚିତ୍ତରଂଜନ ଦାସ) ଓ ମୁଁ ଏକ ଇଞ୍ଚ ବ୍ୟାସ ବିଶିଷ୍ଟ ଟାର୍ଗେଟ୍ କେନ୍ଦ୍ରରେ ପାଞ୍ଚଟି ଲେଖାଏ ବୁଲେଟ ଲାଛିଦେଇ ପ୍ରଥମ ହୋଇଗଲୁ । ସୈନ୍ୟ ବାହିନୀରୁ କେତେଜଣ ଜୱାନ ତାଲିମ୍ ଦେବାକୁ ଆସିଥିଲେ । ସେମାନେ ବୁଝୁଥିଲେ କେବଳ ହିନ୍ଦୀ । ଉପର ଓଳି କଲେଜ ପଡ଼ିଆରେ ପ୍ୟାରେଡ୍ ହେଉଥିଲା । ଗୋଟିଏ ସ୍କ୍ୱାଡ୍ ପଛଧାଡ଼ିରେ ଥିଲେ କେଡେଟ୍ ବଂଶୀଧର ପାତ୍ର । ସାବଧାନ ସ୍ଥିତିରେ ଥାଇ ସେ ବେଳେବେଳେ ଗୋଡ଼ ଝାଡ଼ିଝୁଡ଼ି ଦେଉଥିଲେ । ନିଷ୍ଠାପର ଇନ୍‌ସଟ୍ରକ୍ଟର ଦୁଇଥର ବିରକ୍ତ ହେଲେ । ଶେଷରେ ପଚାରିଲେ ''କ୍ୟା, କ୍ୟା ଗଡ଼ବଡ଼ ହେୟ ?'' ସଂକଟାପନ୍ନ ବଂଶୀବାକୁ କହିଲେ, ''ସରଦାରଜୀ, ସରଦାରଜୀ, ଏଠି ଯେଉଁ ନାଲି ପିମ୍ପୁଡ଼ି ଥା ନା ୟେ କଟ୍‌କଟ୍‌କି କାମୁଡ଼ି ଦେତା ହେୟ ।'' ସମସ୍ତେ ହସି ଉଠିଲେ । ସରଦାରଜୀ 'ant' 'bite' କିଛି ବୁଝି ନପାରି ''କ୍ୟା ହୁଆ, କ୍ୟା ହୁଆ ?'' ପଚାରିଲେ । ତା'ପରେ ଚାଲିଲା ଆମ ଉପରେ ''ଡାହିନେ ମୁଡ଼୍, ବାଁୟ ମୁଡ଼୍, ପିଛେ ମୁଡ଼୍, ସାମନେ୍ ଚଲ, ପିଛେ ଚଲ, କଦମ୍ ତାଲ'ର ପ୍ରଚଣ୍ଡ ଆକ୍ରମଣ ।

ଦିନେ ରବିବାର ସକାଳେ ସମବେତ ଡ୍ରିଲ ହେଉଥାଏ । ପଡ଼ିଆ ଭର୍ତ୍ତି କେଡେଟ୍ । ଆଗରେ ଛାତ୍ରୀମାନେ । ସେମାନଙ୍କର ଆଗରେ (ଏବର ପମ୍ପହାଉସ ପୂର୍ବପଟ) ଗୋଟାଏ ବଡ଼ ଟେବଲ୍ ଉପରେ ଜଣେ ଡ୍ରିଲ କରି ଦେଖାଉଥିଲେ । ଏକରେ ସେ ଡେଇଁପଡ଼ି ଦୁଇଆଡୁକୁ ଗୋଡ଼ହାତ ମେଲି ଦେଉଥିଲେ । ଦୁଇରେ, ଗୋଡ଼ ଯୋଡ଼ିଦେଇ ଏବଂ ଉପରକୁ ତାଳି ମାରି ଦୁଇହାତ ଯୋଡୁଥିଲେ । ତିନିରେ ଗୋଡ଼ ହାତ ମେଲି ଚାରିରେ ପ୍ରଥମ ଅବସ୍ଥାକୁ ଫେରୁଥିଲେ । କ୍ୟାପ୍‌ଟେନ୍ ଗୋପୀନାଥ ମିଶ୍ର, କ୍ୟାପ୍‌ଟେନ୍ ଦୁର୍ଗା ଚରଣ ପତି, ମେଜର ରାମଚନ୍ଦ୍ର ପଟ୍ଟନାୟକ ଓ ମେଜର ଧୀରେନ୍ଦ୍ର କୁମାର ନନ୍ଦ ପ୍ରମୁଖ ବୁଲିବୁଲି ଲକ୍ଷ୍ୟ କରୁଥାନ୍ତି ।

ସବୁ କେଡେଟ୍‌ଙ୍କୁ ଜାଣିବା, ନାମ ମନେ ରଖିବା, ସ୍ପଷ୍ଟ ଟାଇଁଟାଇଁ ଇଂରାଜୀରେ ହୁକୁମ୍ ଦେବା, ସବୁଥିରେ ଆଗୁଆ, ସମସ୍ତଙ୍କ ଶ୍ରଦ୍ଧାର ପାତ୍ର ଥିଲେ ମେଜର ଧୀରେନ୍ଦ୍ର ନନ୍ଦ । ସେ ଲକ୍ଷ୍ୟ କଲେ, କେଡେଟ୍‌ମାନେ ହସ ଦମନ ଚେଷ୍ଟା କରୁଛନ୍ତି । ଧାଇଁ ଆସି ବଜ୍ରନିର୍ଘୋଷ ଭଳି ଆଦେଶ ଦେଲେ , ''You– get down; run back to hostel. Run.'' (''ଓହ୍ଲେଇ ଆସି । ହଷ୍ଟେଲକୁ ଦୌଡ଼ି ପଳାଅ । କଥା କ'ଣ କି, ସାଉଥ ହଷ୍ଟେଲବାସୀ ଆଣ୍ଡର ଅଫିସର ଅତି ତରତରରେ ୟୁନିଫର୍ମ ପିନ୍ଧିଲାବେଳେ ଅଣ୍ଡରୱେଆର ପିନ୍ଧିବାକୁ ଭୁଲି ଯାଇଥିଲେ; ଆଗରୁ ଟ୍ରାଉଜର ବୋତାମ ଗଳି ପଡ଼ିଥିଲା ।)

ଚୀନ୍ ଆକ୍ରମଣ ମୋ ପରି କେତେଜଣ ସାଦା କବିଙ୍କୁ ଦେଶଭକ୍ତ କବିରେ ପରିଣତ କରିଦେଇଥିଲା । ବୀର ଭାରତୀୟ ଜୱାନ୍‌ମାନଙ୍କ ହାତରେ ପ୍ରତାରକ ଚୀନାମାନେ ନିଶ୍ଚୟ ହାରିବେ,ଏପରି 'ଜାଗୃତି' ଏବଂ ଶହୀଦ୍ ସୈନିକ ପରିବାରରେ ନିସ୍ତବ୍ଧ 'ବାଷଠିର ଦୀପାବଳୀ', ଏମନ୍ତେ ମୋର ଦୁଇଟି କବିତା 'ମାତୃଭୂମି' ଓ 'ପ୍ରଜାତନ୍ତ୍ର'ରେ ବାହାରି ପଡ଼ିଥିଲା । ସେତେବେଳେ ଏକପ୍ରକାର ବୀରତ୍ୱଗାଥା ଖବରକାଗଜରେ ବାହାରିଲା । କଲେଜମାନଙ୍କରୁ ଅଳ୍ପ ତାଲିମପ୍ରାପ୍ତ ଉଦ୍‌ବୁଦ୍ଧ ବୀର ଯୁବକମାନେ ଟ୍ରେନ୍‌ରେ ସୀମାନ୍ତ ଅଭିମୁଖେ ଯାଉଥିଲେ । ଅନେକ ଷ୍ଟେସନରେ ଉଦ୍‌ବୁଦ୍ଧ ଦୋକାନୀମାନେ ବୀରଗଣଙ୍କୁ ମାଗଣାରେ ଫଳ, ଜଳଖିଆ ଦେଉଥିଲେ । ଲକ୍ଷ୍ୟସ୍ଥଳର ବହୁ ପୂର୍ବରୁ କମିକମି ଟ୍ରେନ ବୀରଶୂନ୍ୟ ହୋଇଯାଇଥିଲା । ପରେ ଜଣାଯାଇଥିଲା ବୀରବାହୁଡ଼ାରେ ସେମାନଙ୍କ ଘର ପୁଣି ହସି ଉଠିଛି । ମୁଁ ବୋଧହୁଏ ଏହିପରି ଗାଥାରେ ସଂକ୍ରମିତ ହୋଇଗଲି । ଦୁର୍ଗାପୂଜା ଛୁଟିରେ ରଂଗେଇଲୁଂଡାରେ ଏନ୍.ସି.ସି. କ୍ୟାମ୍ପ ହେବାର ଥାଏ । ମୁଁ ଯିବାପାଇଁ ନାମ ଦାଖଲ କରି ସାରିଥିଲି । କିନ୍ତୁ ପରେ ବୁଦ୍ଧିଆ ପିଲାମାନଙ୍କ ପରାମର୍ଶ ଗ୍ରହଣ କରି ଟେଲିଗ୍ରାମରେ ମାଙ୍କୁ ଅସୁସ୍ଥ କରାଇ ସହପାଠୀ ହରିହରକୁ ବିକଳ୍ପ ବୀର ଭାବେ ମେଜର ରାମପେଟୁ (କ୍ଷମା କରିବେ, ରାମଚନ୍ଦ୍ର ପଟ୍ଟନାୟକ)ଙ୍କ ପାଖରେ ଦାଖଲ କରିଦେଇ ଚମ୍ପଟ ମାରିଲି । କାରଣ ସେତେବେଳକୁ ଉତ୍ତର ବାଲେଶ୍ୱରିଆ, ବିଶେଷ ମୋ ଭଳି ଜଣେ ଭୋଗରାଇଆକୁ ଦାନରେ ହାତଘଣ୍ଟା ମିଳି ସାରିଥିଲା ।

ଫକୀରମୋହନଙ୍କ ମଲ୍ଲିକାଶପୁରସ୍ଥ ଶାନ୍ତିକାନନ ଓ 'ଫକୀରମୋହନ ସାହିତ୍ୟ ପରିଷଦ' ଆମକୁ ଫକୀରମୋହନ କଲେଜର ଅଂଶବିଶେଷ ଭଳି ମନେହେଉଥିଲେ । ସାହିତ୍ୟରସିକ, ଲେଖକ ଓ ଫକୀରମୋହନଙ୍କ ପ୍ରତି କୃତଜ୍ଞତାରେ ଆବଦ୍ଧ ଓଡ଼ିଆମାନେ ପରିଷଦରେ ଏକାଠି ହେଉଥିଲୁ । ଲେଖାପାଠ, ଆଲୋଚନା ଓ ସାନ୍ନିଧ ସମସ୍ତଂକ ପକ୍ଷେ ଉପାଦେୟ ସାବ୍ୟସ୍ତ ହେଉଥିଲା । କଲେଜରୁ ଆମେ ଯାଉଥିଲୁ,ମାନେ, ଅଧ୍ୟାପକ ଚିନ୍ତାମଣି ବେହେରା, ଅଧ୍ୟାପକ ବସନ୍ତ କୁମାର ଶତପଥୀ, କବି ପ୍ରହରାଜ ସତ୍ୟନାରାୟଣ ନନ୍ଦ, ରବି, ବଳରାମ, ଗୌରାଙ୍ଗ, ସୁଶାନ୍ତ ନନ୍ଦ ଓ ଅନ୍ୟମାନେ । ସହର ଭିତରୁ ଆସୁଥିଲେ ସର୍ବଶ୍ରୀ ହରିବଂଧୁ ଶତପଥୀ, ଜ୍ଞାନରଂଜନ ପଟ୍ଟନାୟକ, ଶରତ ଚନ୍ଦ୍ର ଦାଶ, ରାଜକିଶୋର ମହାନ୍ତି, ଶୁଭେନ୍ଦୁ ମୋହନ ଦାସ, ଚନ୍ଦ୍ର କୁମାର ମହାନ୍ତି, ସଂଗୀତଜ୍ଞ ସୁକୁମାର ସାହୁ, ସାମ୍ବାଦିକ ମିହିର ଆଚାର୍ଯ୍ୟ ଏବଂ ସେ କାଳରୁ ଏକାଳ ଯାଏ କବିକେନ୍ଦ୍ର 'ବିଶ୍ୱଶ୍ରୀ ପ୍ରେସ୍'ର ସେଇ ଯାହାଙ୍କୁ ମୁଁ ଶ୍ରଦ୍ଧାରେ କହେଁ ଭାଇନା, ଆମ ପ୍ରିୟକବି ବ୍ରଜନାଥ ରଥ ।ଏମାନେ କଲେଜର ସୁଖଦୁଃଖରେ ସଂପୃକ୍ତ ହେଉଥିଲେ ।

ବାଲେଶ୍ୱରବାସୀଙ୍କ ଉଦ୍ୟମରେ ଫକୀରମୋହନ କଲେଜ ପ୍ରତିଷ୍ଠିତ ହୋଇଥିବାରୁ ଆମେ ସେଠାରେ ଜୀବନଗଠନର ସୁଯୋଗ ପାଇଲୁ । ତେଣୁ ବାଲେଶ୍ୱରବାସୀଙ୍କର କିଛି ଉପକାର କରିପାରିବା ଆମ ପକ୍ଷେ ନିଶ୍ଚୟ ଏକ ଗୌରବ । ଆମେ ସେ ଗୌରବ ଏକ ଆନ୍ଦୋଳନ ମାଧ୍ୟମରେ ଅର୍ଜନ କରିଥିଲୁ

ଚୌଧୁରୀସାହିରେ ଲଗାଲଗି ତିନୋଟି ମେସ୍ : ମୋର ଚାରିବର୍ଷର ବାସଭବନ ଧଳାକୋଠା 'ଡି.ଏସ୍.ଏ.' (Day Scholars' Association) ମେସ୍, ନାଲିକୋଠା 'ବାଣୀଭବନ' ମେସ୍ ଓ ମୃତ୍ତିକା

ଭବନ 'ନୀଳଗିରି ମେସ୍' ପ୍ଲଫ୍ ରୋଡ଼ର ଉତ୍ତରପଟେ । ଦକ୍ଷିଣପଟେ, ଗଡ଼ଗଡ଼ିଆ ପୋଖରି ଆଡ଼ି (ହୁଡ଼ା) ରେ 'ଉତ୍କଳମଣି ମେସ୍' ଏବଂ ଟିକିଏ ପଶ୍ଚିମକୁ 'କଳିଙ୍ଗ ମେସ୍'' । ଚାନ୍ଦିପୁରରୁ ବାଲେଶ୍ୱର ରେଳଷ୍ଟେସନ, ପଟା ରିକ୍ସାରେ ପେଟିଭର୍ତ୍ତି ଇଲିସିର ସେଇଟା ହିଁ ଯାତ୍ରାପଥ, କଲିକତା ଅଭିମୁଖେ । ସାଉଥ୍ ହଷ୍ଟେଲରୁ ରିକ୍ସାରୁଢ଼ ଇଲିସି ପେଟିମାନ ଦୃଶ୍ୟମାନ । ମୋତିଗଞ୍ଜ ବଜାରକୁ ଇଲିସିର ଭିନ୍ନ ଯାତ୍ରାପଥ । ମେସ୍‌ରେ ଶାରଦୀୟ ବୁଢ଼ାବଳଙ୍ଗୀ ଡାଲି, 'ବଢ଼ି'ଆ ଆଳୁଝୋଳ, ଆଳୁ ହାତବୋମା ଓ ବୋଇତାଳୁମୟ ଘାଂଟ, ଯେକୌଣସି ଦୁଇପ୍ରକାର ସହିତେ ସପ୍ତାହବ୍ୟାପୀ ତ୍ରିବାର ଆମିଷ ଭୋଜନରେ ଜଣପିଛା ମାସିକ ଖର୍ଚ୍ଚ ପଡୁଥିଲା ଏକୋଇଶରୁ ସାଢ଼େ ବାଇଶ ଟଂକା । ତ୍ରିବାର ଆମିଷ ଭିତରେ ରହୁଥିଲା ଭାସମାନ ଇଲିଶି ଖଂଡ । ଇଲିଶିର କଲିକତା ଯାତ୍ରା ବଢ଼ିଯିବାରୁ ମୋତିଗଂଜ ମାଛବଜାରରେ ଦେଖାଦେଲା ଅଭୂତପୂର୍ବ ମୁଦ୍ରାସ୍ଫୀତି । ଇଲିଶି କେ.ଜି. ଆଠଅଣା ନ' ଅଣାରୁ ବା'ରଣା (୫୦ ପଇସାରୁ ୭୫ପଇସା) କୁ ଚଢ଼ିଗଲା । ବାଲେଶ୍ୱର ବଜାରରେ ମଧ୍ୟ ପ୍ରଚୁର ମିଳୁନାହିଁ । ଅସହ୍ୟ । ଆନ୍ଦୋଳନ ହିଁ ଏକମାତ୍ର ପନ୍ଥା

ଚଟ୍ଟଗ୍ରାମର ଅସ୍ତ୍ରାଗାରର ଲୁଣ୍ଠନ ଭଳି କର୍ମକାଣ୍ଡରେ ସବୁ ମେସ୍‌ରେ ଅନ୍ତେଃବାସୀ,ଆମ ମାଷ୍ଟରଦା ସୂର୍ଯ୍ୟସେନ୍ ଫେଡେରେଶନ ଓ ୟୁନିୟନ୍ ଦଳୀୟ ରାଜନୀତୀର ମତଭେଦ ଭୁଲି ଏହି ମହତ୍ ଇଲିଶି ଆନ୍ଦୋଳନରେ ଝାସଦେଲେ । ସ୍ପଷ୍ଟ ଦିବାଲୋକରେ ଗୁଡ଼ାଏ ପେଟି ଲୁଣ୍ଠନ କରି ସବୁ ମେସ୍ ଓ ନର୍ଥ ଓ ସାଉଥ୍ ହ୍ଷ୍ଟେଲରେ ଅସମ ବଣ୍ଟନ କରାଗଲା । ଆଉକେତେଗୁଡ଼ିଏ ରିକ୍ସା ମୋତିଗଂଜ ବଜାରକୁ ନେଇ ଇଲିଶି କେ.ଜି ଆଠଣା ଦରରେ ବିକ୍ରି କରି ଦିଆଗଲା । ଏକାଧିକବାର ଏପରି ହୁଅନ୍ତେ ଆନ୍ଦୋଳନକାରୀ 'ମେସିଆମାନଙ୍କ' ସହିତ ଜନସାଧାରଣ ମଧ୍ୟ ଇଲିଶିତୃପ୍ତ ହେଲେ । ପୂର୍ବସୁଖ ଫେରି ପାଇଲା ମୋତିଗଂଜ ବଜାର ।

ମଧୁବାବୁଙ୍କ ପରି କେହି ଯଦି ଏବେ ପୂର୍ବକଥା ପଚାରନ୍ତି, ମୁଁ କହିବି, ହଁ, 'ପୂରୁବ ଗୌରବ' 'ପୂରବ କୀରତି' ପଡୁଅଛି ମୋର ମନେ ।

• ଅବସରପ୍ରାପ୍ତ ଇଂରାଜୀ ପ୍ରାଧାପକ
ଦେଉଳାହାଟ,
ବାଲେଶ୍ୱର-୭୫୬ ୦୩୬

# ଛାତ୍ର ଜୀବନର କିଛି ସ୍ମୃତି:ଫକୀରମୋହନ କଲେଜରେ

## ମହେଶ୍ୱର ବାଗ

ଫକୀରମୋହନ କଲେଜର ଛାତ୍ରାବସ୍ଥା (୧୯୪୮ରୁ ୧୯୫୩) ଏକ ଅର୍ଦ୍ଧ ଶତାବ୍ଦୀର ଇତିହାସ । ସେତେବେଳେ ଏହାର ନାମ 'ବାଲେଶ୍ୱର କଲେଜ' ଥିଲା । ଛାତ୍ରସଂଖ୍ୟା ମଧ୍ୟ ସ୍ୱଳ୍ପ ଥିଲା । ପ୍ରାତଃ ଘ୬ଣ୍ଟାରୁ ଘ୧୧ଣ୍ଟା ପର୍ଯ୍ୟନ୍ତ କଲେଜ କ୍ଲାସ ଚାଲୁଥିଲା ଏବଂ ଘ୧୧ଣ୍ଟାରୁ ଜିଲ୍ଲା ସ୍କୁଲ କ୍ଲାସ ଆରମ୍ଭ ହେଉଥିଲା । କଲେଜର ଅଧ୍ୟକ୍ଷମାନେ ଜିଲ୍ଲା ସ୍କୁଲର ପରିଦର୍ଶକ ଭାବରେ ଦାୟିତ୍ୱ ତୁଲାଉଥିଲେ । ତେଣୁ କଲେଜ ଓ ସ୍କୁଲ ମଧ୍ୟରେ ଯଥୋଚିତ ସଂହତି ରହୁଥିଲା । ବର୍ତ୍ତମାନର ଦକ୍ଷିଣ ଛାତ୍ରାବାସଟି କେବଳମାତ୍ର ଗୋଟିଏ ଛାତ୍ରାବାସ ଥିଲା । ପ୍ରାୟ ୪୦ଜଣ ଛାତ୍ର ଏହି ଛାତ୍ରାବାସରେ ରହୁଥିଲେ । ବାକି ପିଲାମାନେ ବାହାରେ ମେସ୍ ବା ନିଜଘରେ ରହୁଥିଲେ । ମୁଁ ନିଜେ ମଧ୍ୟ ଆଇ.ଏ. ପଢୁଥିଲାବେଳେ ଅର୍ଡର ବଜାରରେ ଏବଂ ବି.ଏ.ବେଳକୁ ମୋତିଗଞ୍ଜ ଓ ନଲମ୍‌ଗଞ୍ଜ ମେସ୍‌ରେ ରହୁଥିଲି । ମୋର ଅନ୍ତରଙ୍ଗ ସହପାଠୀ ୰ରମେଶ ଦତ୍ତ ଏବଂ ବନମାଳୀ ଅଣ୍ଡିଆ ସହ ମୁଁ ନଲମ୍‌ଗଞ୍ଜ ଆରତି ମେସ୍‌ରେ ସାଙ୍ଗରେ ରହୁଥିଲୁ । ୰ରମେଶ ବାରିପଦା ସରକାରୀ ହାଇସ୍କୁଲରେ ଶିକ୍ଷକତା କରି ପରେ ସେଠାରେ ପ୍ରଧାନ ଶିକ୍ଷକ ହୋଇଥିଲା ଏବଂ ଅବସର ପରେପରେ ସ୍ୱର୍ଗାହରଣ କଲା ଏବଂ ବନମାଳୀ ଅଣ୍ଡିଆ ସମବାୟ ବିଭାଗରେ ଚାକିରୀ କରି ଅବସର ଗ୍ରହଣ ପରେ ପକ୍ଷାଘାତ ରୋଗରେ ପୀଡ଼ିତ ହୋଇ ପ୍ରାୟ ଦଶବର୍ଷ ହେବ ଅଚଳାବସ୍ଥାରେ ଅଛି । ଏମାନଙ୍କ ବ୍ୟତୀତ ବନ୍ଧୁ ସୁକୁମାର ନାୟକ (ପୂର୍ବତନ ନଗରପାଳ), ପ୍ରଶାନ୍ତ ଚାନ୍ଦ(ଆଡଭୋକେଟ) ମଧ୍ୟ ଆମର ସହପାଠୀ ଥିଲେ ଏବଂ ଦୁହେଁ ବର୍ତ୍ତମାନ ବାଲେଶ୍ୱର ସହରର ଗଣ୍ୟମାନ୍ୟ ବ୍ୟକ୍ତି । ଏମାନଙ୍କ ଛଡ଼ା ବିଜ୍ଞାନ ଶ୍ରେଣୀରେ ବନ୍ଧୁ ହରିହର ବାରିକ ଏବଂ ଡାକ୍ତର ରାଧାଦେବୀ ଆଇନ ଏବଂ ଚିକିତ୍ସା କ୍ଷେତ୍ରରେ ସୁନାମ ସହିତ ସହରରେ ପ୍ରତିଷ୍ଠିତ ବ୍ୟକ୍ତି ଭାବରେ ଅଛନ୍ତି ।

ଆମରି ସମୟରେ କଲେଜରେ ଛାତ୍ର ୟୁନିଅନ ସଂଗଠିତ ହୋଇଥିଲା ଏବଂ ଛାତ୍ରନେତା ଦୈତାରୀ ଦାସ ଏହାର ପ୍ରଥମ ସଭାପତି ନିର୍ବାଚିତ ହୋଇଥିଲେ । ତାପରେ ଶରତ ଚନ୍ଦ୍ର ପାଣିଗ୍ରାହୀ, ରାମଚନ୍ଦ୍ର ପଟ୍ଟନାୟକ, ମୁଲ୍ଲା ମହମ୍ମଦ ରସିଦ୍ ପ୍ରଭୃତି । ଛାତ୍ରନେତାମାନେ ଏହାର ସଭାପତି ପଦରେ ଅଧିଷ୍ଠିତ ହୋଇଥିଲେ । ଶ୍ରୀ ଶ୍ୟାମସୁନ୍ଦର ମହାପାତ୍ର ସେତେବେଳେ କଲେଜ ନିର୍ବାଚନରେ କିଙ୍ଗ୍ ମେକର ଭାବରେ କାର୍ଯ୍ୟ ସଂପାଦନା କରୁଥିଲେ ।

ଆମର ଅଧ୍ୟାପକ ଭାବରେ ସେତେବେଳେ ଓଡ଼ିଆରେ କୁଞ୍ଜବିହାରୀ ଦାଶ, ସିଦ୍ଧେଶ୍ୱର ହୋତା, ଜାନକୀ ବଲ୍ଲଭ ପଟ୍ଟନାୟକ, ବିକ୍ରମ ଜେନା, ଅର୍ଥଶାସ୍ତ୍ରରେ ରାମଚନ୍ଦ୍ର ପଟ୍ଟନାୟକ, ଶ୍ରୀରାମଚନ୍ଦ୍ର ଦାଶ, କ୍ଷେତ୍ରମୋହନ ପଟ୍ଟନାୟକ, ଦୟାନିଧି ପଟ୍ଟନାୟକ ଏବଂ ଦର୍ଶନ ଶାସ୍ତ୍ରରେ ହୀରାଲାଲ ଦେବନାଥ, ଗୋପାଳ ଚନ୍ଦ୍ର ପଟ୍ଟନାୟକ ପ୍ରଭୃତି ସ୍ମରଣକୁ ଆସୁଛନ୍ତି । ସେହିପରି ଇଂରାଜୀରେ କ୍ଷିତୀଶ ଚନ୍ଦ୍ର ଦେବ । ତ୍ରିଲୋଚନ ମିଶ୍ର, ବକ୍ସି ଜଗବନ୍ଧୁ ବିଦ୍ୟାଧର ମହାପାତ୍ର ରହୁଥିଲେ । ଅଧ୍ୟକ୍ଷ ଭାବରେ ଗିରିଜା ଶଙ୍କର ରାୟ, ବି.ଏନ୍ ରୋହାତ୍‌ଗୀ, ଘନଶ୍ୟାମ ଦାଶ, ଭି.ଭି. ଜନ୍, ପି.ଏସ୍, ସୁନ୍ଦରମ୍ ପ୍ରଭୃତି ବିଖ୍ୟାତ୍ ଅଧ୍ୟାପକମାନେ କାର୍ଯ୍ୟ କରୁଥିଲେ । ଛାତ୍ର ଏବଂ ଅଧ୍ୟାପକମାନଙ୍କ ମଧ୍ୟରେ ସେତେବେଳେ ଗୁରୁଶିଷ୍ୟର ସଂପର୍କ ଥିଲା ଏବଂ ଆମେ ଅଧ୍ୟାପକମାନଙ୍କ ଘରକୁ ଯାଇ ପାଠ ବିଷୟରେ ନିଜର ସଂଦେହ ଦୂର କରୁଥିଲୁ । ଅଧ୍ୟାପକ ସୁନ୍ଦରମ୍ ଆମ କଲେଜ ଜୀବନର ଶେଷ ଅଧ୍ୟକ୍ଷ ଥିଲେ । ଛାତ୍ର ଓ ଅଧ୍ୟାପକମାନଙ୍କ ମଧ୍ୟରେ ସୁସଂପର୍କ ସ୍ଥାପନ

ଏବଂ ଛାତ୍ରମାନଙ୍କର ବାସ୍ତବ ଜ୍ଞାନର ପରିସୀମା ବୃଦ୍ଧି ସକାଶେ ସେ କଲେଜରେ ପ୍ରଥମେ ଏକ୍ସଟ୍ରା ଟିଉଟରିଆଲ କ୍ଲାସ ବ୍ୟବସ୍ଥାର ପ୍ରବର୍ତ୍ତନ କରିଥିଲେ ଏବଂ ପ୍ରତ୍ୟେକ ଅଧ୍ୟାପକଙ୍କ ଦାୟିତ୍ୱରେ ୨୦/୨୨ଜଣ ବିଭିନ୍ନ ଶ୍ରେଣୀର ଛାତ୍ରଙ୍କୁ ନିୟୋଜିତ କରି ପାଠ୍ୟକ୍ରମ ବାହାର ବିଷୟରେ ଶିକ୍ଷାଦାନର ବ୍ୟବସ୍ଥା କରାଇ ଥିଲେ । ସେହି କ୍ଲାସ୍‌ର ଗୋଟିଏ ଆମୋଦଦାୟକ କଥା ମୋର ମନେ ପଡୁଛି । ଆମର ଏହି କ୍ଲାସ ଅର୍ଥଶାସ୍ତ୍ର ଅଧ୍ୟାପକ ଦାୟାନିଧି ପଟ୍ଟନାୟକଙ୍କ ଦ୍ୱାରା ପରିଚାଳିତ ହେଉଥିଲା । ଥରେ ସେ ପିଲାମାନଙ୍କର ବିବାହ ସଂପର୍କରେ କଥା ଉତ୍ଥାପନ କରି କିଏ କିପରି ବିବାହ ହେବାକୁ ଚାହେଁ ପ୍ରଶ୍ନ କରିଥିଲେ । କିଏ ସୁନ୍ଦର, କିଏ ଶିକ୍ଷିତା, କିଏ ଚାକିରିଆ ଓ କିଏ ଗୁଣବତୀ ଝିଅକୁ ବିବାହ କରିବାକୁ ଇଚ୍ଛା ପ୍ରକାଶ କରିଥିଲେ । କିନ୍ତୁ ଜଣେ ଝିଅ (ନାମ ମନେନାହିଁ) ଆଦୌ ବିବାହ କରିବେ ନାହିଁ ବୋଲି ନିଜର ମତବ୍ୟକ୍ତ କରିଥିଲେ । କାରଣ ସଂପର୍କରେ ଅଧ୍ୟାପକ ମହାଶୟ ପଚାରନ୍ତେ ଝିଅଟି ଉତ୍ତର ଦେଇଥିଲା ଯେ ସେ ପୁରୁଷଜାତିକୁ ଘୃଣାକରେ । ତାଙ୍କ ଉତ୍ତରରେ ଶ୍ରେଣୀର ସମସ୍ତେ ସ୍ତବ୍ଧ ହୋଇ ଯାଇଥିଲେ । ମୁଁ ସଙ୍ଗେସଙ୍ଗେ ଉଠି ଜବାବ ଦେଇଥିଲି ''ଆଜ୍ଞା ସେ କାହିଁକି ବିବାହ କରିବେନି ବୋଲି କହୁଛନ୍ତି ତାର ଗୋଟିଏ କାରଣ ଅଛି ।'' ସମସ୍ତେ ଉତ୍କଣ୍ଠାର ସହିତ 'କାହିଁକି' ବୋଲି ପଚାରନ୍ତେ ମୁଁ ଉତ୍ତର ଦେଇଥିଲି ଯେ ''ସେ ସୁନ୍ଦରୀ ହୋଇନଥିବାରୁ ତାଙ୍କୁ କେହି ବାହା କରିବେ ନାହିଁ ବୋଲି ଜାଣି ତା ପୂର୍ବରୁ ବାଟକାଟି ଚାଲି ଯାଉଛନ୍ତି ଏବଂ ପୁରୁଷ ଜାତିକୁ ଘୃଣା କରନ୍ତି ବୋଲି କହୁଛନ୍ତି ।'' ଏତିକିରେ ଶ୍ରେଣୀଗୃହରେ ଖୁବ୍ ଜୋର ହାସ୍ୟରୋଳ ଖେଳିଗଲା ଏବଂ ଅଧ୍ୟାପକ ମୋତେ ତାଗିଦ୍ କରି କହିଲେ ''ତୁମେ ଏପରି କହିବା ଉଚିତ ହେଲାନାହିଁ'' । ମୁଁ କହିଲି ସାର୍ ''ସେ ଯେତେବେଳେ ପୁରୁଷଜାତିକୁ ଘୃଣା କରନ୍ତି ବୋଲି କହିଲେ, ଆପଣ ତା'ର ପ୍ରତିବାଦ କଲେନାହିଁ; ବର୍ତ୍ତମାନ ମୋ ଉତ୍ତରରେ ପ୍ରତିବାଦ କରୁଛନ୍ତି କାହିଁକି ?'' ଏତିକିରେ ସବୁ ପୁଅମାନେ ହଟ୍ଟଗୋଳ ଆରମ୍ଭକରି ମୋ କଥାକୁ ଜବରଦସ୍ତ ସମର୍ଥନ ଜଣାଇଲେ ଏବଂ ଅଧ୍ୟାପକ ଶ୍ରେଣୀ କାର୍ଯ୍ୟ ସମାପନ ଘୋଷଣା କରି କକ୍ଷତ୍ୟାଗ କଲେ ।

ଅଧକ୍ଷ ସୁନ୍ଦରମ୍‌ଙ୍କର ଆଉ ଗୋଟିଏ ପ୍ରଶାସନିକ ବ୍ୟବସ୍ଥା ସେତେବେଳେ ସମଗ୍ର ରାଜ୍ୟରେ ହଟଚମଟ ସୃଷ୍ଟି କରିଥିଲା । ପରୀକ୍ଷା ସମୟରେ ତିନିଘଣ୍ଟା ଧରି କୌଣସି ପରୀକ୍ଷାର୍ଥୀଙ୍କୁ ପରିସ୍ରା କରିବାକୁ ବାହାରକୁ ନଛାଡ଼ିବା ପାଇଁ ଆଦେଶ ହେଲା । କାରଣ ସ୍ୱରୂପ ଅଧକ୍ଷ ଯୁକ୍ତି ଦର୍ଶାଇ ଥିଲେ ଯେ ବାହାରକୁ ଗଲେ ପିଲାମାନେ 'କପି' କରିବାର ସୁଯୋଗ ପାଇବେ । ଏହି ନିୟମ ବିରୁଦ୍ଧରେ ସମଗ୍ର ଛାତ୍ରସମାଜ ସ୍ୱର ଉତ୍ତୋଳନ କଲେ । କୁଳପତି, ରାଜ୍ୟପାଳ, ଶିକ୍ଷାମଂତ୍ରୀ, ମୁଖ୍ୟମଂତ୍ରୀ ସମସ୍ତଙ୍କୁ ଏ ବିଷୟରେ ଛାତ୍ରମାନେ ନିବେଦନ କଲେ । କିନ୍ତୁ କେହି କର୍ଣ୍ଣପାତ କଲେନାହିଁ । କହିଲେ, କଲେଜ ପରିସର ମଧ୍ୟରେ ଅଧକ୍ଷ ଯେଉଁ ନିୟମ କରିବେ ତାକୁ ଅନ୍ୟ କେହି ନାକଚ କରି ପାରିବେ ନାହିଁ । ଏଥିପାଇଁ ଅଧକ୍ଷଙ୍କ ମେରୀରାୟ ଶାସନ ବିରୁଦ୍ଧରେ ଛାତ୍ରମାନେ ହରତାଳ ପାଳନ କଲେ । କିନ୍ତୁ ଅଧକ୍ଷ କିଛିକିଛି ଛାତ୍ରନେତାଙ୍କୁ ଅକ୍ତିଆର କରି ହରତାଳ ବିଫଳ କରାଇଦେଲେ । ଛାତ୍ରମାନେ ଯେତେ ଯୁକ୍ତି କଲେ ଯେ ଭାରତୀୟ ଜଳବାୟୁରେ ଅଧିକ ପାଣି ପିଇଲେ ପରିସ୍ରା ନିଶ୍ଚୟ ହେବ ଏବଂ ତାକୁ ରୋକିହେବ ନାହିଁ । ଅଧିକନ୍ତୁ ଅଧିକାଂଶ ଗରିବ ପିଲା ପଖାଳ ଖାଇ କଲେଜକୁ ଆସନ୍ତି ଏବଂ ସେମାନେ ତିନିଘଣ୍ଟା ଧରି ପରୀକ୍ଷାରେ ପରିସ୍ରା ରୋଧ କରି ପାରିବେ ନାହିଁ । ତେଣୁ ଏ ନିୟମ ପ୍ରତ୍ୟାହାର କରାଯାଉ । ଅଧକ୍ଷ ସବୁବେଳେ କହୁଥାନ୍ତି ଯେ ବିଲାତରେ ଏହିପରି ନିୟମ ଅଛି । ତେଣୁ ଏଠାରେ କାହିଁକି ତାହା ହୋଇ ନପାରିବ । ଇଂଲଣ୍ଡ ଏବଂ ଭାରତବର୍ଷର ଓଡ଼ିଶାରେ ଯେ ଏକା ପରିସ୍ଥିତି ଓ ଜଳବାୟୁ ନୁହେଁ ସେ କଥା ଯେତେ ବୁଝାଇଲେ ମଧ୍ୟ ଅଧକ୍ଷ ଶୁଣିଲେ ନାହିଁ । ଶେଷରେ ଆମେ ସବୁ ଏକତ୍ରିତ ହୋଇ ଏହାର ଉପାୟ ବିଷୟରେ ଚିନ୍ତାକଲୁ । ଜଣେ କିଏ ପ୍ରସ୍ତାବ ଦେଲେ ଯେ ଯଦି ପରୀକ୍ଷା ହଲରେ ପରିସ୍ରା କରାଯାଇ ପାରିବ ତାହାଲେ ଏ ନିୟମ ଉଠିଯିବ । ସମସ୍ତେ

ଏକସ୍ୱରରେ ଏ ପ୍ରସ୍ତାବକୁ ସମର୍ଥନ କଲେ । କିନ୍ତୁ ଏହି ପ୍ରସ୍ତାବକୁ କାର୍ଯ୍ୟକାରୀ କରିବାକୁ କେହି ଆଗେଇ ଆସିଲେ ନାହିଁ । ବିଲେଇ ବେକରେ ଘଣ୍ଟି ବନ୍ଧାହୋଇ ନପାରି ସଭା ଶେଷ ହେଲା । ସେହି ରାତିରେ ଆମ ମେସ୍‌ରେ ରମେଶ, ବନମାଳୀ ଓ ମୁଁ ଏ ବିଷୟର ଆଲୋଚନା କରି ତହିଁ ପରଦିନ ଅର୍ଥଶାସ୍ତ୍ର ପରୀକ୍ଷାରେ ଏହା କାର୍ଯ୍ୟକାରୀ କରିବାକୁ ମନସ୍ଥ କଲୁ । ଆମ ଦୁଇଜଣଙ୍କର ଫିଲଶଫି ଓ ଓଡ଼ିଆର ପରୀକ୍ଷା ସେତେବେଳେକୁ ସରି ଯାଇଥାଏ । ବନମାଳୀ ଖୁବ୍ ଦୁଃସାହସିକ ଥିଲା ଏବଂ ଆମ ପ୍ରସ୍ତାବରେ ରାଜି ହୋଇଗଲା ଏବଂ ଆମେ ଦୁଇଜଣ ପରୀକ୍ଷା ହଲ ବାହାରେ ରହିଲେ ସେଇ ମୁହୂର୍ତ୍ତରେ ଏହା କାର୍ଯ୍ୟକାରୀ ପରିସ୍ରା କରିବ ବୋଲି ନିର୍ଭର ପ୍ରତିଶ୍ରୁତି ଦେଲା । ତଦନୁସାରେ ତହିଁ ପରଦିନ ପରୀକ୍ଷାହଲ ବାହାରେ ତାର ଦୃଷ୍ଟିକୁ ଆସିଲା ଭଳି ଆମେ ଦେଖାଦେଲୁ । ପରୀକ୍ଷାର ନିରୀକ୍ଷକ ଅଧାପକ କ୍ଷେତ୍ରମୋହନ ପଟ୍ଟନାୟକ ଥିଲେ । ବନମାଳୀ କହିଲା ସାର୍ ମୋତେ ଖୁବ୍ ପରିସ୍ରା ଲାଗିଲାଣି, କ'ଣ କରିବି । ପରୀକ୍ଷା ସମୟ ଆହୁରି ଏକଘଣ୍ଟା ଅଛି । ସାର୍ ଉତ୍ତର ଦେଲେ 'ମୁଁ ନିରୁପାୟ, ତୁମେ ପରିସ୍ରାକରି ଯାଇ ପାରିବ ନାହିଁ ।'' ବନମାଳୀ ତେଣୁ କହିଲା ''ସାର୍, ମୋତେ ହଲ୍ କୋଣକୁ ଯାଇ ଗୋଟିଏ ମାଠିଆରେ ପରିସ୍ରା କରାଇବାର ବ୍ୟବସ୍ଥା ଦୟାପୂର୍ବକ କରାନ୍ତୁ ।'' ଅଧାପକ ତାହା ବି ମନାକଲେ । ତହୁଁ ସେ ହଲ ମଧରେ ପରିସ୍ରା କରିବ ବୋଲି କହିଲା । ଅଧ୍ୟାପକ କିଛି କହିଲେ ନାହିଁ । ସକାଳେ ଯଥେଷ୍ଟ ପାଣି ଓ ପଖାଳ ଖାଇଥିବାରୁ ସେ ଆଉ ପରିସ୍ରାର ବେଗ ରୋଧ କରି ନପାରି ହଲ୍ ମଧର ପୂର୍ବଯୋଜନା ମୁତାବକ ପରିସ୍ରା କରିବାକୁ ବାଧ୍ୟହେଲା । ସେ ଏତେ ପରିସ୍ରା କଲାଯେ ଚାରିପାଖ ସିଟ୍ ଆଡ଼କୁ ପରିସ୍ରା ମାଡ଼ିଗଲା ଏବଂ ପିଲାମାନେ ପରୀକ୍ଷା ଖାତା ଧରି ନିଜନିଜ ସିଟ୍‌ରୁ ଉଠି ପଳାଇଗଲେ । ବନମାଳୀ କିନ୍ତୁ ପରିସ୍ରା ସାରି ନିଜ ସିଟ୍‌ରେ ବସି ବାରମ୍ବାର କାଗଜ ମାଗିଲା ଏବଂ ଅଧ୍ୟାପକ ପରିସ୍ରା ଉପରେ ପାଦରଖି କାଗଜ ଯୋଗାଇବାକୁ ବାଧ୍ୟ ହେଉଥିଲେ । କଲେଜ ହଲ ବାହାରେ ଦେଖଣାହାରୀଙ୍କ ଲୋକାରଣ୍ୟ ହୋଇଗଲା । ପରୀକ୍ଷାପରେ ଅନେକ ସମୟ ଯାଏ ବନମାଳୀକୁ ସମସ୍ତେ ଦେଖିଲେ ଏବଂ କହୁଥିଲେ ବିଲାତରେ ନଜିର ନେଉଥିବା କଳା ନିୟମକୁ ଧଳା ନକରି ଯିବେ କୁଆଡ଼େ ?ତହିଁ ପରଦିନ 'ସମାଜ' ଓ 'ପ୍ରଜାତନ୍ତ୍ର'ରେ ଏ ବିଷୟ ବଡ଼ବଡ଼ ଅକ୍ଷରରେ ପ୍ରକାଶିତ ହେଲା । ଅଧକ୍ଷଙ୍କ ଏତାଦୃଶ ଅଦୂରଦର୍ଶିତା ପାଇଁ କଠୋର ସମାଲୋଚନାମୂଳକ ସମ୍ବାଦ ପରିବେଷିତ ହୋଇଥିଲା । ଏହାଥିଲା ଟେଷ୍ଟ ପରୀକ୍ଷା । ଡିଗ୍ରୀ ପରୀକ୍ଷା ପୂର୍ବରୁ ଅଧ୍ୟକ୍ଷ ପରୀକ୍ଷାର୍ଥୀମାନଙ୍କର ଏକ ବିଦାୟକାଳୀନ ବୈଠକ ଡକାଇଥିଲେ ଏବଂ ସେଠାରେ ଏହି କଳା ନିୟମର ପ୍ରତ୍ୟାହାର ଘୋଷଣା ସହିତ ଛାତ୍ରମାନଙ୍କର ଜୟହେଲା ବୋଲି କହିଥିଲେ । ନିଜର୍ନିଜ କର୍ମକ୍ଷେତ୍ରରେ ସବୁବେଳେ ଜୟଲାଭ କର ବୋଲି ଆଶୀର୍ବାଦ କରିବା ସହିତ ନିଜର ଭୁଲ ପାଇଁ ଦୁଃଖ ପ୍ରକାଶ ମଧ କରିଥିଲେ ଏବଂ ସଭାସ୍ଥଳୀ 'ଅଧକ୍ଷ ସୁନ୍ଦରମ୍ ଜିନ୍ଦାବାଦ୍' ଧ୍ୱନିରେ ମୁଖରିତ ହୋଇଉଠିଲା । ଏହାଥିଲା ଛାତ୍ରଶିକ୍ଷକଙ୍କ ସଂପର୍କର ଏକ ଐତିହାସିକ ଉଦାହରଣ ।

ଶିକ୍ଷକ ଛାତ୍ର ସୌହାର୍ଦ୍ଦ୍ୟର ଆଉ ଗୋଟିଏ ଘଟଣା ମନେ ପଡୁଛି । ଅଧ୍ୟାପକ ଗୋପାଳ ଚନ୍ଦ୍ର ପଟ୍ଟନାୟକ ଦର୍ଶନଶାସ୍ତ୍ରର ଅଧ୍ୟାପକ ଏବଂ ଛାତ୍ରାବାସ ଅଧୀକ୍ଷକ ଥାଆନ୍ତି । କ୍ଲାସରେ ପାଠ ପଢ଼ାଇବା ସହିତ କିଛି ସମୟ ଛାତ୍ରମାନଙ୍କର ଚରିତ୍ରଗଠନ ସଂପର୍କରେ ବୁଝାଇଥାଆନ୍ତି । କହୁଥାନ୍ତି ତୁମେ ସବୁ ଗ୍ରାଜୁଏଟ୍ ହେବ । ସମାଜରେ ଉଚ୍ଚଶିକ୍ଷିତ ଭାବରେ ଗଣ୍ୟହେବ । ତେଣୁ ତୁମର ଆଚରଣ ଆଦର୍ଶ ହେବା ଉଚିତ ଏବଂ ତୁମେ ପାଠବ୍ୟତୀତ ଆହୁରି ଅନେକ କଥା ଜାଣିବା ଉଚିତ ଯାହାକି ବ୍ୟକ୍ତିଗତ ଜୀବନରେ ଆବଶ୍ୟକ ହେବ । ଦର୍ଶନଶାସ୍ତ୍ରରେ ମୁଁ କ୍ଲାସରେ ପ୍ରଥମ ହେଉଥିବାରୁ ସେ ମୋତେ ଖୁବ୍ ଶ୍ରଦ୍ଧା କରୁଥିଲେ ଏବଂ ପାଠ ବୁଝିବାରେ ଅସୁବିଧା ହେଲେ ତାଙ୍କ ବସାକୁ ଯାଇ ସନ୍ଦେହ ଦୂର କରିନେବାକୁ କହୁଥିଲେ । ତାଙ୍କ ଘରକୁ ଗଲେ ପାଠ ବୁଝାଇସାରି ଚା', ବିସ୍କୁଟ, ମିଠା ପ୍ରଭୃତି ଖାଇବାକୁ ଦେଉଥିଲେ । ଡିଗ୍ରୀ ପରୀକ୍ଷା

ପୂର୍ବରୁ ପରୀକ୍ଷାର୍ଥୀମାନଙ୍କୁ ନିଜ ଘରେ ଏକ ବିଦାୟକାଳୀନ ଭୋଜି ଦେବା ସହିତ ଭବିଷ୍ୟତ ଜୀବନର ଉନ୍ନତି ସଂପର୍କରେ ଶୁଭକାମନା କରି ବହୁ ସମୟ ଆମମାନଙ୍କୁ ଉପଦେଶ ଦେଉଥିଲେ ଏବଂ ଗୋଟିଏ ଗୋଟିଏ କଲମ ଉପହାର ମଧ୍ୟ ଦେଉଥିଲେ । ଭୋଜିର ଖାଦ୍ୟ ପ୍ରସ୍ତୁତି ନିଜେ ଗୁରୁପତ୍ନୀ କରୁଥିଲେ । ସେତେବେଳେ ମୋର ବୈଦିକ ଯୁଗର ଗୁରୁଶିଷ୍ୟ ସଂପର୍କ କଥା ମନେ ପଡୁଥିଲା । ହେଲେ ଆମେ ଗୁରୁଙ୍କର ଋଣ ପରିଶୋଧ କରିବାପାଇଁ କିଞ୍ଚିତ କାର୍ଯ୍ୟ ମଧ୍ୟ କରି ପାରିଲୁ ନାହିଁ । ବର୍ତ୍ତମାନର ଶିକ୍ଷା ବ୍ୟବସ୍ଥାରେ ସେ ପ୍ରକାର ଦାନ-ପ୍ରତିଦାନ କଳ୍ପନାର ବାହାରେ । ମୁଁ ୧୯୭୯ ମସିହାରେ ସ୍ୱାସ୍ଥ୍ୟ ଏବଂ ନିର୍ମାଣ ବିଭାଗର ରାଷ୍ଟ୍ରମଂତ୍ରୀ ପଦରେ ଅଧିଷ୍ଠିତ ହେବାବେଳକୁ ସେ ଡି.ପି.ଆଇ.ଅଫିସରେ ଡେପୁଟି ଡି.ପି.ଆଇ ଥିଲେ ଏବଂ ମୁଁ ପ୍ରଥମେ ଯାଇ ତାଙ୍କ ପାଦବନ୍ଦନା କରିଥିଲି । ସେ ଅତ୍ୟନ୍ତ ଖୁସିହୋଇ କହିଥିଲେ ''ମୋର ଛାତ୍ରମାନଙ୍କ ମଧ୍ୟରେ ଅନେକେ ଉଚ୍ଚ ପଦବୀ ରେ ଅଧିଷ୍ଠିତ ଅଛନ୍ତି । କିନ୍ତୁ ସେମାନଙ୍କ ମଧ୍ୟରୁ ତୁମେ ହିଁ ଏକମାତ୍ର ମୋର ପଦବନ୍ଦନା କରିଥିବାରୁ ମୁଁ ଅତ୍ୟନ୍ତ ଆନନ୍ଦିତ । ନିଜ କର୍ମକ୍ଷେତ୍ରରେ ତୁମେ ସୁନାମ ଅର୍ଜନ କର ।'' ତାଙ୍କର ସେ ଆଶୀର୍ବାଦମୂଳକ ମନ୍ତବ୍ୟରେ ମୋର ଆଖି ସଜଳ ହୋଇ ଉଠିଥିଲା । ପରେ ସାର୍ ପ୍ରୌଢ଼ଶିକ୍ଷାର ଡି.ପି.ଆଇ. ହୋଇ ଅବସର ଗ୍ରହଣ କରିଥିଲେ ଏବଂ ପୁରୀ ସହରର ନିଜ ବାସସ୍ଥାନ ଦଣ୍ଡପଡ଼ାରେ ବର୍ତ୍ତମାନ ଅବସ୍ଥାନ କରୁଛନ୍ତି ।

କଲେଜ ଜୀବନର ସ୍ମୃତି ଅତ୍ୟନ୍ତ ମଧୁର । ଏହା ମଧ୍ୟରେ ଦୀର୍ଘ ୫୦ବର୍ଷରୁ ଅଧିକ ସମୟ ବିତି ଗଲାଣି । ଅନେକ ଛାତ୍ର ଏବଂ ଅଧ୍ୟାପକ ଆଉ ଇହଧାମରେ ନାହାନ୍ତି । କିନ୍ତୁ ସେତେବେଳର ସ୍ମୃତିରୁ କିଛିକିଛି ମନେ ପଡ଼ିଲେ ହୃଦୟ ଆନନ୍ଦରେ ଉଲ୍ଲସିତ ହୋଇଉଠେ । ମନେହୁଏ ସେହି ଅଧ୍ୟାପକ, ସେହି ଛାତ୍ରବଂଧୁ, ସେହି ପରିବେଶ, ସେହି ସମୟ ଆଉଥରେ ଜୀବନରେ ଜୁଟନ୍ତା କି ! କିନ୍ତୁ ସମୟ କାହାରିକୁ ଅପେକ୍ଷା କରେନାହିଁ । ପୁରୁଣା ଚାଲିଯାଏ, ନୂଆଆସେ । ସୃଷ୍ଟିର ଏହା ଚିରନ୍ତନ ନିୟମ ।

ଫକୀରମୋହନ କଲେଜର ସେତେବେଳର ଅବସ୍ଥାରେ ବର୍ତ୍ତମାନ ବହୁତ ପରିବର୍ତ୍ତନ ଓ ଉନ୍ନତି ଘଟିଛି । ଏହାକୁ ଉନ୍ନତ କରି ଗଢ଼ି ତୋଳିବାରେ ପୁରାତନ ଛାତ୍ରସଂଘର ଯଥେଷ୍ଟ ଅବଦାନ ଥିବାର ପରିଲକ୍ଷିତ ହୁଏ ।

• ମଲ୍ଲିକାଶପୁର,
ବାଲେଶ୍ୱର

# ଉତ୍ତରେ ବଳାଙ୍ଗୀ

## ପ୍ରଫେସର ରାଜେନ୍ଦ୍ର ପ୍ରସାଦ ଦାସ

ଭାରତ ସରକାରଙ୍କ ପ୍ରତ୍ନତତ୍ତ୍ୱ ବିଭାଗର ସହକାରୀ ଅଧୀକ୍ଷକ ପଦରୁ ଅବ୍ୟାହତି ନେଇ ୧୯୬୫ ଫେବୃଆରୀରେ ବାରିପଦାସ୍ଥିତ ମହାରାଜ ପୂର୍ଣ୍ଣଚନ୍ଦ୍ର ଭଞ୍ଜ କଲେଜରେ ଇତିହାସ ପ୍ରାଧାପକ ବା ରିଡର ଭାବରେ ଯୋଗଦେବା । ତାର ୧୮ ମାସପରେ, ଜୁଲାଇ ୧୯୬୬ରେ ବଳାଙ୍ଗୀଧୌତ ବାଲେଶ୍ୱରର ଫକୀରମୋହନ ମହାବିଦ୍ୟାଳୟରେ ଯୋଗଦେଲି । ଆରମ୍ଭରେ ଫକୀରମୋହନଙ୍କ ନାମରେ ନାମିତ କଲେଜକୁ F. M. College କହିବା ଓ ଲେଖିବା ମତେ ବାଧୁଥିଲା । ଇଂରାଜୀ ଉଚ୍ଚାରଣରେ ଓଡ଼ିଆ 'ଫ' F ନହୋଇ Ph ହେବା ଉଚିତ । ସ୍ୱୟଂ ଫକୀରମୋହନ ନିଜ ନାମକୁ P.M. Senapati ଲେଖୁଥିଲେ । କଲେଜ ସ୍ଥାପନ ବେଳର ତ୍ରୁଟିପୂର୍ଣ୍ଣ F.M. ପରିବର୍ତ୍ତିତ ହୋଇ ଫକୀରମୋହନ ସ୍ୱୟଂ ନିର୍ଭୁଲ ଭାବରେ ଲେଖୁଥିବା P.M. ହୋଇପାରନ୍ତା ନାହିଁ ?

ଫକୀରମୋହନ କଲେଜରେ ମୁଁ ତିନିବର୍ଷ ବିତାଇ , ୧୯୬୯ରେ ପୁରୀ ସାମନ୍ତ ଚନ୍ଦ୍ରଶେଖର କଲେଜରେ ଯୋଗଦେଲି । ବାଲେଶ୍ୱରର ତିନିବର୍ଷ ରହଣି ମୋର ବ୍ୟକ୍ତିଗତ, ବୃତ୍ତିଗତ, ଗବେଷକ ତଥା ସାମାଜିକ ଜୀବନରେ ଗୁରୁତ୍ୱପୂର୍ଣ୍ଣ ଥିଲା । ବ୍ୟକ୍ତିଗତସ୍ତରରେ ବାଲେଶ୍ୱରରେ ୧୯୬୬ ନଭେମ୍ବରରେ ମୋର କନିଷ୍ଠା କନ୍ୟା ସୁଜାତାର ଜନ୍ମ ହୋଇଥିଲା । ସେହିଁ ମୋର ଶେଷ ସନ୍ତାନ । ଏହି ପାରିବାରିକ ବ୍ୟକ୍ତିଗତ ଘଟଣାଟି ଛଡ଼ା ବ୍ୟକ୍ତିଗତ ଭାବରେ ବହୁ ଗୁଣୀଜନମାନଙ୍କର ବଂଧୁତ୍ୱ ଲାଭକରିବାରେ ସୌଭାଗ୍ୟ ଲାଭ କରିଥିଲି । ଏ ବଂଧୁମାନେ କଲେଜ ଭିତରୁ ଓ କଲେଜ ବାହାରୁ ମିଳିଥିଲେ । ଭିତରୁ ମିଳିଥିବା ସମ୍ମାନସ୍ପଦ ବସନ୍ତ କୁମାର ଶତପଥୀ, ତାରିଣୀ ଚରଣ ପଟ୍ଟନାୟକ, କଲ୍ୟାଣ କୁମାର ମୁଖର୍ଜୀ, ରାମଚନ୍ଦ୍ର ପଟ୍ଟନାୟକ, ରାମଚନ୍ଦ୍ର ମହାନ୍ତି, ପ୍ରଫୁଲ୍ଲ କୁମାର ରଥ, ବିୟତ୍‌କେଶ ତ୍ରିପାଠୀ, ତାପସ କୁମାର ଚକ୍ରବର୍ତ୍ତୀ, ଗଙ୍ଗାଧର ବଳ, ପ୍ରଭାସ ପାଲିତ, ମୀନକେତନ ଦାସ, ଜ୍ଞାନଚନ୍ଦ୍ର କର, ଶ୍ରୀଯୁକ୍ତ ଭଟ୍ଟାଚାର୍ଯ୍ୟ, ଯଦୁମଣି ମହପାତ୍ର, ଦୀନବଂଧୁ ଶତପଥୀ, ଦୁର୍ଗାଦାସ ପଟ୍ଟନାୟକ, ବ୍ରଜେନ୍ଦ୍ର କୁମାର ଶେଠୀ, ପ୍ରହ୍ଲାଦ ଚରଣ ମହାନ୍ତି, ବୈରାଗୀ ଚରଣ ଜେନା, ବୈଷ୍ଣବ ଚରଣ ସାମଲ, ସତ୍ୟନାରାୟଣ ମହାନ୍ତି, ସୋମନାଥ ମିଶ୍ର, ସିନ୍ଧୁମତୀ ଦେବୀ ଆଦିଙ୍କ ସହ ବାଲେଶ୍ୱର ଅବସ୍ଥାନ ବେଳେ ତଥା ପରବର୍ତ୍ତୀକାଳରେ ଏହି ବନ୍ଧୁତ୍ୱ ଅକ୍ଷୁର୍ଣ୍ଣ ରହିଥିଲା । କଲେଜ ବାହାରେ ସମ୍ମାନାସ୍ପଦ ରବୀନ୍ଦ୍ରମୋହନ ଦାସ, ବ୍ରଜନାଥ ରଥ, ଚନ୍ଦ୍ରକୁମାର ମହାନ୍ତି, ଜ୍ଞାନରଂଜନ ପଟ୍ଟନାୟକ, ତଦୀୟ ପତ୍ନୀ ବାଲେଶ୍ୱରର ନାରୀନେତ୍ରୀ ଶ୍ରୀଯୁକ୍ତା ଶିଶିର କୁମାରୀ ପଟ୍ଟନାୟକ, ଡାକ୍ତର ମନିନ୍ଦ୍ରଲାଲ ବୋଷ, କ୍ୟାପ୍‌ଟେନ୍ ଅରୁଣ କୁମାର ପଟ୍ଟନାୟକ, ଗାନ୍ଧିଶାନ୍ତି ପ୍ରତିଷ୍ଠାନର ଶ୍ରୀଯୁକ୍ତ ଜୟକୃଷ୍ଣ ବିଶ୍ୱାଳ, ହୋମିଓପ୍ୟାଥ୍ ଅନା ସାହେବ, ମୋର ସହପାଠୀ ତଥା ବଶିଷ୍ଟ ରାଜନେତା ଶ୍ୟାମସୁନ୍ଦର ମହାପାତ୍ର ଆଦିଙ୍କ କଥା ବିଶେଷ ଭାବରେ ସ୍ମରଣ ରଖିଛି । ଏମାନେ ପ୍ରତ୍ୟେକ ନିଜଗୁଣ ଓ କର୍ମଯୋଗୁଁ ଓଡ଼ିଶାର ସାମାଜିକ, ବୃତ୍ତିଗତ ଓ ରାଜନୈତିକ ଜୀବନରେ ଜଣାଶୁଣା ।

ପରବର୍ତ୍ତୀକାଳରେ ମତେ ନୂତନ ଧରଣର ଗବେଷଣାରେ ଲଗାଇଥିବା ପଦ୍ମଭୂଷଣ ଆଲିସ୍ ବୋନର ସେଇ ବାଲେଶ୍ୱରରେ ହିଁ ମୋତେ ତାଙ୍କ କାମରେ ବ୍ରତୀକରାଇବା ପାଇଁ ୧୯୬୬ରେ ଆସି ଭେଟିଥିଲେ । ପରେ ତୁ ଆଲିସ୍ ଓ ପଦ୍ମଶ୍ରୀ ସଦାଶିବ ରଥଶର୍ମାଙ୍କ ସହ ଯୋଡ଼ି ହୋଇଗଲା । ଆମେ ତିନିହେଁ ୧୯୬୭ରୁ ୧୯୭୧ ,ପାଞ୍ଚବର୍ଷ ଗବେଷଣା ଚଳାଇ ' New Light on the Sun Tempel of Konarka'

ଗ୍ରନ୍ଥ ୧୯୭୨ରେ ପ୍ରକାଶ କଲୁ । କୋଣାର୍କ ସଂକ୍ରାନ୍ତୀୟ ଅନେକ ମିଥ୍ୟା କଳ୍ପନାଶ୍ରୟୀ ଏବଂ ବିଭିନ୍ନ ଦୃଷ୍ଟିକୋଣରୁ ଗଠିତ ଓ ଚର୍ଚ୍ଚିତ ପ୍ରମାଦପୂର୍ଣ୍ଣ କିମ୍ବଦନ୍ତୀମୂଳରେ ଏ ଗ୍ରନ୍ଥ କୁଠାରାଘାତ କଲା । ପରିଣାମରେ ମୁଁ ଓଡ଼ିଶାର ଐତିହାସିକମହଲରେ ବହୁକାଂଶରେ ଅପାଂକ୍ତେୟ ହେଲି ଏବଂ ପରବର୍ତ୍ତୀ କାଳରେ ମୋ ବୃତ୍ତିଗତ ଜୀବନର ନାନା  ଅଧିକାର ଓ ପଦବୀରୁ ବଂଚିତ ହେଲି । ଗାଲିଲିଓଙ୍କୁ ତତ୍‌କାଳୀନ ଧର୍ମଧ୍ୱଜାଙ୍କର ଅବମାନନା ଓ ଲାଂଛନା ସତ୍ତ୍ୱେ ଗାଲିଲିଓ ପ୍ରତିପାଦିତ ସତ୍ୟହିଁ ଜିଇ ରହିଲା । ମୋ ଭାଗ୍ୟ-ଭବିତବ୍ୟରେ ତାହାହିଁ ଘଟିବ । ଦିନେ ନା ଦିନେ ଆମର ତଥ୍ୟନିର୍ଭର ଗବେଷଣା ଲବ୍ଧ ସତ୍ୟର ପ୍ରତିଷ୍ଠା ହେବା ଅବଧାରିତ । ମାତ୍ର ସେତେବେଳେକୁ ଏ ଅକିଞ୍ଚନ ଜିଇ ନଥିବ । ମୋ ଜୀବନର ଅନ୍ତ ହେଲାପରେ ଇଂରାଜୀ କଥା, 'Fame is a fruit which dead men eat.' (ଯଶଃ ଫଳଟିକୁ ମୃତଲୋକ ହିଁ ଖାଆନ୍ତି) ସତ୍ୟହେବ । ଏ ଲେଖା ପଢ଼ିବାଲୋକଙ୍କ ଭିତରୁ କେହି ଜଣେ ହେଲେ ଆମ କାମ ଘେନି ଆଗ୍ରହୀ ହେବେ କି ?

ଏଇ ଗବେଷଣା ସଂକ୍ରାନ୍ତରେ ଆଉ ଦୁଇଟି କଥା କହୁଛି । ଆଲିସ୍ ତାଙ୍କ ପୁରୁଣା ଫୋର୍ଡ଼ କାରରେ ବାରାଣସୀରୁ ବାଲେଶ୍ୱର ଆସିବେ ବୋଲି ମତେ ଜଣାଇଲା ପରେ ସେ ଆସି କୋଉଠି ରହିବେ ଭାବି ରବିଭାଇଙ୍କୁ ବିଷୟଟି ଜଣାଇ ସାହାଯ୍ୟ ମାଗିଲି । ରବିଭାଇ ମୂଳରୁ ସମାଜବାଦୀ ଆନ୍ଦୋଳନର ଅନ୍ୟତମ କର୍ଣ୍ଣଧାର । ତାଙ୍କର ସୁଯୋଗ୍ୟା ସହଧର୍ମିଣୀ ଗୋଦାବରୀ ଦେବୀ  ଗାନ୍ଧୀବାଦୀ, ବରାରେ ରମାଦେବୀ ଓ ଗୋପବାବୁଙ୍କ ଆପଣାର ଲୋକ । ରବିଭାଇଙ୍କୁ ଜାଣିବା ଆଗରୁ ମୁଁ ଗୋଦିଦେଇଙ୍କୁ ଜାଣିଥିଲି । ରବିଭାଇ ସଂଗେସଂଗେ ଫୋନ୍‌କରି ପର୍ମିଟ୍ ପଢ଼ିଆଷ୍ଟ ଜଣେ ଶିଳ୍ପପତି ବନ୍ଧୁଙ୍କ ଅତିଥିଭବନଟି ଆଲିସ୍‌ଙ୍କ ପାଇଁ ଯୋଗାଡ଼ କଲେ । ପରବର୍ଷ ଆଲିସ୍ ଆସି ଚାନ୍ଦିପୁର ପାନ୍ଥନିବାସରେ କିଛି ଦିନ ରହି  ମୋ ସହ New Light କାମ କଲେ । ଥରେ ନବବାବୁ ବାଲେଶ୍ୱର ଆସି ଗାନ୍ଧିଶାନ୍ତି ପ୍ରତିଷ୍ଠାନରେ ମୁଁ ଦେଇଥିବା ଗୋଟେ ଦିଇଟା ଅଭିଭାଷଣ କଥା ଜୟକୃଷ୍ଣବାବୁଙ୍କଠାରୁ ଶୁଣି ମତେ ଭେଟିବାକୁ ଆଗ୍ରହୀ ହେଲେ । ନବବାବୁଙ୍କୁ ମୁଁ ୧୯୪୭ରୁ ଜାଣେ । ୧୯୫୧-୫୨ ନିର୍ବାଚନରେ ତ ତାଙ୍କ ବିରୋଧରେ ପ୍ରଚାର ବି କରିଥିଲି । ନବବାବୁଙ୍କ ପୁଅ କାଲୁ ମୋର ସହାଧ୍ୟାୟୀ ଥିଲା । ନବବାବୁଙ୍କ ସହ କଥାବାର୍ତ୍ତାବେଳେ, ସେତେବେଳେ ମୁଁ କୋଉକାମରେ ଲାଗିଛି ଜାଣିବାକୁ ଚାହାଁନ୍ତେ ମୁଁ New Lightରେ ଦିଆଯାଇଥିବା 'ବୟ ଚକଡ଼ା' କଥା କହିଲି । ନବବାବୁ ପୋଥିରେ ଥିବା କଥା ଜାଣିବାରେ ଆଗ୍ରହୀ ହେବାରୁ ତାଙ୍କୁ ମୋ କଲେଜ ବସାକୁ ନିମନ୍ତ୍ରଣ କଲି । ସେତେବେଳେ ମୋ ବାପା ମୋ ପାଖରେ ଥାଆନ୍ତି । ମୋ ବାପା ଓ ନବବାବୁ ଅପାତଦୃଷ୍ଟିରେ ଗାନ୍ଧୀବାଦୀ ଓ ସମାଜବାଦୀ ହୋଇଥିବାରୁ -ପରସ୍ପର ବଂଧୁବୋଲି ବିଚାରୁଥିଲେ । ଉଭୟେ ପରସ୍ପରକୁ ଶ୍ରଦ୍ଧା ମଧ୍ୟ କରୁଥିଲେ । ନବବାବୁ ମୋ ବସାକୁ ଆସିଲେ । ରବିଭାଇ ପାହି ଅଂଚଳରୁ ଅଣେଇଥିବା ମାଛ ତରକାରି ଖାଇ ନବବାବୁ ଖୁସିହେଲେ । ମଧ୍ୟାହ୍ନ ଭୋଜନ ପୂର୍ବରୁ ଓ ପରେ ମୋଠାରୁ 'ବୟଚକଡ଼ା' କଥା ଶୁଣିଲେ । କୋଣାର୍କ ତିଆରିର ଅସଲକଥା ଜାଣି ନବବାବୁ ଖୁସିରେ ପିଲାଙ୍କ ପରି ପଟାଏ ନାଚିଗଲେ । ସେଠୁ ଓଡ଼ିଶାର ଐତିହାସିକମାନେ ଏ ଘେନି କ'ଣ ବିଚାରୁଛନ୍ତି ଜାଣିବାକୁ ଚାହିଁବାରୁ ମୁଁ ସର୍ବାଗ୍ରେ ମହତାବବାବୁଙ୍କ  ବିରୋଧ କଥା କହିଲି । ନବବାବୁ କହିଲେ ଯେ ମହତାବ୍ ସବ୍‌ଜାନ୍ତା ! ତାଙ୍କ କଥା ଛାଡ଼ ।

ନବବାବୁଙ୍କର ଏତାଦୃଶ ଆଗ୍ରହ ମତେ ଉତ୍ସାହିତ କଲା । ଅଥଚ ଫକୀରମୋହନ କଲେଜର ଶିକ୍ଷକ କକ୍ଷରେ ସକାଳୁ ପ୍ରାୟ ୧୦ଟା ୧୧ଟା ଯାଏ, ମୁଁ ସଦାଶିବ ରଥଶର୍ମା ପୋଥିପଢ଼ି ଅନୁବାଦ କରୁଥିଲାବେଳେ କୌଣସି ଅଧ୍ୟାପକ ଦିନେ ବି ଜାଣିବାକୁ ଚାହିଁଲେ ନାହିଁ ଯେ ଆମେ କ'ଣ କରୁଛୁ ! ଏମାନଙ୍କ ଭିତରୁ ଜଣେ ଦି'ଜଣ ପରବର୍ତ୍ତୀ କାଳରେ ସଦାଶିବ ପଦ୍ମଶ୍ରୀ ପାଇବାରେ ମତେ ଟିହାଇଲେ

'ଫେକଶ୍ରୀ' । ସେଥିରୁ ଜଣେ ମୋର ଛାତ୍ର । ଜଣେ ଦିଗ୍ଗଜ ଐତିହାସିକ ରାଜନୀତିଜ୍ଞ ପରେ ଆମ କାମ ବିରେଧୀଙ୍କର ନେତୃତ୍ୱ ନେଲେ । ଜୀବନସାରା ମତେ ନାନାଭାବରେ ହଇରାଣ କଲେ । ଅଥଚ ମୋର ବଂଧୁ ବ୍ରଜନାଥ ରଥ ସଦାଶିବଙ୍କ କଥା ଓ ପ୍ରବଚନରେ ତାରିଫ କରୁଥିଲେ । ମୋ ବିରୋଧୀମାନଙ୍କୁ ନେତୃତ୍ୱ ଦଉଥିବା ରାଜନୀତିଜ୍ଞ -ଐତିହାସିକ ଥରେ ମୋର ଜଣେ ବନ୍ଧୁଙ୍କୁ କହିଲେ, ''ଆର୍.ପି.ଦାସ ଲକ୍ଷେ ଟଙ୍କା ପାଇଛି ବୋଲି ଏଥିରେ ଯୋଡ଼ି ହୋଇଛି ।'' ମୋର ବଂଧୁ କହିଲେ , '' ରାଜେନ୍ଦ୍ର ଲକ୍ଷେ ଟଙ୍କା ପାଇଥିଲେ ନିଶରେ ଗୋବରା ବସେଇ ବୁଲୁଥାନ୍ତା !'' ସମସ୍ତେ ଜାଣିବା ପାଇଁ ଜଣାଉଛି ଯେ ପୁରୀରେ ପ୍ରଥମବର୍ଷ ଆଲିସ୍‌ଙ୍କ ସହ କାମ କଲାବେଳେ ସେ ଭଡ଼ାରେ ନେଇଥିବା ମଧୁପୁର କୋଠିର ପଛପଟ 'ଆନେକ୍ସ'ରେ ରହି ତାଙ୍କ ସହ ମାସେକାଳ ଖାଇଥିଲି । ଦୁଇଥର ବାରାଣସୀ ଯାଇ ତାଙ୍କର କୁଣିଆ ହୋଇଥିଲି । ଯିବାଆସିବା ତୃତୀୟଶ୍ରେଣୀ ରେଳଭଡ଼ା ସେ ମତେ ଦେଇଥିଲେ ଓ ମୋ ସ୍ତ୍ରୀଙ୍କ ପାଇଁ ଦୁଇଖଣ୍ଡି ତନ୍ତବୁଣା ଶାଢ଼ୀ ! ପାଞ୍ଚବର୍ଷ ମିଳିତକାମରେ ଏହାହିଁ ମୋର 'ଲକ୍ଷେ ଟଙ୍କା' ! ଅସୂୟା କେତେ ଜଘନ୍ୟସ୍ତରକୁ ଯାଏ, ଏହା ତାହାର ଏକ ଉଦାହରଣ ।

ଏ ତ ମୋ ଗବେଷକ ଜୀବନ କଥା । ମୋ ସାମାଜିକ ଜୀବନ ଦୁଇଧାରରେ ଗଡ଼ି ଯାଉଥିଲା । ୧୯୬୭ରେ ପ୍ରଳୟଙ୍କାରୀ ବନ୍ୟାବେଳେ ବିଭିନ୍ନ ସୂତ୍ରରୁ, ବିଶେଷରେ 'ସମାଜ' ଜରିଆରେ ମିଳିଥିବା ସହାୟତାକୁ ଲୋକଙ୍କ ପାଖରେ ପହଞ୍ଚାଇବା ଦାୟିତ୍ୱ ଆମେ କେତେକ ଅଧ୍ୟାପକ ଓ ଛାତ୍ର ମିଳିତଭାବରେ ନେଇଥିଲୁ । ପରବର୍ତ୍ତୀ ପର୍ଯ୍ୟାୟରେ ଘରଭଂଗା ସାହାଯ୍ୟ ଆବଣ୍ଟନ ପୂର୍ବରୁ ଗାଁ ଗାଁ ବୁଲି ଭଂଗାଘର ଗୁଡ଼ିକର ସର୍ଭେ କରି ସହାୟତା ଦେଉଥିବା ସରକାରୀସଂସ୍ଥାକୁ ରିପୋର୍ଟ ଦେବା ଦାୟିତ୍ୱ ଆମକୁ ଦିଆଗଲା । ସେଇ କାମରେ ବଢ଼ି ଛାଡ଼ିଲାପରେ ଆମେ କେଇଜଣ ଯାଇଥିଲୁ । ମୋ ସାଂଗରେ ବୈରାଗୀ ଚରଣ ଜେନା ଓ ଆଉ କେତେକ ଅଧ୍ୟାପକ ତଥା ଛାତ୍ର ଡଙ୍ଗାରେ ଯାଉଥିଲେ । ଆମେ ଗଙ୍ଗାହାର-ଶୋଣ ବଳାଙ୍ଗୀରେ ମିଶିବା ପୂର୍ବରୁ କରିଥିବା କ୍ଷୟକ୍ଷତିର ବିବରଣୀ ସଂଗ୍ରହ କରୁଥିଲୁ । ସେତିକବେଳେ 'ଉଷା'ର ଆରମ୍ଭରେ ଥିବା କବିବର ରାଧାନାଥଙ୍କ କଥା, 'ଉତ୍ତରେ ବଳାଙ୍ଗୀ, ମଧ୍ୟେ ଗଙ୍ଗାହାର, ଶୋଣ ଦକ୍ଷିଣେ, ଜଳବେଣୀବର୍ଣ୍ଣେ କୁରଙ୍ଗୀ ନୟନ-ନୀଳିମା ଜିଣେ', ଉଦ୍ଧାର କରି ବନ୍ଧୁମାନଂକୁ ଏହା କୋଉଠୁ ଉଦ୍ଧୃତ ହେଲା ବୋଲି ପଚାରିଥିଲି । ସାହିତ୍ୟ ଅଧ୍ୟାପକ ବଂଧୁମାନେ 'ଚିଲିକା' ପଢ଼ିଥିଲେ ମାତ୍ର ରାଧାନାଥ କାବ୍ୟସାଗରରେ ଅବଗାହନ କରି ନଥିଲେ । ସର୍ଭେ ଓ ରିପୋର୍ଟ ଦେବା ସରିଲା । ସାହଯ୍ୟ ବଣ୍ଟା ଆମ ଦାୟିତ୍ୱ ନଥିଲା ।

ସାମାଜିକ ପ୍ରତିବଦ୍ଧତାର ଦ୍ୱିତୀୟ ଧାରାଟି କଥା ଉଲ୍ଲେଖକରି ଏ ସ୍ମୃତି ବିଜଡ଼ିତ ରଚନାକୁ ଶେଷ କରିବି । ଗାନ୍ଧୀଶାନ୍ତି ପ୍ରତିଷ୍ଠାନରେ ଏକ ଆଲୋଚନା ପ୍ରସଙ୍ଗରେ ବାଲେଶ୍ୱରରେ ଏକ ବିଶ୍ୱବିଦ୍ୟାଳୟ ସ୍ଥାପିତ ହେବା ଆବଶ୍ୟକ ବୋଲି ଆମେ କେତେଜଣ ବିଚାର କଲୁ । ଗାନ୍ଧୀଶାନ୍ତି ପ୍ରତିଷ୍ଠାନରେ ଆଲୋଚନା ସାରି ପ୍ରଫୁଲ୍ଲ ବାବୁ ଓ ମୁଁ ବ୍ରଜବାବୁଙ୍କ ପ୍ରେସ୍‌ରେ ପହଂଚି ତାଙ୍କୁ କଥାଟି କହିଲୁ । ବିଦେଶରେ ପ୍ରତି ସହରରେ ବିଶ୍ୱବିଦ୍ୟାଳୟ ଗଢ଼ି ଉଠୁଛି । ଓଡ଼ିଶାର ଜ୍ଞାନର ବିକାଶ ପାଇଁ ଏହା ହେବା ଆବଶ୍ୟକ ବୋଲି ଆମକୁ ଲାଗିଲା । ବ୍ରଜବାବୁ ଆମକୁ ସମର୍ଥନ କଲେ । ସେଠୁ ପ୍ରଫୁଲ୍ଲ ବାବୁ ଓ ମୁଁ ରବିଭାଇଙ୍କ ପାଖକୁ ଯାଇ ବାଲେଶ୍ୱର ଶିକ୍ଷା ସଂସ୍ଥାନ ଗଠନ କଥା କହିଲୁ । ସେ ଏହାର ସମ୍ପାଦନ ଦାୟିତ୍ୱ ନେବାକୁ ରାଜିହେଲେ । ଆମ କଳ୍ପନା ବିହଙ୍ଗମଟି ଡେଣା ମେଲାଇଲାବେଳକୁ ବାଲେଶ୍ୱରବାସୀ ବଙ୍ଗୀୟପ୍ରଭାବାନ୍ୱିତ କେତେକ ବଂଧୁ କହିଲେ, 'ବିଶ୍ୱବିଦ୍ୟାଳୟ ! ଏଠି ଲୋକ କାହାନ୍ତି । ସାର୍ ଆଶୁତୋଷ ମୁଖାର୍ଜୀ କେବେ ହେବେ ଏ ଦେଶରେ ?'' ଆମର ଉତ୍ତର, ''ସାର ଆଶୁତୋଷଙ୍କ ଗୁରୁ ମଧୁ ବାରିଷ୍ଟର ତ ଓଡ଼ିଆ !'' ତାପରେ ଚାଲିଲା ଆଲୋଚନା । ରାଧାଦେବୀ ଓ ଶ୍ୟାମବାବୁ ମୋଟାମୋଟି ରାଜି ହେଲେ । ହୋମିଓପାଥ୍ ମନାନ୍ ଦୋକାନକୁ

ଆସୁଥିବା କେତେକେ ବନ୍ଧୁ ଆମ ଉଦ୍ୟମକୁ ସମର୍ଥନ କଲାବେଳକୁ ଅନ୍ୟକେତେକ ବିରୋଧ କଲେ । ମୁଁ ବଡ଼ ଖର-ତୁଣ୍ଡିଆ । ମର୍ମଭେଦୀ କଥା କହିବାରେ ମୋର କାର୍ପଣ୍ୟ ନାହିଁ । ଥରେ କହିଲି 'ବାଲେଶ୍ୱର କାହାରି ନୁହେଁ ।' ଏଠି ଦୀନାମାର ଡିଙ୍ଗା, ଫରାସୀ ଡିଙ୍ଗା, ସୁନ୍‌ହଟ, ବାରବାଟୀ, ଶାନ୍ତି କାନନ ଓଗେର ଅଛି ସିନା, ବାଲେଶ୍ୱର କାହିଁ ? '' ଆଉ ଗାଳି ନ ଶୁଣିବାକୁ କେତେକ ମୁଣ୍ଡ ଟୁଙ୍ଗାରି ସମର୍ଥନ କଲେ । ଶିକ୍ଷାସଂସ୍ଥାନର ମୂଳଦୂଆ ପଡ଼ିଗଲା । ପରବର୍ତ୍ତୀ କାଳରେ ରବିଭାଇ ନିଜ ମୁଣ୍ଡରେ ସବୁ ଦାୟିତ୍ୱନେଇ ବାଲେଶ୍ୱର ଉପାନ୍ତରେ ଏମ୍.ଏ. ପାଠପଢ଼ା ଆରମ୍ଭ କରାଇଲେ । ବେଳେବେଳେ ମୋ ସାଙ୍ଗରେ ଦେଖାହେଲେ କହୁଥିଲେ, ''ମତେ ଭାଲୁ ହାବୁଡ଼େଇ ଦେଇ ବଡ଼ ଆରାମ୍‌ରେ ଅଛ !'' କହୁଥିଲି, ''ରବିଭାଇ, କିଛି ଲୋକ ଭାଲୁ ନ ଧରିଲେ, ଏ ପୃଥିବୀ ଧରିତ୍ରୀ ହେବ କିପରି ?''

ଅଳମଥି ବିସ୍ତରଣେ ।

• ୬,ଏମ୍., ଶୈଳଶ୍ରୀ ବିହାର,
ଭୁବନେଶ୍ୱର - ୭୫୧ ୦୨୧୧
ଦୂରଭାଷ - ୯୫-୬୭୪-୨୭୪୧୭୮୬

# ଦିନଥିଲା

## ହିମାଂଶୁ ନନ୍ଦୀ

ଫକୀରମୋହନ ମହାବିଦ୍ୟାଳୟ ପ୍ରତ୍ୟେକ ବାଲେଶ୍ୱରୀଆଙ୍କ ପାଇଁ ଗର୍ବ ଓ ଗୌରବର ଅନୁଷ୍ଠାନ । ତାର ଷାଠିଏ ବର୍ଷ ଭିତରେ ବହୁ କୁହା ଓ ଅକୁହା କାହାଣୀ ଭରପୂର ହୋଇ ରହିଛି । ପ୍ରାକ୍ ସ୍ୱାଧୀନତା କାଳରେ ପ୍ରତିଷ୍ଠିତ ଏଇ ଅନୁଷ୍ଠାନଟି ଏକଦା ସମଗ୍ର ଜିଲ୍ଲାର ଶିକ୍ଷା ଓ ସଂସ୍କୃତିର ପ୍ରାଣକେନ୍ଦ୍ର ରୂପେ ଗଢ଼ି ଉଠିଥିଲା । ରାଜ୍ୟ ଓ ରାଜ୍ୟ ବାହାରର ବହୁ ପ୍ରତିଷ୍ଠିତ ଜ୍ଞାନୀଗୁଣୀ ଅଧ୍ୟାପକ ଏଥିରେ ଅଧ୍ୟାପନା କରି ଯାଇଛନ୍ତି । ଫକୀରମୋହନରୁ ଉତ୍ତୀର୍ଣ୍ଣ ଛାତ୍ରଛାତ୍ରୀମାନେ ଅତୀତରେ ଓ ଆଜିବି ସମାଜର ବିଭିନ୍ନ କ୍ଷେତ୍ରରେ ପ୍ରତିଷ୍ଠିତ ଥିଲେ ଓ ଅଛନ୍ତି । ଏବେବି କୌଣସି ଆଲୋଚନାରେ ଫକୀରମୋହନ କଲେଜ ବିଷୟ ଆଲୋଚନା ପରିସର ମଧ୍ୟକୁ ଆସିଗଲେ ଭାବ ପ୍ରବଣତା ସୃଷ୍ଟି ହେଉଛି ।

ପଚାଶ ଓ ଷାଠିଏ ଦଶକର ସହରର ବୁଦ୍ଧିଜୀବୀ ଓ ସଂସ୍କୃତିପ୍ରେମୀ ଜନ ସାଧାରଣ ଆଗ୍ରହର ସହ ଅପେକ୍ଷା କରିଥାନ୍ତି କଲେଜର ସାଂସ୍କୃତିକ କାର୍ଯ୍ୟକ୍ରମକୁ । ବିଶ୍ୱବିଦ୍ୟାଳୟ ଆନ୍ତ କଲେଜ ବକ୍ତୃତା ପ୍ରତିଯୋଗିତା ଠାରୁ ଆରମ୍ଭ କରି ସଂଗୀତ ସମ୍ମିଳନୀ, କ୍ରୀଡ଼ା ଉତ୍ସବ, ଚିତ୍ରାଙ୍କନ ପ୍ରଦର୍ଶନୀ ଓ ବିଜ୍ଞାନ ମେଳା ପ୍ରଭୃତି ସହ ବହୁ କିସମ ଓ ରକମର ଉତ୍ସବ ମାନ ବାର୍ଷିକ ପରୀକ୍ଷା ପୂର୍ବ ପର୍ଯ୍ୟନ୍ତ ଲାଗି ରହିଥାଏ । ଆଜି ସେ ସବୁ କାର୍ଯ୍ୟମାନ ଅନୁଷ୍ଠିତ ହୁଏକି ନାହିଁ ଜଣାନାହିଁ ।

୧୯୫୧ର ଦରମା ବୃଦ୍ଧି ବିରୋଧୀ ଅବିସ୍ମରଣୀୟ ଛାତ୍ର ଆନ୍ଦୋଳନ,

୧୯୫୨-୫୩ରେ ବାଲେଶ୍ୱର ଠାରେ ଆଡ଼ମ୍ବର ସହକାରେ ଅନୁଷ୍ଠିତ ନିଖିଳ ଉତ୍କଳ ଛାତ୍ରସଂଘର ରାଜ୍ୟ ସମ୍ମିଳନୀ, ୧୯୫୫ରେ ଦଳେଇଘାଇ ଭାଙ୍ଗିବା ଯୋଗୁଁ ଅଭୂତପୂର୍ବ ପ୍ରଳୟଙ୍କରୀ ବନ୍ୟାରେ ଛାତ୍ରସଂଘର ଆକର୍ଷଣୀୟ ରିଲିଫ କାର୍ଯ୍ୟାବଳୀ, ୧୯୫୬ରେ ସୀମା କମିଶନଙ୍କ ଓଡ଼ିଶା ବିରୋଧୀ ନିଷ୍ପତ୍ତି ଏବଂ ଚୌଧୁରୀ ସରକାରର କେନ୍ଦ୍ରୀୟ ବିହାରୀ ନେତାଙ୍କ ପାଖରେ ସମର୍ପଣ ବାଦ ବିରୋଧରେ ରାଜବ୍ୟାପୀ ଗଣ ଆନ୍ଦୋଳନରେ ଛାତ୍ରସଂଘ ଏବଂ ଏହାର ନେତାମାନଙ୍କ ନେତୃତ୍ୱର ଅବଦାନ ରାଜ୍ୟରେ ଏବଂ ବିଶେଷକରି ବାଲେଶ୍ୱରରେ ଏକ ଯୁଗାନ୍ତକାରୀ ସ୍ୱାଭିମାନ ସୃଷ୍ଟି କରିଥିଲା । ରାଜ୍ୟର ମୁଖ୍ୟତଃ ଦୁଇଟି ଛାତ୍ରସଂଗଠନ ସକ୍ରିୟ ଥିଲେ । ବାମପନ୍ଥୀ ଓ ପ୍ରଗତିବାଦୀ ଛାତ୍ରମାନଙ୍କର ସଂଗଠନ ଥିଲା । ନିଖିଳ ଉତ୍କଳ ଛାତ୍ରସଂଘ । ଏହି ସଂଗଠନଟି ୧୯୩୬ ମସିହାରେ ସ୍ୱାଧୀନତା ଆନ୍ଦୋଳନର ଆବଶ୍ୟକତା ଦୃଷ୍ଟିରୁ ପଣ୍ଡିତ ନେହେରୁ ପ୍ରଭୃତି ଜାତୀୟ ନେତାମାନଙ୍କ ପ୍ରେରଣା ଓ ନେତୃତ୍ୱରେ ଗଠିତ ହୋଇଥିଲା । ପରବର୍ତ୍ତୀ ଅବସ୍ଥାରେ କମ୍ୟୁନିଷ୍ଟ ମାନେ କଂଗ୍ରେସ ତ୍ୟାଗକରି ନିଜସ୍ୱ ପାର୍ଟି ଗଢ଼ିଲା ପରେ କମ୍ୟୁନିଷ୍ଟ ନେତୃତ୍ୱ ଏଇ ସଂଗଠନ ଉପରେ ପ୍ରାଧାନ୍ୟ ବିସ୍ତାର କରିଥିଲା । ସେହିପରି କଂଗ୍ରେସ ଓ ସୋସାଲିଷ୍ଟ ମାନଙ୍କର ଛାତ୍ର ସଂଗଠନ ଥିଲା ନିଖିଳ ଉତ୍କଳ ଛାତ୍ର ୟୁନିୟନ ।

ଏହି ସମୟ ଥିଲା ବିଦ୍ୟାର୍ଥୀ ପରିଷଦ ଓ ରାଷ୍ଟ୍ରୀୟ ସ୍ୱୟଂ ସେବକ ସଂଘର ଭ୍ରୂଣ ଅବସ୍ଥା । କିଛି ମହାରାଷ୍ଟ୍ରିୟ ପ୍ରଶିକ୍ଷକ ସହରର କେତେକ କୋମଳମତି ବାଳକଙ୍କ ମୁଣ୍ଡରେ ଉଗ୍ର ହିନ୍ଦୁତ୍ୱବାଦ ଓ ସାଂପ୍ରଦାୟିକତାର ବୀଜମନ୍ତ୍ର ପୂରାଇବାକୁ ପ୍ରାଣମୂର୍ଚ୍ଛା ଲାଗି ପଡ଼ିଥିଲେ । ସେଥିପାଇଁ କିଛି କଲେଜ ଛାତ୍ରଙ୍କୁ ମଧ୍ୟ ଆୟୁଧ କରି ଥାଆନ୍ତି । ଆମ୍ଭେମାନେ ଏହାର ଘୋର ବିରୋଧ କରୁଥିଲୁଁ । ସାଂଗଠନିକ ଭାବେ ଛାତ୍ର ସଂଘର ସାମନା କରି ନ ପାରି ସେମାନେ କୌଶଳର ସହ କଂଗ୍ରେସ ଓ ସମାଜବାଦୀମାନଙ୍କ କବଳରେ

ଥିବା ୟୁନିୟନ ଭିତରକୁ ଅନୁପ୍ରବେଶ କରିଯାଇଥିଲେ ଓ ଛାତ୍ରସଂଘକୁ ମରଣ ମାଡ଼ ଦେବାକୁ ସମୟ ଓ ସୁଯୋଗ ଉଣ୍ଡୁଥିଲେ ।

ଏପରି ସମୟକୁ ଆସି ପହଂଚିଲା କଲେଜ ୟୁନିୟନ ନିର୍ବାଚନ । ଗଂଭିର ରାଜନୈତିକ ପଟ୍ଟଭୂମି ଉପରେ ମୁଖ୍ୟତଃ ଦୁଇ ସଂଗଠନ ମଧ୍ୟରେ କଡ଼ା ମୁକାବିଲା ହେଲା । ଛାତ୍ରସଂଘ ତାର ସଭ୍ୟ ସମର୍ଥକ ମାନଙ୍କଠାରୁ ଦାନ ସଂଗ୍ରହ କରି ନିର୍ବାଚନ ଖର୍ଚ୍ଚ ମେଣ୍ଟାଉଥିବା ବେଳେ ୟୁନିୟନର କିଛି ଖର୍ଚ୍ଚ ତୁଲାଉଥାନ୍ତି ଶ୍ରୀ ହରେକୃଷ୍ଣ ମହତାବ । ସବୁ ଖୋଲମ ଖୋଲା ଭାବରେ ଚାଲୁଥାଏ । ଯେ କୌଣସି ଛାତ୍ର ସଂଗଠନ ରାଜନୈତିକ ଅନୁପ୍ରେରଣା ବା ମତବାଦରେ ବିଶ୍ୱାସ ସ୍ଥାପନ କରିବା ସ୍ୱାଭାବିକ । କିଂତୁ ଦଳୀୟ ପାଣ୍ଠି ବା ନେତାଙ୍କର ଅର୍ଥରେ ନିର୍ବାଚନ ପ୍ରଭୃତି ଲଢ଼ିବା ଅନୁଚିତ । ଏବକାର ଦୃଶ୍ୟପଟ ଅଧିକ ନିଆରା । ସାଂଗଠନିକ ଧାର ତ ପ୍ରାୟ ନାହିଁ । ବଡ଼ବଡ଼ ବ୍ୟବସାୟୀ ଓ ଅସାଧୁ କଳା ବେପାରୀଙ୍କ ଠାରୁ ଚାନ୍ଦା ଆଦାୟ କରି କଲେଜ ନିର୍ବାଚନ ଲଢ଼ିବାର ପ୍ରବଣତା ସୃଷ୍ଟି ହୋଇଛି । ଫଳରେ ବିଦ୍ୟାର୍ଥୀ ମାନଙ୍କ ମଧ୍ୟରେ ସାଂସ୍କୃତିକ ଭାବଧାରା ଓ ଚେତନା ତ ସୃଷ୍ଟି ହେଉନାହିଁ ବରଂ ଲଢ଼େଇର ମେଜାଜ କ୍ଷୟ ହୋଇ ଚାଲିଛି । ଭବିଷ୍ୟତ ସମାଜକୁ ଏଥିପାଇଁ ଯଥେଷ୍ଟ ମୂଲ୍ୟ ଦେବାକୁ ପଡ଼ିବ । ଋଷି ପ୍ରତିମ ନବକୃଷ୍ଣ ଚୌଧୁରୀ ସେତେବେଳକୁ  କ୍ଷମତାରୁ ଅପସୃତ ହୋଇ ଗଲେଣି । ରାଜ୍ୟର ଏକ ଦୈନିକ ସଂବାଦପତ୍ର ପ୍ରଥମ ପୃଷ୍ଠାରେ ଲେଖିଲେ ଯେ ଶାସକ ଦଳର ଅର୍ଥ ଓ ବାହୁବଳର ଶୋଚନୀୟ ପରାଜୟ ।

ଫକୀରମୋହନ କଲେଜ ନିର୍ବାଚନରେ ସ୍ୱର୍ଗତ ଗଣେଶକିଙ୍କର ମହାନ୍ତି  ସଭାପତି ଓ ମୁଁ ସଂପାଦକ ଭାବରେ ଆଶାତୀତ ଭୋଟରେ ବିଜୟୀ ହେଲୁ । ଇର୍ଷାରେ ଫାଟି ପଡ଼ିଲେ ପ୍ରତିପକ୍ଷ ମାନେ ଟେନିସ ଫିଲ୍ଡରେ ବିଜୟ ଉତ୍ସବ ମନାଉଥିବା ବେଳେ । ଆମ ଉପରେ ଅଚାନକ ଆକ୍ରମଣ ଚଳାନ୍ତେ ଛାତ୍ରମାନେ ତାଙ୍କୁ  ସିନେମା ଛକ ପର୍ଯ୍ୟନ୍ତ ଘଉଡାଇ ନେଇଥିଲେ ।

କଲେଜ ୟୁନିୟନର ସାଂସ୍କୃତିକ ଉତ୍ସବ  (Cultural Week) ପାଇଁ ସମସ୍ତ ସାମ୍ଭବ୍ୟ ଅତିଥି ବକ୍ତାମାନଙ୍କ ନାମ ପ୍ରାୟତଃ ସର୍ବସମ୍ମତି କ୍ରମେ ୟୁନିୟନ ମିଟିଂରେ ଉପଦେଷ୍ଟାଙ୍କ ଉପସ୍ଥିତିରେ ସ୍ଥିରୀକୃତ ହେବା ସହ ଅଧକ୍ଷଙ୍କ ଅନୁମୋଦନ ମଧ୍ୟ ଲାଭକଲା । କାର୍ଯ୍ୟକ୍ରମର ଗୋଟିଏ ଦିନରେ ମୁଖ୍ୟ ଅତିଥିଭାବେ ୟୁନିୟନ ଓ ଅଧକ୍ଷଙ୍କ ଦ୍ୱାରା ନିମନ୍ତ୍ରିତ ହୋଇ ଆସିଥାଆନ୍ତି ତତ୍କାଳୀନ ପ୍ରତିଷ୍ଠିତ ସାମ୍ବାଦିକ ତଥା ଦୈନିକ 'ଯୁଗାନ୍ତର'ର ସଂପାଦକ ଶ୍ରୀଯୁକ୍ତ ବିବେକାନନ୍ଦ ମୁଖୋପାଧାୟ ।

ଘଟଣାଦିନ ନିର୍ଦ୍ଦିଷ୍ଟ ସମୟ ପୂର୍ବରୁ କଲେଜ ହଲ ପୁରିଯାଇ ବାହାରେ ଲୋକାରଣ୍ୟ । ଅବଶ୍ୟ ଏହା କିଛି ନୂଆ କଥା ନୁହେଁ । ସେତେବେଳେ କଲେଜରେ କିଛି ଉତ୍ସବ ଥିଲେଏବଂ ଯଦି ନାମକରା ବକ୍ତା ଆସୁଥାଆନ୍ତି ତା'ହେଲେ ଏପରି ପରିସ୍ଥିତି ହୁଏ । ବିଧିବଦ୍ଧ ଭାବେ ସଭାକାର୍ଯ୍ୟ ଆରମ୍ଭ ହେଲା । ଶ୍ରୀ ମୁଖାର୍ଜୀ କହିବାକୁ ଉଠି ପ୍ରଥମେ କ୍ଷମା ମାଗିନେଲେ ଯେ, ସେ ଓଡ଼ିଆ ଭାଷା ବୁଝି ପାରୁଥିଲେ ମଧ୍ୟ କହିବା ସମ୍ଭବପର ହୋଇ ପାରୁନଥିବାରୁ ନିଜ ମାତୃଭାଷା ବଙ୍ଗଳାରେ କହିବେ ଏବଂ ଆରମ୍ଭମାତ୍ରେ ପୂର୍ବରୁ ପ୍ରସ୍ତୁତ ହୋଇ ରହିଥିବା ଅଳ୍ପ କିଛି ଛାତ୍ର ପ୍ରତିବାଦ କରି ଶ୍ରୀ ମୁଖାର୍ଜୀ ଓଡ଼ିଆ ନ ହେଲେ ଇଂରାଜୀରେ କୁହନ୍ତୁ ବୋଲି ପାଟିତୁଣ୍ଡ କଲେ । ଉପସ୍ଥିତ ବହୁ ବୁଦ୍ଧିଜୀବୀ ଓ ଅଧାପକ ପ୍ରତିବାଦକାରୀଙ୍କୁ ନୀରବ ରହିବାକୁ ନିବେଦନ କଲେ ମଧ ସବୁ ଫସର ଫାଟିଗଲା । ପ୍ରତିବାଦ ଇଚ୍ଛାକୃତ ହଲ୍ଲାଗୁଲ୍ଲାରେ ପରିଣତ ହେବା ଉତ୍ତାରେ କିଛି ଅଣଛାତ୍ର ଯୁବକ ଚେୟାର ଟେବୁଲ ଫୋପଡ଼ା ଫୋପଡ଼ି କରି ଲଙ୍କାକାଣ୍ଡ ଭିଆଇବାରୁ ଗଣ୍ଡଗୋଳକୁ ନାପସନ୍ଦ କରୁଥିବା କିଛି ଛାତ୍ର ସଭାସ୍ଥଳ ଛାଡ଼ି ପଳାଇଗଲେ । ହଲରେ ଉପସ୍ଥିତ ଥିବା ମୁଖ୍ୟ ଅତିଥି, ଭଦ୍ରମହିଳା ଓ ଛାତ୍ରୀମାନଙ୍କୁ ଅଧାପକମାନଙ୍କ ସହାୟତାରେ ନିରାପତ୍ତା ବଳୟ ମଧ୍ୟରେ ସମସ୍ତଙ୍କୁ ପ୍ରିନ୍ସିପାଲଙ୍କ ଅଫିସ ଓ କମନ ରୁମ ମାନଙ୍କରେ ରଖାଇଲୁ । ପୁଣି ଅଳ୍ପ ସମୟ ବ୍ୟବଧାନରେ କିଛି ପ୍ରତିପକ୍ଷ

ଛାତ୍ର ଓ ଅଣଛାତ୍ର ମିଶି ହଲ ବାହାରେ (ଯେଉଁଠି ଏବେ ବ୍ୟାସକବିଙ୍କ ପ୍ରତିମୂର୍ତ୍ତି ସଂସ୍ଥାପିତ) ଏକଯୋଟ ହୋଇ ''ବିବେକାନନ୍ଦ କଲିକତା ଫେରିଯାଅ, ଛାତ୍ରସଂଘକୁ କବର ଦିଅ'' ପ୍ରଭୃତି ଧ୍ୱନି ଦେଇ କିଛି-ଅବ୍ୟାପାର କରିବାକୁ ବସନ୍ତେ ପ୍ରତିଆକ୍ରମଣର ସମ୍ମୁଖୀନ ହେଲେ । ଅନାକାଂକ୍ଷିତ ବିପର୍ଯ୍ୟୟ ଘଟିବା ପୂର୍ବରୁ ପୋଲିସ ହସ୍ତକ୍ଷେପ କରିଥିଲେ ।

ଏଭଳି ଘଟଣାର ପ୍ରତିବାଦର ସ୍ୱର କେବଳ ଓଡ଼ିଶା ନୁହଁ ବଙ୍ଗଳା ସମେତ ଭାରତର ବିଭିନ୍ନ ସଂବାଦ ପତ୍ର ମାନଙ୍କରେ ପ୍ରତିଧ୍ୱନିତ ହୋଇଥିଲା ।

ଯାହେଉ ତତ୍‌କାଳୀନ ଶାସକ ଦଳର ନେତାଙ୍କ ଇଚ୍ଛାକୁ ପୂରଣ କଲେ ତତ୍‌କାଳୀନ ଡି.ପି.ଆଇ. ଅଧକ୍ଷଙ୍କ ଦ୍ୱାରା ମୋତେ ଏକବର୍ଷ ପାଇଂ ରାସ୍‌ଟିକେଟ କରି । ଅପରାଧ ଥିଲା ମୁଁ କାହିଁକି ତାଙ୍କୁ ନିମନ୍ତ୍ରଣ କଲି । ଅଥଚ ତାଙ୍କ ଆଗମନର କାର୍ଯ୍ୟକ୍ରମ ଅଧକ୍ଷଙ୍କ ଦ୍ୱାରା ଅନୁମୋଦିତ ହୋଇଥିଲା ଓ ସେ ତାଙ୍କ ଦ୍ୱାରା ସ୍ୱତନ୍ତ୍ରଭାବେ ନିମନ୍ତ୍ରିତ ଥିଲେ । ଏସବୁ ରହସ୍ୟ ବଳୟିତ ଘଟଣାରୁ ମନେ ହେଉଥିଲା କୌଣସି କାରଣରୁ 'ପ୍ରଜାତନ୍ତ୍ର' ଓ 'ଯୁଗାନ୍ତର' ମଧ୍ୟରେ ଉପୁଜି ଥିବା ମନାନ୍ତରର ଏହା ଥିଲା ଏକ ପ୍ରତିକ୍ରିୟା ।

ଏତେ ସବୁ ସତ୍ତ୍ୱେ ସେବର ସମୟ ଥିଲା ତାତ୍ପର୍ଯ୍ୟ ପୂର୍ଣ୍ଣ । ଭିନ୍ନଭିନ୍ନ ମତାବଲମ୍ବୀ ଛାତ୍ର-ଛାତ୍ରୀଙ୍କ ମଧ୍ୟରେ ସୌହାର୍ଦ୍ଦ୍ୟ ପୂର୍ଣ୍ଣ ବାତାବରଣ ତିଷ୍ଠି ରହିଥିଲା । ଶିକ୍ଷକମାନଙ୍କ ସହିତ ସଂପର୍କ ଥିଲା ମହତ୍ତ୍ୱପୂର୍ଣ୍ଣ । ସମସ୍ୟା ପ୍ରତି କର୍ତ୍ତୃପକ୍ଷଙ୍କର ଦୃଷ୍ଟି ଆକର୍ଷଣ କରିବାର ପଦ୍ଧତି ମଧ୍ୟ ବହୁ ସମୟରେ ଥିଲା ଭିନ୍ନ । ଅନେକ ମଧ୍ୟରୁ ଦୁଇଟିର ଉଦାହରଣ ସଂକ୍ଷେପରେ ରଖୁଛି ।

ଏହି ସମୟରେ କଲେଜର ବୟସ ଥିଲା ମାତ୍ର ୧୫/୧୬ ବର୍ଷ । ଜିଲ୍ଲା ସ୍କୁଲରେ କଲେଜ ଚାଲୁଥିଲା । ଛାତ୍ରଛାତ୍ରୀ, ଅଧାପକଙ୍କ କମନରୁମ୍, ଶ୍ରେଣୀ କୋଠରୀ, ବିଜ୍ଞାନାଗାର ଏବଂ ପୁସ୍ତକାଗାର ଗୁଡ଼ିକରେ ସେଭଳି କିଛି ସୁବନ୍ଦୋବସ୍ତ ନଥିଲା । ଛାତ୍ରୀମାନଙ୍କ ସଂଖ୍ୟା ତୁଳନାରେ ସେମାନଙ୍କ ଉଦ୍ଦିଷ୍ଟ କମନରୁମ୍ ଥିଲା ଏକାନ୍ତ ସଂକୁଚିତ । ପରିସ୍ରା କରିବାର କୌଣସି ବ୍ୟବସ୍ଥା ନଥିଲା । ଆମେ ଅଧକ୍ଷଙ୍କ ଦୃଷ୍ଟି ଆକର୍ଷଣ କଲୁଁ । କିଂତୁ ସେ ସବୁ ଜାଣି ନ ଶୁଣିଲା ପରି ନୀରବତା ଅବଲମ୍ବନ କଲେ । ଏଣୁ ଆମେ ଏକ ବୁଦ୍ଧି ପାଞ୍ଚି କାର୍ଯ୍ୟକାରୀ କଲୁଁ । ଦିନେ ସକାଳୁ (କଲେଜ ସାତାଟାରୁ ଏଗାରଟା ପର୍ଯ୍ୟନ୍ତ ହେଉଥାଏ) ଦେଖାଗଲା ଗାଲ୍‌ର୍ସ କମନରୁମ ଆଗ ବାରଣ୍ଡାରେ କିଛି ଖାରୁଆ ବାସୁଥିବା ପାଣି ଧାର ହୋଇ ତଳକୁ ବୋହି ଯାଇଛି । ପ୍ରିନ୍‌ସପାଲଙ୍କ ପାଖରେ ଖବର ପହଂଚାଇ ଦିଆଗଲା ଯେ ଅସୁବିଧାରେ ପଡ଼ି ଝିଅମାନେ ପରିସ୍ରା କରି ପକାଇଛନ୍ତି । ସମଝଦାରଙ୍କୁ ଇସାରା କାଫି ପରି ଅଧକ୍ଷ ପ୍ରଫେସର ପହ୍ଲାଦ ପ୍ରଧାନ ଆମକୁ ଡକାଇ ସପ୍ତାହ ମଧରେ ସବୁ ବ୍ୟବସ୍ଥା ହୋଇଯିବ ବୋଲି କହିଲେ । ଏବଂ ନିର୍ଦ୍ଧାରିତ ସମୟରେ ପରିସ୍ରା କରିବାର ବ୍ୟବସ୍ଥା ଥାଇ ଦୁଇଟି କୋଠରୀ ଗାର୍ଲସ କମନରୁମ୍ ପାଇଁ ବ୍ୟବସ୍ଥା କରିଦେଲେ ।

ଆଉ ଏକ ଘଟଣା । ଏଇଟା ଘଟିଥିଲା ଆମ ଅମଳର ବହୁ ପୂର୍ବରୁ । ସେତେବେଳେ ସମ୍ଭବତଃ ପି.ଏସ୍ ସୁନ୍ଦରମ୍ ଅଧକ୍ଷ ଥାନ୍ତି । କଡ଼ାକଡ଼ି ନିୟମ ଥିଲା ପରୀକ୍ଷାର ପ୍ରଥମାର୍ଦ୍ଧରେ ଝାଡ଼ା ପରିସ୍ରା ଯିବାକୁ ମନା । ଯଦି ଦୈବାତ୍ ଯିବାକୁ ପଡ଼ିଲା ତାହାଲେ ଖାତା ଓ ପ୍ରଶ୍ନପତ୍ର ଦେଇ ଯିବାକୁ ପଡ଼ିବ । ଆଉ ପ୍ରବେଶ ନାହିଁ । ଏହା ବିରୁଦ୍ଧରେ ଛାତ୍ରମାନଙ୍କର ସବୁ ଗୁହାରି ଓ ଦଇନି ନାମଞ୍ଜୁର ହୋଇଗଲା । ପ୍ରତିବାଦର ଅଭିନବ କୌଶଳ ଏଇ ଫକୀରମୋହନରୁ ଉଦ୍‌ଭବ ହୋଇଥିଲା । ଥରେ ପରୀକ୍ଷା ଚାଲିଥିଲାବେଳେ ବନମାଳୀ ଅଣ୍ଡିଆ ନାମକ ଅଗ୍ରଜ ଛାତ୍ର ଭୀଷଣ ପରିସ୍ରା ଲାଗୁଛି ବୋଲି ଯିବାକୁ ଅନୁମତି ଚାହାଁନ୍ତେ ତାହା ନାମଞ୍ଜୁର ହୋଇଗଲା । ଏଣୁ ସେ ଅନନ୍ୟୋପାୟ ହୋଇ ବସିଥିବା ମେଜ କାଛ ଆଡ଼କୁ ଛିଡ଼ା ହୋଇ ପରିସ୍ରା କରି ଦେଲେ । ଏଥି ଅନ୍ତେ ଛାତ୍ରମାନଙ୍କର ହୋ ହଲ୍ଲା ପରେ ନିୟମଟି ବଦଳି ଗଲା ।

ଏମିତି ବହୁ କଥା, ବ୍ୟଥା ଓ ନଥା ରହିଛି । ଗୁନ୍ଥି ବସିଲେ କଥାମାନେ ନଇ ହୋଇଯିବେ । ଏଣୁ ପୂର୍ଣ୍ଣଚ୍ଛେଦ ପକାଉଛି ।

ପୁଣି କାହାଣୀଟି ଅସମାପ୍ତ ରହିଯିବ ଯଦି ଉଷାମେସ ଓ ରାମଭାଇ ଚା' ଜଳଖିଆ ଦୋକାନ କଥାର ଆଭାସ ନ ଦିଏ । କବିବରଙ୍କ 'ଉଷା' କାବ୍ୟକୁ ଆଧାର କରି ଆମର ପୂର୍ବଜମାନେ ମେସ୍‌ଟିର ନାମ କରଣ କରିଥିଲେ 'ଉଷାମେସ୍' । ଏହା କଲେଜ ଘେରି କାନ୍ଥର ବିପରୀତ ପାର୍ଶ୍ୱରେ କଲେଜ ଛକ ନିକଟରେ ଥିଲା । ଏବେ ଘର ରହିଚି କିଂତୁ ମେସ୍ ନାହିଁ । ତତ୍‌କାଳୀନ ସମୟରେ ଏହା ଜିଲ୍ଲାର ଛାତ୍ର ଆନ୍ଦୋଳନର ଆକର୍ଷଣୀୟ କେନ୍ଦ୍ରବିନ୍ଦୁ ଥିଲା । ରାଜନୈତିକ ନେତା ଓ ସାରସ୍ୱତ ସାଧକ ମାନଙ୍କର ମଧ୍ୟ ଏଠାରେ ଭେଟ୍‌ଭାଟ୍ ଜମୁଥିଲା । ଏହା ପଛକୁ ଛକ ଉପରେ ରାମ ଭାଇର ଚାହା ପୁରି ଓ ସିଙ୍ଗଡ଼ା ଦୋକାନ ଆମ ମାନଙ୍କ ପାଇଁ ଶସ୍ତାସୁନ୍ଦର ଓ ସୁସ୍ୱାଦୁ ଥିଲା । ରାମ ଭାଇ ପାଖରେ ଧାର ବାକି ଚଳୁଥିଲା । ଏହି ସୂତ୍ରରେ ତାର ଢେର ବାକି ଅନାଦେୟ ପଡ଼ି ଯାଉଥିଲା । ତଥାପି ସେ ଆମକୁ ଚଳାଇ ନେଉଥିଲା । ଆଜି ସେ ଉଦାରତା ଓ ସୌହାର୍ଦ୍ଦ କାହିଁ ?

• ଚର୍ଚ୍ଚ ଲେନ୍
ବାଲେଶ୍ୱର-୧

# କସ୍ତୁରୀମୃଗ ସମ

## ଡଃ ହେମନ୍ତ କମାର ଦାସ

ଫକୀରମୋହନ ମହାବିଦ୍ୟାଳୟର ସୁର୍ବଣ ଜୟନ୍ତୀ ସ୍ମାରକୀ ଗ୍ରନ୍ଥରେ 'ମେଘମେଦୁର' ନାମକ ମୋ ଲିଖିତ ସଂସ୍କରଣଟି ପଢ଼ିବା ପରେ ସେ କାଳର ଦୁଇଜଣ ଛାତ୍ରବନ୍ଧୁ ମୋତେ ଚିଠି ଲେଖିଛନ୍ତି । ପ୍ରଥମବନ୍ଧୁ ହେଉଛନ୍ତି ଜଗବନ୍ଧୁ । ସେ ଲେଖିଛନ୍ତି ବାଲେଶ୍ୱରର ନରେନ୍ଦ୍ରପୁର ନାମକ ଗ୍ରାମରୁ । ତାଙ୍କର ବକ୍ତବ୍ୟ ହେଉଛି, 'ମେଘମେଦୁର'ରେ କେବଳ ମୋର 'ପ୍ରବେଶ ଓ ପ୍ରସ୍ଥାନ' ବିଷୟକ ବର୍ଣ୍ଣନା ଦେଲାବେଳେ ବହୁ ଗୁରୁତ୍ୱ ପୂର୍ଣ୍ଣ ବ୍ୟାପାର ଅନୁକ୍ତ ରହିଯାଇଛି । ବିଶେଷ କରି ସ୍ୱର୍ଗତଃ ମୀନକେତନ ଦାସ (ଯାହାଙ୍କ ସହିତ ମୁଁ ଅନେକ ସମୟରେ ବୁଲୁଥିବାର ସେ ଲକ୍ଷ୍ୟ କରିଥିଲେ) ଙ୍କ ସମ୍ପର୍କରେ ମୋ ଲେଖାରେ କୌଣସି ଉଲ୍ଲେଖ ନାହିଁ । ଦ୍ୱିତୀୟ ବନ୍ଧୁ ବିଜୟ ଦାଶ-ସେ ବୋଧହୁଏ ଏବେ ଗଞ୍ଜାମ ଜିଲ୍ଲାର ସୋରଡ଼ା ଅଞ୍ଚଳରେ ଅଛନ୍ତି । ସେ କାଳରେ ଅଧକ୍ଷଙ୍କୁ ନେଇ ଘଟି ଯାଇଥିବା ଶୋଚନୀୟ ଘଟଣା ସମ୍ପର୍କରେ ମୋତେ ମନେପକାଇ ଦେଇ, ସେ ବିଷୟ ଉପରେ ଆଲୋକପାତ କରିବା ନିମନ୍ତେ ଅନୁରୋଧ ଜଣାଇଛନ୍ତି । ବିଜୟ ବୋଧହୁଏ, ତାଙ୍କ ସମୟରେ ଓଡ଼ିଆ ସାହିତ୍ୟ ସମାଜର ସମ୍ପାଦକ ଥିଲେ ଏବଂ ଆମେ ଏକାଠି ସମାଜର ସଭାସମିତି ଇତ୍ୟାଦି ପରିଚାଳନା କରୁଥିଲୁ ।

ଏଇ ଛାତ୍ରବନ୍ଧୁ ଦ୍ୱୟଙ୍କୁ ମୋର କୃତଜ୍ଞତା ଜଣାଇ କହିବାର କଥା ଯେ, ମଣିଷ ନିଜର କ୍ଷତାକ୍ତ ଦିଗଟିକୁ ସବୁବେଳେ ଅନ୍ୟର ଆଖିରୁ ଲୁଚେଇ ରଖିବାକୁ ଚେଷ୍ଟାକରେ । ଲୁଚାଏ ବୋଲି ଯେ, ସେ ତାକୁ ଭୁଲିଯାଇଥାଏ ଏ କଥା ନୁହେଁ । କ୍ଷତଭଳି ଈର୍ଷାତୁର ପ୍ରଭୁ ଦୁନିଆରେ ଆଉ କେହିନାହିଁ । ଭୁଲିବାକୁ ଚେଷ୍ଟା କଲେ ବି ତାକୁ ଭୁଲିବା କେବେ ସମ୍ଭବ ହୁଏନାହିଁ । ତେବେ ସମସ୍ତଙ୍କ ଜୀବନ ପ୍ରତି ଗୋଟିଏ ନିର୍ଦ୍ଦିଷ୍ଟ ଦୃଷ୍ଟି କୋଣଥାଏ । ସେଇଥିରେ ସେମାନେ ତାକୁ ତଉଲନ୍ତି, ପାଛୁଡ଼ନ୍ତି, ଝାଡ଼ିପୋଛି ସଫା କରନ୍ତି । ଏବେ ମୋ ଜୀବନ ଏମିତି ଏକ ବିନ୍ଦୁରେ ଆସି ପହଞ୍ଚିଛି ଯେ, ଦୁଃଖ-ଆଉ ଯନ୍ତ୍ରଣାକୁ ନେଇ ଜୀବନର ଯେଉଁ ରୂପ, ତାକୁ ଯେମିତି ବେଶୀ ସମୟ ସହ୍ୟ କରିପାରୁନାହିଁ । ବାହାର ଆଡ଼କୁ ଅନାଇବାକୁ ଡର ମାଡୁଛି । ଜୀବନର ବର୍ଣ୍ଣ ଦେଖାଯାଉଛି ନିତାନ୍ତ ଫିକା-ବିବର୍ଣ୍ଣ ଆଉ ବେସୁରା-ଏଇ ଜରାଜୀର୍ଣ୍ଣ ଜୀବନ-ମୋ ଚଷମାରେ ଭାରି ଭୟାବହ ଦେଖାଯାଉଛି । ସେଇଥିପାଇଁ ମୁଁ ସେଠାରୁ ପଳାଇ ଯିବାକୁ ଚାହୁଁଛି, ଆଉ ଏକ ନୂତନ ଇଲାକାର ସନ୍ଧାନ କରିବାକୁ ଚାହୁଁଛି । ରବୀନ୍ଦ୍ରନାଥ -ଲେଖିଥିଲେ, ''ପାଗଲ ପରାୟେ ବନେ ବନେ ଫିରି, ଆପନ ଗନ୍ଧେ ମମ, କସ୍ତୁରୀ ମୃଗ ସମ ।'' ଯେତେବେଳେ ମୁଁ ବାଲେଶ୍ୱରରେ ଥିଲି, ସେତେବେଳେ ଜୀବନ ଥିଲା କେତେ ବର୍ଣ୍ଣାଢ଼୍ୟ, ଆଉ ସମ୍ଭାବନାମୟ । ମନରେ ଶାନ୍ତି ଥିଲା କେତେ ଅଟଳ ! ସେଇଥିରେ ଚାକିରୀର ଭବିଷ୍ୟତ୍ ନିରାପତ୍ତାକୁ ଭ୍ରୂକ୍ଷେପ ନକରି-ପ୍ରଶାସନର ଅନ୍ୟାୟ ଆଦେଶ ବିରୁଦ୍ଧରେ ପ୍ରତିବାଦ କରି ହେଉଥିଲା ।

ସତୁରୀ ଦଶକର ବାଲେଶ୍ୱର ସହର ହେଉଛି ଏକ ନିସ୍ତରଙ୍ଗ , ଘଟଣା-ବୀହୀନ ଗ୍ରାମୀଣ-ସହର । ଯାହା କିଛି ଘଟଣା ସେତେବେଳେ ଘଟୁଥିଲା, କେଲେଜ କୁ କେନ୍ଦ୍ର କରି ହିଁ ଘଟୁଥିଲା । ନିସ୍ତରଙ୍ଗ ଜଳଆସ୍ତରଣରେ ଟେକାଟିଏ ପଡ଼ିଲେ, ଯେମିତି ଜଳରେ ହଠାତ୍ ଆଲୋଡ଼ନ ସୃଷ୍ଟିହୁଏ, କଲେଜର କୌଣସି କୌଣସି ଘଟଣା ମଧ୍ୟ ସେଇ ସକାଳର ନିଦୁଆ ସହରଟିରେ କ୍ଷଣିକ ଚାଞ୍ଚଲ୍ୟ ସୃଷ୍ଟି କରୁଥିଲା । ପୁଣି ଅଳ୍ପସମୟ ଭିତରେ ସବୁ ଶାନ୍ତ ହୋଇ ଯାଉଥିଲା । ସେ ସବୁ ଘଟଣା ତ କେବେହେଲେ ବର୍ଣ୍ଣନା

କରାଯାଇ ପାରିବନାହିଁ । ତାହା ଚିରକାଳ ପାଇଁ ସେ ସମୟର ଲୋକମାନଙ୍କର ମନ ଭିତରେ ବନ୍ଦୀ ହୋଇ ରହିବ । ଖୁବ୍‌ବେଶିରେ ବନ୍ଧୁଗୋଷ୍ଠୀରେ ତାକୁ ନେଇ କିଛି ଭସାଭସା ଆଲୋଚନା କରା ଯାଇପାରେ ମାତ୍ର । ସେଥିରେ ମଣିଷର କ୍ଷୁଦ୍ରତା, ସଂକୀର୍ଣ୍ଣତା ଆଉ ଈର୍ଷାପରାୟଣତାର ନଗ୍ନ ରୂପ ଏମିତି ଦେଖିବାକୁ ମିଳିବ ଯେ, ହୁଏତ ମଣିଷ ଜାତି ଉପରୁ ଭରସା ତୁଟି ଯିବାକୁ ଆରମ୍ଭ କରିବ । ମାଛଟିଏ ପଚିଗଲେ, ପୋଖରୀଟା ଯାକ ମାଛ ବିଷାକ୍ତ ହୋଇଯାଏ । ସେହିଭଳି ଜଣେ/ଅଧେକଙ୍କ ପାଇଁ ସେତେବେଳେ କଲେଜର ବାୟୁମଣ୍ଡଳ ବିଷାକ୍ତ ହୋଇ ରହିଥିଲା । ତା ଦ୍ୱାରା ସହରର କିଛି କ୍ଷତି ବୃଦ୍ଧି ହେବାର କଥା ନୁହେଁ । ମନେ କରାଯାଇପାରେ ଯେ, ପଡ଼ୋଶୀ ପ୍ରଦେଶରେ ସେଇ ସମୟରେ ଏକ ନିର୍ଦ୍ଦିଷ୍ଟ ରାଜନୈତିକ ଦଳଙ୍କର ହିଂସାତ୍ମକ କାଣ୍ଡମାନ ନେଇ ସାରା ଦେଶରେ ବାୟୁମଣ୍ଡଳ ଉତ୍ତପ୍ତ ହୋଇ ରହିଥାଏ । ମଣିଷ ଜୀବନ ସେତେବେଳେ ହୋଇ ଯାଇଥାଏ, ମାଟି ଖପରା ଠାରୁ ବିହୀନ । ଇତିହାସର ସେ ହେଉଛି, ଏକମାତ୍ର କଳଙ୍କିତ ପୃଷ୍ଠା ଯେତେବେଳେ ମୃତ ସନ୍ତାନ ନିମନ୍ତେ ଖୋଲାଖୋଲି ଶୋକପ୍ରକାଶ କରିବାର ଅଧିକାର ମଧ୍ୟ ମାଆ ମାନଙ୍କଠାରୁ ଛଡ଼ାଇ ନିଆ ଯାଇଥିଲା । ପଡ଼ୋଶୀ ପ୍ରଦେଶ ଯେତେବେଳେ ନାରକୀୟତାର ଅଗ୍ନିଶିଖାରେ ଧୁଧୁ ଜଳୁଥିଲା, ସେତେବେଳେ ତାର ଧାସ ତ ବାଲେଶ୍ୱରରେ ବାଜିବା ସ୍ୱାଭାବିକ । ଦୁଃଖର ସହିତ ସ୍ୱୀକାର କରିବାକୁ ହେଉଛି ଯେ କଲେଜରେ ଶିକ୍ଷାର ବାୟୁମଣ୍ଡଳ ଏହି ସମୟରେ ବେଶ୍ ଉତ୍ତପ୍ତ ହୋଇ ରହିଥିଲା । ୧୯୭୨-ମସିହାରେ ଅଧ୍ୟକ୍ଷଙ୍କର ନିଗ୍ରହ ହେଉଛି ଏହାର ଚୂଡ଼ାନ୍ତ ପରିଣତି । ତେବେ ସେ ଘଟଣା-ଘଟିଲା, ମୁଁ ବାଲେଶ୍ୱର ଛାଡ଼ି ଆସିବା ପରେ । ମୁଁ' ଥିବାବେଳେ ଚାରିଆଡ଼େ ଗୋଟାଏ ଅସ୍ୱସ୍ତିକର ବାତାବରଣ ଥିଲା ଠିକ୍ । କେହି କାହାରି ସଙ୍ଗରେ ଏ ବିଷୟରେ ଖୋଲାଖୋଲି ଆଲୋଚନା କରୁନଥିଲେ ମଧ୍ୟ ସମସ୍ତେ କେମିତି ଗୋଟାଏ ସନ୍ତ୍ରସ୍ତଭାବ ନେଇ ଚାଲାବୁଲା କରୁଥିଲେ । ତେବେ ଦୁଇଚାରିଟା ଛୋଟମୋଟ ଘଟଣା ଘଟିବା ଛଡ଼ା କଲେଜ ପରିସରରେ ସେତେବେଳେ ଆଦୌ କୌଣସି ଅପ୍ରୀତିକର ଘଟଣା ଘଟିନାହିଁ । ଏଥିପାଇଁ ମୁଁ ମୋର ସେ କାଳର ଛାତ୍ରବନ୍ଧୁମାନଙ୍କର ସଂଯମ ଓ ସହନଶୀଳତାର ପ୍ରଶଂସା କରିବାକୁ ବାଧ୍ୟ ।

ସୁବର୍ଣ୍ଣ ଜୟନ୍ତୀ ଗ୍ରନ୍ଥରେ ଯେଉଁ ସବୁ ପ୍ରବନ୍ଧ ବାହାରିଛି, ତହିଁରେ ଛାତ୍ରବଂଧୁମାନେ କିଛିକିଛି ସ୍ଥାନରେ ମୋ ସମ୍ପର୍କରେ ମନ୍ତବ୍ୟମାନ ଦେଇଥିବା ମୋ ଆଖିରେ ପଡ଼ିଛି । ଏଥିରେ ମୋ ଭଳି ଜଣେ ଭିଡ଼ରେ ହଜିଯାଇଥିବା ମଣିଷର ବିଶେଷ କୌଣସି କୃତିତ୍ୱ ନାହିଁ । ଆଜି ମଧ୍ୟ ବେଳେବେଳେ ବିଭିନ୍ନ କ୍ଷେତ୍ରରେ ଯେତେବେଳେ ହଠାତ୍ କୌଣସି ଅପରିଚିତ ମୁହଁରୁ 'ସାର୍, ମୁଁ ବାଲେଶ୍ୱରରେ ଆପଣଙ୍କ ଛାତ୍ର ଥିଲି' ବୋଲି ଶୁଣେ, ସେତେବେଳେ ଏଇ ଦେଶରେ, ଏହି ସଂସ୍କୃତିରେ ଜନ୍ମ ହୋଇଥିବାରୁ ଏବଂ ଏଇ ଭଳି ଏକ ବୃତ୍ତି ବାଛି ନେଇଥିବାରୁ ମୋର ଜୀବନ ସାର୍ଥକ ବୋଲି ମୁଁ ମନେକରେ । ମୋର ଦୃଢ଼ ବିଶ୍ୱାସ ହୁଏ, ଯେ, ଏମାନେ ଯଦି ନଥାନ୍ତେ, ତେବେ ମୁଁ ତ ନିଶ୍ଚୟ ହଜିଯାଇ ଥାଆନ୍ତି; ଯେଉଁ ପ୍ରଶାସନିକ ବୃତ୍ତି ଛାଡ଼ିବାରୁ ମୁଁ ସେ କାଳରେ ଘରେ ବାହାରେ ନିନ୍ଦିତ ହୋଇଥିଲି, ସେଇଥିରେ ମଜି ଯାଇଥାନ୍ତି । ମୋର ଆତ୍ମା କୃତ୍ରିମତାର ସେଇ ପରିବେଶରେ ଆର୍ତ୍ତନାଦ କରୁକରୁ ଦିନେ ଅସହାୟ ଭାବରେ ବୁଡି ଯାଇଥାଆନ୍ତା । ମୋର ସମ୍ପୂର୍ଣ୍ଣ ଅସ୍ତିତ୍ୱ ନିମନ୍ତେ ତ ମୁଁ ଏଇଥିପାଇଁ ସେମାନଙ୍କ ନିକଟରେ ଋଣୀ । ରାଜନୈତିକ ଅସ୍ଥିରତାର ସେଇ ସବୁ ରକ୍ତରଙ୍ଗା ଦିନଗୁଡ଼ିକରେ ବାଲେଶ୍ୱରର ଛାତ୍ରସମାଜ ସାମାଜିକ ପରିବର୍ତ୍ତନରେ ସେଇ ତାରତମ୍ୟ ଆକର୍ଷଣଠାରୁ କେଉଁ ଅଟଳ ସଂଯମ ଦ୍ୱାରା ନିଜକୁ ଦୂରେଇ ରଖି ପାରିଥିଲେ, ତାହା ଏବେ ଭାବିଲେ ମୋତେ ଆଶ୍ଚର୍ଯ୍ୟ ଲାଗେ । ଇତିହାସ ସୃଷ୍ଟି କରିବାର ଯେଉଁ ବିପୁଳ ସମ୍ଭାବନା ସେମାନଙ୍କ ଆଗରେ ଖୋଲା ହୋଇ ପଡ଼ିଥିଲା, ସେଥିପ୍ରତି ନିସ୍ପୃହ ରହିବା ଏତେ ସହଜ ନୁହେଁ । ଏହାର କେବଳ ଗୋଟିଏ କାରଣ ଥାଇପାରେ ବୋଲି ମୋର ମନେ ହୋଇଛି । ତାହା ହେଉଛି ଯେ, ଏ ଦେଶର ଅଧିକାଂଶ

ଛାତ୍ର ହେଉଛନ୍ତି ପରମ୍ପରା ପ୍ରତି ଅନୁରକ୍ତ । ସହଜରେ ସେମାନେ ତାହା ଅତିକ୍ରମ କରିବାକୁ ଚାହାଁନ୍ତି ନାହିଁ । ଏଥିପାଇଁ ମୁଁ ବହୁ ଦୃଷ୍ଟାନ୍ତ ଦେଇପାରେ ।

ସେ କାଳର ଛାତ୍ର ଏବଂ ଶିକ୍ଷକଙ୍କର ସମ୍ପର୍କ କି ଭଳି ଥିଲା, ତାହାର ଗୋଟିଏ ଉଦାହରଣ ଦେବାର ଲୋଭ ମୁଁ ସମ୍ବରଣ କରିପାରୁନାହିଁ । ମୁଁ ସେତେବେଳେ ନଲମ୍‌ଗଞ୍ଜର ଗୋଟିଏ ଭଡ଼ାଘରେ ରହୁଥାଏ । ଦିନେ ଅପରାହ୍ନରେ ମୁଁ ଭିତର ପଟ ବାରଣ୍ଡାରେ ବସି କଣ କରୁଛି, ହଠାତ୍ ଜଣେ ଅପରିଚିତ ଯୁବକ ପିଣ୍ଡାତଳେ ପାହାଚ ଉପରେ ଠିଆହୋଇ ମୋତେ ନମସ୍କାର କଲେ । ମୁଁ ଆଶ୍ଚର୍ଯ୍ୟ ହେଲି । ଦାଣ୍ଡ କବାଟ ବନ୍ଦ ଅଛି । ବାରିପଟ ବାଟେ ଆସି ନାହାନ୍ତି । ଅଥଚ ପ୍ରାୟ ଘର ଭିତରକୁ ଇଏ କେମିତି ଆସିଲେ ? ସମୟ ବି ଭଲ ନୁହେଁ । ମୁଁ ଜଳଜଳ କରି ତାଙ୍କ ଆଡ଼େ ଅନାଇ ରହିଲି । ସେ ମଧ୍ୟ ଚୁପ୍ ଥାଆନ୍ତି ।

ସେ ଯେ ଜଣେ ଛାତ୍ର ହୋଇ ପାରନ୍ତି, ଏକଥା ମୋର ଆଦୌ ମନକୁ ଆସିନାହିଁ । ମୁଁ ପ୍ରଥମେ ବିରକ୍ତ ହୋଇ ଉଠିଲି । ସେ ଏଭଳି ଅଲୋଡ଼ା ଅପୋଛା ଭାବରେ ମୋର ଗୋପନୀୟତା ଉପରେ ହସ୍ତକ୍ଷେପ କରି ମୋତେ ଅପମାନିତ କରିଛନ୍ତି । ଦ୍ୱିତୀୟ ରେ ବାହାରପଟୁ ବିଦା ହେବା ଲୋକ ଭିତର ପଟକୁ ଆସିଲେ କେମିତି ?

ମନର ବିରକ୍ତିକୁ ଯଥାସମ୍ଭବ ଗୋପନ ରଖି ମୁଁ ରୁକ୍ଷ ସ୍ୱରରେ ସେଦିନ ତାଙ୍କୁ ପଚାରିଲି, ''କ'ଣ ଦରକାର ?''

ସାର୍, ମୁଁ.....ଯୁବକ ଜଣକ କ'ଣ କହିବା ପୂର୍ବରୁ ବାଧା ଦେଇ ମୁଁ ତାଙ୍କୁ କହିଥିଲି-ତମେ ଯିଏ ହୁଅ, ଦରକାର କ'ଣ ସେଇକଥା କୁହ ।'' ଆଦର ଅନାଦରର ଭାଷା ବୁଝିବା ତାଙ୍କ ପକ୍ଷରେ ଖୁବ୍ କଷ୍ଟ ହୋଇ ନଥିଲା । କିଛି କ୍ଷଣ ପୂର୍ବରୁ ସାରଲ୍ୟ ଏବଂ ଉତ୍ସାହର ଯେଉଁ ଦୀପ୍ତି ଦେଖିବାକୁ ପାଇଥିଲି, ତାହା ହଠାତ୍ ଯେମିତି ଦପ୍ କରି ଲିଭି ଯାଇଥିଲା । ତାଙ୍କର ସେଇ ମ୍ଳାନ ମୁହଁକୁ ଅନାଇ ମୋତେ ଭାରି ଦୁଃଖ ଲାଗୁଥିଲା । ଏବେ ତାଙ୍କର ପ୍ରକୃତ ଅସୁବିଧାଟା ମୁଁ ବୁଝି ପାରୁଥିଲି ।

ପ୍ରତ୍ୟେକ ମଣିଷର ଏକ ବ୍ୟକ୍ତିଗତ ଇଲାକା ଥାଏ । କେବଳ ମାତ୍ର ଅତି ଅନ୍ତରଙ୍ଗ ବ୍ୟତୀତ ଅନ୍ୟ କେହି ସେ ଭିତରକୁ ପାଦ ବଢ଼ାଇବା କଥା ନୁହେଁ । ସହରୀ-ସଂସ୍କୃତିର ଏଇ ହେଉଛି ଗୃହୀତ ନୀତି । ଗାଁର ଲୋକେ ଏ ସବୁର ଧାର୍ ଧାରନ୍ତି ନାହିଁ । ନିର୍ବିକାର ଚିତ୍ତରେ ସେମାନେ ଯେଉଠି ନାହିଁ ସେଠି, ଯେତେବେଳେ ନାହିଁ ସେତେବେଳେ ଉପସ୍ଥିତ ହୋଇ ଯାଆନ୍ତି । ଏଥିପାଇଁ ଅନ୍ୟର ପ୍ରତିକ୍ରିୟା ସମ୍ପର୍କରେ ସେମାନଙ୍କର କୌଣସି ଚିନ୍ତା ନଥାଏ ।

ମୋର ଏଇ ଛାତ୍ର ବନ୍ଧୁ ଜଣକ ହୁଏତ ଏଇ ସଦ୍ୟ ଗାଁରୁ ଆସିଛନ୍ତି । ସହରୀ ଜୀବନର ଚାଲିଚଳଣ ସହିତ ଆହୁରି ଅଭ୍ୟସ୍ଥ ହୋଇ ନାହାନ୍ତି । ତାଙ୍କ ମୁହଁରେ ନିରୀହ-ସାରଲ୍ୟର ଯେଉଁ ସ୍ୱଚ୍ଛନ୍ଦ ଭାବଟି ଫୁଟି ଉଠିଛି, ତହିଁରୁ ଗ୍ରାମ-ଉତ୍କଳର ଭିଜାମାଟିର ସୁଗନ୍ଧ ଖୋଜିଲେ ନିଶ୍ଚୟ ମିଳିବ । ଏ ଭାବ କିନ୍ତୁ ବେଶି ଦିନଯାଏ ରହିବ ନାହିଁ,ଏଇ ଯାହା ଦୁଃଖ । ସହରୀ-ସଂସ୍କୃତି ତାକୁ ଅଚିରେ ଗ୍ରାସ କରିନେବ । ସ୍ୱଚ୍ଛନ୍ଦତା ବଦଳରେ ଆଚରଣରେ ପ୍ରକାଶ ପାଇବ ଏକ କଷ୍ଟକୃତ କୃତ୍ରିମତା -ଯାହାକୁ କୁହାଯାଇଛି 'ସ୍ମାର୍ଟନେସ୍ । ସେଇଟି ଯାହାର ଯେତେ ଶାଣିତ, ସିଢ଼ି ଚଢ଼ିବାର ସଫଳତା ତାଙ୍କର ସେତେ ଅଧିକ ।

ଛାତ୍ରବନ୍ଧୁଙ୍କର ସିଢ଼ି ଚଢ଼ିବାର ସମୟ ହୋଇନାହିଁ । ମହାନଗର ବୋଧର ଜଟିଳତା ଏଇ କାରଣରୁ ହିଁ ତାଙ୍କର ସ୍ୱାଭାବିକ ସାରଲ୍ୟକୁ ନଷ୍ଟ କରି ଦେଇନାହିଁ । ସେ ଦିନ ମୁଁ ମୋର ସେଇ ଛାତ୍ରବନ୍ଧୁଙ୍କୁ ବସାଇ ତାଙ୍କ କଥା ଶୁଣିଥିଲି । ନୂଆ ଖୋଲିଥିବା ଅନର୍ସ ଶ୍ରେଣୀରେ ସେ ଯୋଗଦେବାକୁ ଚାହାନ୍ତି । ବିଜ୍ଞାନର ଛାତ୍ର ହୋଇଥିବାରୁ ଏ ବିଷୟରେ ତାଙ୍କର କିଚି ଦ୍ୱିଧା ଅଛି । ସେଇ ବିଷୟରେ ଆଲୋଚନା କରିବାକୁ ସେ ଆସିଛନ୍ତି ।

ଏବର ଶିକ୍ଷକ ଏବଂ ଛାତ୍ର ସମାଜ ମଧ୍ୟରେ ଏଇଭଳି ଅନ୍ତରଙ୍ଗ ଆଲୋଚନା ହୁଏ କିମ୍ବା ନାହିଁ,

ତାହାମୋତେ ଜଣାନାହିଁ । ତାରୁଣ୍ୟର ସେଇ ସ୍ୱଚ୍ଛ ଏବଂ ଅନାବିଳ ନିଃଶ୍ୱାସ ସହରୀ-ଜୀବନର ସୀମାବଦ୍ଧ ପରିବେଶର ବଦ୍ଧପଲ୍ଲଳତା ଦୂର କରିବାର କି ଭଳି ସହାୟକ ହୋଇଥିଲା ତାହା କେବଳ ଅନୁଭବର ବସ୍ତୁ । ଛାତ୍ରବନ୍ଧୁ ସେଇଦିନ ମୋ ଜୀବନ ଭିତରେ ଗୋଟିଏ ନିର୍ଦ୍ଦିଷ୍ଟ ସ୍ଥାନ ମାଡ଼ି ବସିଲେ । କ୍ରମଶଃ ସେ ମୋ ପରିବାର ର ବି ଗୋଟିଏ ଅଂଶ ହୋଇଯାଇ,ଏବେ ସେଠି ବିରାଜୁଛନ୍ତି । ସେ ହେଉଛନ୍ତି ଆଜିର ଅଧ୍ୟାପକ ରମାକାନ୍ତ ନାୟକ ।

ଛାତ୍ରଶିକ୍ଷକଙ୍କର ସମ୍ପର୍କ ବିଷୟରେ ସୂଚନା ଦେବାକୁ ଯାଇଁ ମୁଁ ଏଇ ଗୋଟିଏ ଘଟଣା କହିଲି । ସାମାନ୍ୟ ଘଟଣାଟିଏ ଅସାମାନ୍ୟ ହୋଇ କି ଭଳି ଭବିଷ୍ୟତ ଜୀବନକୁ ଦିଗ୍‌ଦର୍ଶନ ଦିଏ, ଏଇ ଘଟଣା ହେଉଛି ତାର ଏକ କ୍ଷୁଦ୍ର କିନ୍ତୁ ପ୍ରଭାବଶାଳୀ ଦୃଷ୍ଟାନ୍ତ । ରମାକାନ୍ତ ମୋତେ ଘଟଣାକୁ ସରଳ ଭାବରେ ନେବାକୁ ଶିଖାଇ ଛନ୍ତି । ପରବର୍ତ୍ତୀ କାଳରେ ମୋର ବ୍ୟକ୍ତିଗତ ଆଉ ବୃତ୍ତିଗତ ଜୀବନରେ ମୁଁ ଏଇ ତତ୍ତ୍ୱର ପ୍ରୟୋଗ କରିଛି । ଆଜିର ଦୁନିଆରେ ବେଳେବେଳେ ତାହା ନିର୍ବୋଧତା ବୋଲି ସମାଲୋଚିତ ହୋଇଛି । ମାତ୍ର ସ୍ୱୀକାର କରିବାରେ ଅସୁବିଧା ନାହିଁ ଯେ, ତାହା ଦ୍ୱାରା ମୋର ମାନସିକ ଶାନ୍ତି କଦାପି ବିଘ୍ନିତ ହୋଇନାହିଁ ।

ଏଇ ପ୍ରସଙ୍ଗ ଯେତେବେଳେ ଉଠିଛି, ସେତେବେଳେ ମୋର ଅକାଳ ପ୍ରୟାତବନ୍ଧୁ ଡଃ ମୀନକେତନ ଦାସଙ୍କ କଥା କିଛି କହିଦିଏ । ସେତେବେଳକୁ ସିଏ ଡକ୍ଟର ହୋଇ ନାହାନ୍ତି । ସେଇଠି ମୁଁ ତାଙ୍କୁ ପ୍ରଥମେ ଦେଖିଲି । କମନ୍‌ରୁମ୍‌ର ହଟ୍ଟଗୋଳ ଭିତରେ ସେ କେବେ ନଥା'ନ୍ତି । ଗୋଟିଏ କୋଣରେ ବସି କ'ଣ ଭାବୁଥାନ୍ତି । ଦୈବାତ୍ କେହି ପ୍ରଶ୍ନ ପଚାରିଲେ, ଏକାକ୍ଷରେ ଉତ୍ତର ଦିଅନ୍ତି । ସେଇଥିରୁ ଜଣାପଡ଼େ କଥା କହିବାକୁ ତାଙ୍କୁ ଯେମିତି ଭାରି କଷ୍ଟ ହେଉଛି । ରୁଟିନ୍ ଦାୟିତ୍ୱରେ ଥାଆନ୍ତି । କଲେଜ୍‌ରେ ପ୍ରତ୍ୟେକେ ଜାଣନ୍ତି ଏଇଟି କେଡ଼େ ଅପ୍ରୀତିକର ଦାୟିତ୍ୱ । ସମସ୍ତଙ୍କର କିଛି ନା କିଛି କହିବାର ଥାଏ, ପ୍ରତିବାଦ ଜାହିର କରିବାର ଥାଏ । ସେ ଶୁଣନ୍ତି, ମିତାକ୍ଷରୀ ଉତ୍ତର ବିଶେଷ ପ୍ରୟୋଜନରେ ଦିଅନ୍ତି । ନହେଲେ ସ୍ଲିପ୍ ନିଅନ୍ତି । କ୍ଲାସବେଳେ କରେଣ୍ଟ ମାରିଲାଭଳି ଉଠି ବସି ଖାତା ଆଉ ଚକ୍ ଡଷ୍ଟର ନେଇ ବାହାରି ଯାଆନ୍ତି । ଫେରିବା ପରେ ପୁଣି ସେଇ ଧ୍ୟାନ । କଲେଜ ଶେଷ ହୁଏ, ସମସ୍ତେ ଚାଲି ଯାଆନ୍ତି । ସେ କିନ୍ତୁ ଥାଆନ୍ତି । ଆଖି ବୁଜିଲେ ଏବେ ମଧ୍ୟ ମୁଁ ଦେଖିବାକୁ ପାଏ, ପୁରୁଣା କାଳିଆ ସେଇ ଗଦିଅଣ୍ଡା ସୋଫାରେ ସେ ଲମ୍ବ ହୋଇ ଶୋଇ ଥାଆନ୍ତି । ଗୋଟିଏ ହାତ ମୁଣ୍ଡ ତଳେ ଥାଏ, ଆଉ ଗୋଟିଏ ହାତ ଥାଏ ଦୁଇ ଆଖି ଉପରେ । ଇଭିନିଂ କଲେଜ ପାଇଁ କ୍ଲାସ ଆରମ୍ଭ ହୋଇ ଶେଷ ହୁଏ ଦଶ୍‌ଟା ପାଖାପାଖି । ତା'ରି ଭିତରେ ସେ କେତେବେଳେ ଘରକୁ ଯାଆନ୍ତି ।

କମନ୍‌ରୁମ୍‌ରେ ତାଙ୍କୁ ନେଇ କେତେବେଳେ ଆଲୋଚନା ହୁଏ । ଲଘୁରସର ସ୍ରୋତ ଛୁଟେ । ସେ କିନ୍ତୁ ଥାଆନ୍ତି ସେମିତି ନିର୍ବିକାର । ପ୍ରଥମ ଦର୍ଶନରୁ ହିଁ ମୋତେ ଏହି ମିତବାକ୍ ଅଧ୍ୟାପକଙ୍କୁ ଭାରି ଭଲ ଲାଗିଯାଏ । ଶୁଣିଥାଏ ତାଙ୍କର ସ୍ମରଣୀୟ ଛାତ୍ରଜୀବନର କୃତିତ୍ୱ । ଜାଣିଥାଏ ଆଠବର୍ଷ ପୂରୁଣୁ ତାଙ୍କର ରିଡ଼ର ପାହ୍ୟାକୁ ଉନ୍ନୀତ ହେବାକଥା । ବନ୍ଧୁମାନେ କହନ୍ତି, ନିର୍ଦ୍ଦେଶକ ହେବା ତାଙ୍କ କପାଳରେ ନାଚୁଥିବା କଥା । ମୁଁ କିନ୍ତୁ ତାଙ୍କୁ ଜଣେ ଅଧ୍ୟାପକର ଆଦର୍ଶ ରୂପେ ଗ୍ରହଣ କରିନିଏ । ଧୀରେଧୀରେ ନିଜ ଅଜ୍ଞାତସାରରେ ତାଙ୍କ ପାଖକୁ ପାଖକୁ ଚାଲିଆସେ । କଥାବାର୍ତ୍ତା ବି ସେଇ ଭାବରେ କିଛିକିଛି ହୁଏ ।

ସେ ଦିନ ସଂଧ୍ୟାବେଳେ ମୋତିଗଞ୍ଜ ରାସ୍ତାରେ ମୀନକେତନ ବାବୁ ଗୋଟିଏ ଟିଣର କଡ଼ିଆ ହାତରେ ଧରି ଉଦ୍‌ଭ୍ରାନ୍ତ ଦୃଷ୍ଟିରେ ଉପରକୁ ଅନାଇ ଠିଆ ହୋଇଥିବାର ଦେଖିଲି । ପାଦ ପାଖରେ ଗୋଟିଏ ଟିଣ ଗଡୁଛି ଏବଂ ଟିଣର ବସ୍ତୁ ସବୁ ରାସ୍ତାରେ ବହିଯାଉଛି । ଜଣାଗଲା -ତେଲ ଟିଣ ଧରି ଘରକୁ ଫେରିବା ବାଟରେ ହଠାତ୍ କଡ଼ିଆ ଛିଣ୍ଡି ଏଇ ଦୁର୍ଘଟଣା ହୋଇଛି । ପାଖକୁ ଯାଇ କିଛି କହିବା ପୂର୍ବରୁ ସେ ନିଜେ

ବଡ଼ପାଟିରେ କହିଲେ. "କୁକୁର, ଛୁଅନ୍ତୁ ନାହିଁ ।" ମୁଁ ଚକିତ ହେଲି । ଆଖ ପାଖରେ କୌଣସି କୁକୁର ନଜରରେ ପଡୁନଥିଲେ । କୁକୁରମାନେ ତେଲ ପିଅନ୍ତି ବୋଲି ମୋର ଧାରଣା ନଥିଲା ।

ଖଣ୍ଡ ଖଣ୍ଡ କଥାରୁ ଜଣା ପଡ଼ିଲା, ମୀନକେତନ ବାବୁ ତେଲ ଧରି ରାସ୍ତାରେ ଚାଲୁ ଥିଲାବେଳେ କୁକୁରଟାଏ ତାଙ୍କ ଦେହଦେ ଘଷି ହୋଇ ଚାଲିଗଲା । ରାସ୍ତାର କୁକୁର । ତା'ର ନିଃଶ୍ୱାସରେ ବିଷ । ଶୀଘ୍ର ତାଙ୍କୁ ହାଇଡ୍ରୋଫୋବିଆ ହୋଇଯିବାର ସମ୍ଭାବନା । ଏଇଥିରେ ସେ ଏତେ ସଂତ୍ରସ୍ତ ହୋଇ ପଡ଼ିଛନ୍ତି ଯେ, ହାତରେ ତେଲ କେତେବେଳେ ରାସ୍ତାରେ ପଡ଼ିଗଲାଣି, ତାଙ୍କୁ ଜଣା ନାହିଁ । କୁକୁର ? ସ୍ପର୍ଶରେ ଯେ ସେଡ଼େବଡ଼ ମାରାତ୍ମକ ରୋଗଟିଏ ହେବାର କୌଣସି ସମ୍ଭାବନା ନାହିଁ, ସେଦିନ ସେଇ ବିଦ୍ୱାନ ମଣିଷଟିଙ୍କୁ ବୁଝାଇ ପାରି ନଥିଲି । ବାରମ୍ବାର ମୋତେ ଇଞ୍ଜେକ୍‌ସନ ନେବା କଥା କହୁଥାଆନ୍ତି । କେମିତି ତାଙ୍କୁ ସେଦିନ ସେଠୁଆଣି ଘରେ ଛାଡ଼ିଥିଲି, ସେ କଥା ଏବେ ମୋର ସ୍ପଷ୍ଟ ମନେଅଛି । ଗୋଟିଏ ନିର୍ଦ୍ଦିଷ୍ଟ ମୁହୂର୍ତ୍ତରେ ମଣିଷ କେମିତି ଶିଶୁଭଳି ଅସହାୟ ହୋଇଯାଏ, ତାହା ଲକ୍ଷ୍ୟକରି ମନ ମୋର ଅସ୍ୱାଭାବିକ ଭାବରେ କୋମଳ ହୋଇଯାଇଥିଲା । ଆଉ ମୁଁ ତାଙ୍କର ଅତି ପାଖକୁ ଚାଲିଯାଇଥିଲି ।

ତା'ପର ଦିନ ପାଞ୍ଚଟା ବେଳେ ସେ ଆସି ମୋ ପାଖରେ ପହଞ୍ଚିଲେ ଏବଂ ଆମେ ବୁଲି ବାହାରିଲୁ । ଏଇ ଯେ ବ୍ୟବସ୍ଥା ଆରମ୍ଭ ହେଲା, ସେ ପୂରା ବଦଳି ହୋଇ ଯିବା ଯାଏ । ତାହାର ଆଉ ବ୍ୟତିକ୍ରମ ହୋଇନାହିଁ । ସେତିକିବେଳେ ସେ ନିଜକୁ ମୋ ପାଖରେ ଉନ୍ମୁକ୍ତ କରିଥିଲେ । ତାଙ୍କର ଛାତ୍ରଜୀବନ, ସହକର୍ମୀମାନଙ୍କର ନିଷ୍ଠୁର କୌତୁକରେ ଆହତ ତାଙ୍କର ମନ, ଏସବୁ ମୁଁ ଜାଣି ପାରିଥିଲି । ଅନ୍ୟକୁ କେନ୍ଦ୍ର କରି ମଣିଷ ନିର୍ଦ୍ଦୋଷ ଆନନ୍ଦ ପାଇବାକୁ ଚେଷ୍ଟା କରେ । ଅନେକ ସମୟରେ ଉଦ୍ଦିଷ୍ଟ ବ୍ୟକ୍ତିଟି ଯେ ତହିଁରେ ଆହତ, କ୍ଷତାକ୍ତ ହୋଇପଡ଼େ, ତା'ର ଖବର କେହି ରଖନ୍ତି ନାହିଁ । ମୀନକେତନ ଦାସ ଅନ୍ତର୍ମୁଖୀ ସ୍ୱଭାବର ଥିଲେ । ଏକ ଉଜ୍ଜ୍ୱଳ ଛାତ୍ରଜୀବନ ବ୍ୟତୀତ ଅନ୍ୟନିକଟରେ ନିଜକୁ ପ୍ରକଟ କଲା ଭଳି ତାଙ୍କର କିଛି ନଥିଲା । ସେଇଆକୁ ପୁଞ୍ଜିକରି ସେ ଚମତ୍କାର ଭାବରେ ନିଜକୁ ଅନ୍ୟ ନିକଟରେ ଜାହିର କରି ପାରିଥାଆନ୍ତେ । ମାତ୍ର ସାରା ଜୀବନ ନିଜକୁ ଦବାଇ ରଖିବା ଫଳରେ ତାଙ୍କର ମନ ମଧ ସଂକୁଚିତ ହୋଇଯାଇଥିଲା । ଏଇ ମନ ନେଇ ସେ ସାରାଜୀବନ ଧରି ନିଜେ ଯନ୍ତ୍ରଣା ପାଇଛନ୍ତି ସିନା, ଅନ୍ୟକୁ କେବେ ଜାଣିବାକୁ ଦେଇନାହାନ୍ତି । ତାଙ୍କୁ ସ୍ୱାଭାବିକ କରିବାକୁ ଶ୍ରୀମତୀ ଦାସଙ୍କୁ ଯେ କିଭଳି ପ୍ରାଣାନ୍ତକ ଉଦ୍ୟମ କରିବାକୁ ପଡ଼ିଥିବ, ତାହା କେବଳ ଅନୁମାନ ମାତ୍ର କରାଯାଇପାରେ । ସେଇ ଅଭିଜାତ ମହିଳାଟି ଦିନେ ହେଲେ ଏ ବିଷୟରେ ପଦେ ହେଲେ ଅଭିଯୋଗ ଜଣାଇ ନାହାନ୍ତି । ଚୁପ୍‌ଚାପ୍ ସ୍ମିତ ହାସ୍ୟରେ ନିଜର ସମସ୍ତ ବେଦନାକୁ ମନ ଭିତେର ଦବାଇ ରଖି ସଂସାରର ସମସ୍ତ ଦାୟିତ୍ୱ ମୁଣ୍ଡାଇ ଡଃ ଦାସଙ୍କୁ ନିଜ କାମ କରିବାକୁ ଛାଡ଼ି ଦେଇଛନ୍ତି । ଏମିତି କି ଡଃ ଦାସ ଯେତେବେଳେ କାହାରିକୁ କିଛି ନକହି ଚୁପ୍‌ଚାପ୍ ସଂସାର ଛାଡ଼ି ଚାଲିଗଲେ,ସେତେବେଳେ ମଧ୍ୟ ବହୁ ବିରୂପ ସମାଲୋଚନାର ସମ୍ମୁଖୀନ ହୋଇ ଅଟଳ ରହିଛନ୍ତି । ଦୃଢ଼ ଭାବରେ ଭଙ୍ଗା-ସଂସାରର ଆହୁଲା ହାତରେ ଧରି ବସିଛନ୍ତି । ସେଇ ଦିନମାନଙ୍କରେ ପଥର ହୋଇଯାଇଥିବା ତାଙ୍କର ସେଇ ସ୍ତବ୍ଧ ମୂର୍ତ୍ତିଆଡ଼େ ଅନାଇ ମୁଁ ନିଥର ହୋଇଯାଇ ବାରମ୍ବାର ଈଶ୍ୱରଙ୍କୁ ଡାକିଛି । କହିଛି, 'ଭଗବାନ ମୃତ୍ୟୁ ଦିଅ, ଏମିତି ଦୁର୍ବହ ପରୀକ୍ଷାରେ ପକାଅ ନାହିଁ ।"

ଫକୀରମୋହନ କଲେଜରେ ଅର୍ଦ୍ଧଶତକର ଇତିହାସରେ ମୀନକେତନ ଦାସ ଏକ ଉଜ୍ଜ୍ୱଳ ନାମ । ଓଡ଼ିଶାର ଶିକ୍ଷାବିଭାଗ ତାଙ୍କ ଭଳି ଶିକ୍ଷକପାଇ ପ୍ରକୃତରେ ଧନ୍ୟ ହୋଇଛି । ମୋର କ୍ଷୁଦ୍ର ବିଚାରରେ ଫକୀରମୋହନ କଲେଜର ଇତିହାସରେ ତାଙ୍କ ଭଳି ଶିକ୍ଷକ ଖୁବ୍ ବେଶି ନଥିବେ । ମଣିଷ ଉପରୁ ଭରସା ତୁଟାଇ ସେ ଦିନେ ମୋ ପାଖରେ ଅସହାୟ ଭାବରେ ନିଜକୁ ପ୍ରକାଶ କରିଥିଲେ । ଫକୀରମୋହନ କଲେଜ ମୋତେ ଯଦି ଆଉ କିଛି ନଦେଇ, କେବଳ ତାଙ୍କ ଭଳି ସହକର୍ମୀଟିଏ, ଜୀବନକୁ ରଙ୍ଗୁ ଦୃଷ୍ଟିରେ

ଦେଖୁଥିବାସରଳ ମଣିଷଟିଏର ଅନ୍ତରଙ୍ଗ ସାନ୍ନିଧ ଦେଇ ପାରିଛି, ସେଇଥିପାଇଁ ମୁଁ ଏଇ ଅନୁଷ୍ଠାନ ପାଖରେ ଆଜୀବନ ଋଣୀ । ସେ ମୋର୍ ଗୁରୁ ।

ଉପରେ ଯେଉଁ ଦୁଇଟି ଘଟଣା ବର୍ଣ୍ଣନା କଲି, ସେଥିସହିତ ସମ୍ପୃକ୍ତ ବ୍ୟକ୍ତିଙ୍କ ଦ୍ୱାରା ମୁଁ ବହୁଳ ଭାବରେ ପ୍ରଭାବିତ ହୋଇଥିବାର କଥା ସ୍ୱୀକାର କରିବାରେ ଅସୁବିଧା ନାହିଁ । ଏମାନେ ଜୀବନର ରଙ୍ଗୁ ରୂପର ପ୍ରତୀକ । ଜୀବନର ଜଟିଳ ରୂପର ବିପରୀତମୁଖୀ ପ୍ରବାହ ମଧ; ସେତେବେଳେ ଫକୀରମୋହନ କଲେଜର ପ୍ରାଣକେନ୍ଦ୍ରକୁ ସ୍ପର୍ଶ କରି ତୀବ୍ର ଗତିରେ ବହି ଚାଲିଥିଲା ଏବଂ ସେ ସମୟରେ କଲେଜରେ ଯେଉଁ ଦୁଃଖଦାୟକ ଘଟଣା ଘଟିଥିଲା, ଏହା ହେଉଛି ତାହାର ଏକ ପରିଣତି ମାତ୍ର । ସେ କାଳର ଅଧକ୍ଷ ଜଣେ ଛାତ୍ରନେତାଙ୍କୁ ପରୀକ୍ଷା ହଲକୁ ଯିବା ପୂର୍ବରୁ ଗୋଟିଏ ଦୁଇଟଙ୍କିଆ ନୋଟ ଉପକୌଢ଼ନ ଦେଇ କହୁଥିବାର ଶୁଣିଛି, ନେ, କୋକାକୋଲା ପିଇବୁ । ପରୀକ୍ଷାରେ କିଛି ଗଣ୍ଡଗୋଳ କରିବୁ ନାହିଁ ।'' ଏହା ଭାଗ୍ୟର ବିଡ଼ମ୍ବନା ଯେ, ପରବର୍ତ୍ତୀ ସମୟରେ ସେଇ ନେତା ହିଁ ଅଧକ୍ଷଙ୍କ ନିଗ୍ରହର କାରଣ ହେଲେ । ସେ ଦିନର ସେଇ ଦୃଶ୍ୟଟି ନିଜ ଆଖରେ ଦେଖିଲା ପରେ ମନ ବହୁଦିନ ଅଶାନ୍ତି ରହିଲା । ଜୀବନ ଉପରୁ, ମଣିଷ ଉପରୁ ଶ୍ରଦ୍ଧା ତୁଟିବାକୁ ଆରମ୍ଭକଲା ।

ମୁଁ ଜାଣିଥିଲି , ତାତ୍‌କ୍ଷଳୀନ ସମାଧାନ କୌଣସି ସ୍ଥାୟୀ ସମାଧାନ ନୁହେଁ । ତହିଁରେ ସାମୟିକ ମାନସିକ ସନ୍ତୋଷ ମିଳେ, ମାତ୍ର ଭବିଷ୍ୟତ ପାଇଁ ତାହାହିଁ ହୁଏ ଚରଣ ଦୁର୍ଗତିର କାରଣ । ଏ କ୍ଷେତ୍ରରେ ମଧ ତାହାହିଁ ହୋଇଥିଲା । ଏ ସମ୍ପର୍କରେ ଆଉ ବିଶେଷ ଆଲୋଚନା ସୌଜନ୍ୟ ଦୃଷ୍ଟିରୁ ଉଚିତ ହେବନାହିଁ ।

କୌଣସି ମଣିଷ ନୀତି ଦୃଷ୍ଟିରୁ ଅଭ୍ରାନ୍ତ ବୋଲି କୁହାଯାଇପାରିବ ନାହିଁ । ଯେ ଯେତେବେଳେ ଯେଉଁଟାକୁ ଭଲ ବୋଲି ଭାବେ, ତାହାହିଁ କରିଯାଏ ଏବଂ ତା'ର ଭଲମନ୍ଦ ଉଭୟ ଫଳ ତାକୁ ଭୋଗିବାକୁ ପଡ଼େ । ମଣିଷ ଚିହ୍ନିବାର ଶକ୍ତି ମଧ ସମସ୍ତଙ୍କର ନଥାଏ । ଆମ ଭିତରୁ ଅଧିକାଂଶ ତୋଷାମଦ୍‌ର ରୋମାଞ୍ଚକର ଆକର୍ଷଣରୁ ନିଜକୁ ଦୂରେଇ ରଖି ପାରନ୍ତି ନାହିଁ । ନିଜ ସ୍ୱାର୍ଥ ପାଇଁ କେତେକ ଧୂର୍ତ୍ତ ମଣିଷ ବଶମ୍ବଦ ଭାବନେଇ ପାଖକୁ ଆସନ୍ତି । ବାଗାଡ଼ମ୍ବର ଚକ୍ଷୁ ଭୁଲତାର ଅପୂର୍ବ ଦୋଳନ ସ୍ୱରର ଆରୋହ ଅବରୋହ ର ଚମତ୍କାର ଖେଳ ଦେଖାଇ ଅଜଗର ଭଳି ଶିକାରକୁ ଗ୍ରାସ କରନ୍ତି । ଶିକାରର ଅସହାୟ ଆର୍ତ୍ତନାଦରେ ସେମାନେ ଏକ ହିଂସ୍ର ଜାନ୍ତବ ଆନନ୍ଦ ଅନୁଭବ କରନ୍ତି । ମଣିଷର ଏଇ ଅଜଗରୀ ଲୀଳା ମୁଁ ସେତେବେଳେର ଫକୀରମୋହନ କଲେଜରେ ଦେଖିଥିଲି ।

ଫକୀରମୋହନ କଲେଜର ରଜତ ଜୟନ୍ତୀ ଉତ୍ସବ କଥା ମନେପଡୁଛି । ଏହାକୁ ବର୍ଣ୍ଣାଢ଼୍ୟ ଆଉ ସଫଳ କରିବା ପାଇଁ ସେତେବେଳେର ଅଧିକାଂମଶ ଅଧାପକ ପରିଶ୍ରମ କରିଥିଲେ । ରାଜ୍ୟର କିଛି ଚିନ୍ତାଶୀଳ ପଣ୍ଡିତଙ୍କୁ ଏଥିପାଇଁ ନିମନ୍ତ୍ରଣ କରାଯାଇଥିଲା । ଗୋଟିଏ ଦିନର ଏକ ବିଶେଷ ଘଟଣା ସେତେବେଳେ ବିପୁଳ ହାସ୍ୟରୋଳ ସୃଷ୍ଟି କରିଥିଲା । ସେ ଦିନ ଉଦ୍‌ବୋଧନ ଦେଉ ଥାଆନ୍ତି, ବିଶିଷ୍ଟ ସାହିତ୍ୟିକ (ସ୍ୱର୍ଗତଃ) ସୁରେନ୍ଦ୍ର ମହାନ୍ତି । ସେତେବେଳେ ସେ ଏମ୍.ପି ଥାଆନ୍ତି । ଦିଲ୍ଲୀଯିବା ବାଟରେ ବଲେଶ୍ୱରରେ ଓହ୍ଲାଇ ଥାଆନ୍ତି । ସଭାରେ ଯଥାରୀତି ନେତୃତ୍ୱ ନେଉଥାନ୍ତି ଅଧକ୍ଷ ମହୋଦୟ । ମୁଖ୍ୟ ଅତିଥିଙ୍କର ପରିଚୟ ଦେବାକୁ ଯାଇ ସେ କହିଲେ, ''ଆଜିର ସଭାରେ ଭାଷଣ ଦେବେ ଶ୍ରୀ ସୁରେନ୍ଦ୍ର ନାଥ ମହାନ୍ତି । ପାଖରେ ବସିଥିବା ସୁରେନ୍ଦ୍ର ବାବୁ ତତ୍‌କ୍ଷଣାତ ଉଠି କହିଲେ, ''ମୁଁ ନାଥ ନୁହେଁ ଅନାଥ' ।ଦର୍ଶକ ମଣ୍ଡଳୀର ବିପୁଳହାସ୍ୟରୋଳ, ଅଧକ୍ଷଙ୍କର ବିମୂଢ଼ ଚକିତଭାବ ଏବେ ମଧ ସ୍ପଷ୍ଟ ଭାବରେ ମନେ ଅଛି । କଲେଜର ମୁଖପତ୍ର 'ଫକୀର'ର ରଜତଜୟନ୍ତୀ ସଂଖ୍ୟା କଟକରେ ମୁଦ୍ରିତ ହେଉଥାଏ । ସମ୍ପାଦନା ଦାୟିତ୍ୱରେ ମୁଁ ଥାଏ । ଅଧକ୍ଷଙ୍କର ଫଟୋ ତ ନିଶ୍ଚୟ ସେଥିରେ ରହିବା କଥା । ନିଜର ଫଟୋ ଦେବାବେଳେ ଅଧକ୍ଷ ମୋତେ କହିଥିଲେ, ସେଇ ପାସ୍‌ପୋର୍ଟ ସାଇଜର ଫଟୋକୁ ପ୍ରମିନେଣ୍ଟ କରି ଛାପିବାକୁ । ମୁଦ୍ରକାରଙ୍କୁ

ଫଟୋ ହସ୍ତାନ୍ତର କଲାବେଳେ ମୁଁ କହିଥିଲି -''କ୍ୱାଟର ସାଇଜର କରି ଛାପିବା ପାଇଁ ।'' ଇତି ମଧ୍ୟରେ ମୋର ସ୍ଥାନାନ୍ତର ହୋଇଗଲା । ମୁଁ ବ୍ରହ୍ମପୁର ଚାଲିଗଲି । ପତ୍ରିକାର ଛପାଛପି କାମର ତଦାରଖ କରିବାର ଅବସର ପାଇଲି ନାହିଁ । ହଠାତ୍ ଶୁଣିବାକୁ ପାଇଲି, ପତ୍ରିକାକୁ ନେଇ ବାଲେଶ୍ୱରରେ ଲଙ୍କାକାଣ୍ଡ ହୋଇଯାଇଛି । ଦ୍ୱନ୍ଦ୍ୱର କାରଣ ହୋଇଛି ଅଧ୍ୟକ୍ଷଙ୍କ ଫଟୋ । ଦ୍ୱିତୀୟ ପୃଷ୍ଠା ପରେ ପୂରାପୃଷ୍ଠାରେ ଅଧ୍ୟକ୍ଷଙ୍କ ବିଶାଳ ଫଟୋ ଦେଖି ପିଲାମାନଙ୍କର ମୁଣ୍ଡ ଗରମ ହୋଇଯାଇଛି । ସେମାନେ ପତ୍ରିକାନେଇ ଅଧ୍ୟକ୍ଷଙ୍କ ଅଫିସ ଆଗରେ ଚରିଛନ୍ତି ଏବଂ ଏହାର କାରଣ ଜାଣିବାକୁ ଚାହିଁଛନ୍ତି । ଅଧ୍ୟକ୍ଷ ସମ୍ପାଦନା ମଣ୍ଡଳୀର ଅନ୍ୟମାନଙ୍କୁ ପଚାରି ମୋତେ ଦୋଷୀ ସାବ୍ୟସ୍ତ କରିଛନ୍ତି ସତ୍ୟ, ମାତ୍ର ମୁଁ ତ ପାଖରେ ନାହିଁ । ସେଥିପାଇଁ ନା ତାପରେ ଆଉ ଲେଖିବା ଉଚିତ ହେବନାହିଁ । ପ୍ରକୃତରେ ଅପରାଧ ମୋର ଥିଲା । କଟକରେ ଛପା ଯାଉଥିବା ପତ୍ରିକା ସମ୍ପର୍କରେ ଖବରାଖବର ରଖିବା ମୋର ଉଚିତ ଥିଲା । ବଦଳିର ଅସ୍ଥିରତା ଭିତରେ ତାହା ମୁଁ କରି ପାରିନାହିଁ । ସାମାନ୍ୟ ଗୋଟିଏ ଫଟୋ । ପତ୍ରିକାରେ ତ ଆହୁରି ବହୁତ ଫଟୋ ଥିଲା । ସେଥିପାଇଁ କୌଣସି ପ୍ରତିବାଦ ହେଲା ନାହିଁ । ମୁଁ ଏବେ ମଧ ବୁଝିପାରୁ ନାହିଁ, ଏଇ ଗୋଟିକ ଫଟୋ ପାଇଁ ଏତେ ସମସ୍ୟା କାହିଁକି ହେଲା । କଲେଜର ପ୍ରଶାସନ ଏବଂ ଛାତ୍ରମାନଙ୍କ ମଧ୍ୟରେ ସମ୍ପର୍କ କେଉଁ ସ୍ତରକୁ ଯାଇଥିଲା ଏଇ ଘଟଣାରୁ ତା'ର ଗୋଟାଏ ସୂଚନା ମିଳିଛି । ତା'ପରେ ତ ସେଠି ଘଟଣା ସବୁ ଦ୍ରୁତ ଗତିରେ ଘଟି ଯିବାକୁ ଲାଗିଲା । ଛୁଞ୍ଚିରେ ଛିଡ଼ିବା କଥା ଶାବଳରେ ଯାଇ ପହଞ୍ଚିଲା । ସେ ବିଷୟରେ ନୂଆ କଛି ମନ୍ତବ୍ୟ ଦେବାର ନାହିଁ ।

ସେ ସମୟରେ ବାଲେଶ୍ୱର ଥିଲା ଏକ ଶାନ୍ତି ଏବଂ ଘଟଣା ବିହୀନ ଇଲାକା । ଦେଶର ଅଶାନ୍ତ ରାଜନୈତିକ ପରିସ୍ଥିତି ର ପ୍ରତିକ୍ରିୟା ଛାତ୍ରସମାଜ ଉପରେ ପଡ଼ିବା ସ୍ୱାଭାବିକ । ଏଭଳି ଏକ ସ୍ଥିତିରେ ସେମାନଙ୍କର କ'ଣ କରିବା ଉଚିତ, ଏ କଥା ସେମାନେ ସ୍ଥିର କରିପାରୁନଥିଲେ । କେବଳ ଉପଯୋଗ ଜାଣିଥିଲେ । ପରିସ୍ଥିତି ସେମାନଙ୍କ ହାତରେ ଅଖଣ୍ଡ କ୍ଷମତା ଦେଇ ଦେଇଛି । ତାହାର ଉପଯୋଗ କରିବାକୁ ହେବ । କେମିତି ଏହାର ବିନିଯୋଗ କରିବାକୁ ହେବ, ଏ ବିଷୟରେ ସେମାନଙ୍କର କୌଣସି ସ୍ପଷ୍ଟ ଧାରଣା ନଥିଲା । ସେମାନଙ୍କର ବୟସରେ ଆବେଗଟା ଅଧିକ ହେବା କଥା ଏବଂ ଏହା ମଣିଷକୁ ଯଥାର୍ଥତା ଠାରୁ ଦୂରେଇ ନିଏ । ଏଇ ବିନ୍ଦୁରେ ପହଞ୍ଚି ସେମାନେ ସମାଜକୁ ବଦଳାଇ ଦେବାରୁ ସ୍ୱପ୍ନ ଦେଖନ୍ତି , ଅନ୍ତତଃ ସେତେବେଳେର ରାଜନୀତି ଏଇ କଥାଟିକୁ ନିଜର ଆଦର୍ଶ ରୂପରେ ପ୍ରଚାରିତ କରୁଥାଏ । ଏହାକୁ ହିଁ ସେମାନଙ୍କ ଭାଷାରେ ଶ୍ରେଣୀ ସଂଘର୍ଷ ବୋଲି କୁହାଯାଉଥାଏ । ଓଡ଼ିଶାରେ ଧନୀ ଦରିଦ୍ର ଶ୍ରମିକମାଲିକ ମଧ୍ୟରେ ସେଭଳି କୌଣସି ଉଲ୍ଲେଖ ଯୋଗ୍ୟ ସଂଘର୍ଷ ହୋଇଥିବାର ଦେଖା ଯାଇନାହିଁ । ଆଉ ପୁଣି ଛାତ୍ରମାନେ ଧନୀ ନଥିଲେ କି ଦରିଦ୍ର ନଥିଲେ; ସେମାନେ ମାଲିକ ଗୋଷ୍ଠୀର ପ୍ରତିନିଧି ନଥଲେ କିମ୍ବା ଶ୍ରମିକମାନଙ୍କର ପ୍ରତିନିଧିତ୍ୱ ମଧ କରୁ ନଥିଲେ । ତଥାପି ସେମାନେ ଗୋଟିଏ ଗୋଷ୍ଠୀ ଏବଂ ପରିସ୍ଥିତି ସେମାନଙ୍କ ହାତରେ ଅଖଣ୍ଡ କ୍ଷମତା ଦେଇ ଦେଇଥିବାର ଜଣା ପଡୁଥିଲା । ଏହି ବିନ୍ଦୁରେ ସେମାନଙ୍କ ଆଗରେ ହାତ ପାଖରେ ଥିଲେ, ଆଉ ଗୋଟିଏ ଗୋଷ୍ଠୀ -ସେମାନେ ହତଭାଗ୍ୟ ଶିକ୍ଷକଗୋଷ୍ଠୀ । ଛୋଟ ପିଲାଟିଏ ନିଜେ ଦେଖିଥିବା ଅପେରାକୁ ମନେ ପକାଇ ହାତରେ ଟିଣର ତରୱାଲ ଧରି ଯେମିତି ନିଜର କଳ୍ପିତ ପ୍ରତିଦ୍ୱନ୍ଦୀମାନଙ୍କ ବିରୁଦ୍ଧରେ ଯୁଦ୍ଧ କରିଚାଲେ, ସେମିତି ସେତେବେଳର ଶିକ୍ଷକଗୋଷ୍ଠୀ ଏଇ ବୀରମାନଙ୍କର ରୁଦ୍ଧ ଉତ୍ତେଜନାର ଶିକାର ହୋଇ ପଡ଼ିଲେ । କହିବା ବାହୁଲ୍ୟଯେ, ଏଇ ଖେଳର ନାୟକ ଥିଲେ, ଛାତ୍ରସମାଜର ମୁଷ୍ଟିମେୟ ପ୍ରତିନିଧି । ଅଧିକାଂଶ ଛାତ୍ର ଏ ସମ୍ପର୍କରେ ଉଦାସୀନ ହିଁ ଥିଲେ । ଆବେଗ ହେଉ ଅବା ଉତ୍ତେଜନା ହେଉ, ଏସବୁ କିଛି ଦୀର୍ଘକାଳ ବ୍ୟାପି ହୁଏନାହିଁ । ସେତେବେଳର ପରିସ୍ଥିତି ମଧ ବେଶିଦିନ ରହିଲା ନାହିଁ । ଏହାର ଅଳ୍ପ କେତେଦିନ ପରେ ଜରୁରୀ କାଳୀନ ପରିସ୍ଥିତି ଜାରି ହେବାରୁ ଦେଶର

ଅବସ୍ଥା ପୂରାପୂରି ବଦଳିଗଲା । ତେବେ ଏଇ ସମୟ ମଧ୍ୟରେ ଛାତ୍ରଶିକ୍ଷକ ସମ୍ପର୍କର ଯେଉଁ କ୍ଷତି ହୋଇଥିଲା, ତାହା ଏ ପର୍ଯ୍ୟନ୍ତ ମଧ୍ୟ ପୂରଣ ହୋଇ ପାରିଛି ବୋଲି ମୋର ବିଶ୍ୱାସ ନୁହେଁ । ଏ ସବୁ ଆନ୍ଦୋଳନ (ଯଦି ଏହାକୁ ସେଇଆ କୁହାଯାଏ) ର ଯେ ଆଦୌ କୌଣସି ଦର୍ଶନୀୟ ଫଳ ମିଳିନାହିଁ, ଏହା ନ କହିଲେ ମଧ ଚଳିବ ।

ସେହି ସମୟର ଗୋଟିଏ କଥା ମନେ ପଡୁଛି । ମକର ସଂକ୍ରାନ୍ତିରେ ଫକୀରମୋହନଙ୍କର ଜୟନ୍ତୀ ଉତ୍ସବ ଶାନ୍ତିକାନନରେ ଚାଲିଥାଏ । ସେତେବେଳେ ତାହାହିଁ ଥାଏ ବାଲେଶ୍ୱରର ଏକମାତ୍ର ସାହିତ୍ୟ ସଂସ୍କୃତି ବିଷୟକ ଉତ୍ସବ । ସେ ବର୍ଷ ସଭାରେ ଜଣେ ଯୁବକବକ୍ତା ଉଚ୍ଚକଣ୍ଠରେ ଘୋଷଣା କଲେ ଯେ, ଫକୀରମୋହନ ହେଉଛନ୍ତି ଜଣେ ବୁର୍ଜୋଆ ଏବଂ ନିରୀହ ପ୍ରଜାମାନଙ୍କ ଉପରେ ଅମାନୁଷିକ ଅତ୍ୟାଚାର ଚଳାଇ ସେ ନିଜର ବୁଦ୍ଧିର ଡିଣ୍ଡିମ ପିଟିଛନ୍ତି । ସେ ଆହୁରି କହିଲେ ଯେ, ଲୋକେ ତାଙ୍କୁ କାଠଗଡ଼ରେ ବାନ୍ଧି ତାଙ୍କ ପିଠିରେ ଦୁଧଘିଅ ଢାଳାଇ ଚାବୁକ ମାରିବା ଉଚିତଥିଲା । ନିଜେ ସେ ଡମପଡ଼ାର ବିଦ୍ରୋହୀ ପ୍ରଜାଙ୍କୁ ନିୟନ୍ତ୍ରଣ କରିବା ନିମନ୍ତେ କରିଥିଲେ । ନିଜ ସମୟରେ ଫକୀରମୋହନ କ'ଣ କରିଥିଲେ, କାହିଁକି କରିଥିଲେ ତାହାର ଏକ ବିବରଣୀ ଆପେ ଦେଇ ଯାଇଛନ୍ତି । ତାଙ୍କୁ ବିଚାର କଲାଭଳି ଯୋଗ୍ୟତା ଆମେ ଅର୍ଜନ କରିଛୁ, କିମ୍ବା ନାହିଁ ତାହା ଅଲଗା କଥା । ମାତ୍ର ଜୟନ୍ତୀ ସଭାରେ ଯେଉଁଠି ଆମେ ଉତ୍ତର ଦାୟାଦଙ୍କ ଆଗରେ ଏକ ମହତ୍‌ଜୀବନର ଆଦର୍ଶ ବାଢ଼ିବାକୁ ଯାଉଛୁ, ସେଠାରେ ଏ ଧରଣର ଆଲୋଚନା ଯେ ଆଦୌ ସ୍ପୃହଣୀୟ ନୁହେଁ, ଏ କଥା କହି ମୁଁ ପ୍ରତିବାଦ କରିଥିଲି । ଏ ଘଟଣା ଉଲ୍ଲେଖ କରିବାର ଏକମାତ୍ର କାରଣ ହେଉଛି, ସେ କାଳର ଯୁବମାନସର ସ୍ଥିତିଟିକୁ ଦେଖାଇଦେବା । ଦୃଷ୍ଟି ଆକର୍ଷଣ କରିବା ପାଇଁ ସେମାନେ କେଉଁ ବାଟରେ ଗ୍ରହଣ କରି ନେଇଥିଲେ, ଏଥିରୁ ତାହାର ସ୍ପଷ୍ଟ ସୂଚନା ମିଳିବ ।

ସବୁଯୁଗରେ, ସବୁକାଳରେ ମଣିଷ ଭିତରେ ଏଭଳି ଅନେକ ଥାଆନ୍ତି । ବେଳେବେଳେ ସେମାନେ ଏଇ ବାଟରେ ନିଜପାଇଁ କିଛି କିଛି ସ୍ୱୀକୃତି ମଧ ଆଦାୟ କରି ନିଅନ୍ତି । ମାତ୍ର ସେ ସବୁ ନିତାନ୍ତ ସାମୟିକ । ଫକୀରମୋହନ ଉତ୍ତୁଙ୍ଗ ହିମାଳୟ । ସେଠାକୁ ଟେକାଟିଏ ପକାଇଲେ, ତାହା ଫେରିଆସି ପକାଇଥିବା ଲୋକଙ୍କୁ ଆଘାତ କରିବ ସିନା, ହିମାଳୟର କି ଅବା କ୍ଷତି ସେଥିରେ ହେବ ? ବକ୍ତା ତ କାହିଁ କୁଆଡ଼େ ହଜିଗଲେଣି, ଫକୀରମୋହନ ଯେମିତି ଥିଲେ ସେମିତି ଅଛନ୍ତି ।

ଏଥରକପାଇଁ ମୋର ବକ୍ତବ୍ୟ, ଏତିକିରେ ଶେଷ କରିବା ଉଚିତ ହେବ । ଦୁଇଜଣ ଛାତ୍ରବନ୍ଧୁ ମୋର ପୂର୍ବସଂସ୍କରଣ ସମ୍ପର୍କରେ ଯେଉଁ ଅନୁଯୋଗ ଜଣାଇଥିଲେ, ମୋର ବିଶ୍ୱାସ ମୁଁ ସେମାନଙ୍କ ପ୍ରତ୍ୟାଶାକୁ କିଛି ମାତ୍ରାରେ ପୂର୍ଣ୍ଣ କରିପାରିଛି । ଯାହା ବି କହି ପାରିଲି ନାହିଁ, ସେଥିପାଇଁ ମୋର ନିରୁପାୟତାକୁ ସେମାନେ ନିଜ ଗୁଣରେ କ୍ଷମାଦେବେ । ସେମାନେ ନିଶ୍ଚୟ ବୁଝିପାରିଥିବେ ଯେ, ମଣିଷକୁ ଠିକ୍ ଭାବେ ବୁଝିପାରିବା ଅନ୍ୟ ଜଣେ ମଣିଷ ପକ୍ଷରେ ଆଦୌ ସମ୍ଭବ ନୁହେଁ । ସମସ୍ତଙ୍କର ନିଜସ୍ୱ ସୀମାବଦ୍ଧତା ଥାଏ, ଜୀବନ ପ୍ରତି ନିଜସ୍ୱ ଦୃଷ୍ଟିକୋଣ ଥାଏ । ଉପରୁ ଉପରୁ ଦେଖି ଅନ୍ୟ ସମସ୍ତଙ୍କ ସମ୍ପର୍କରେ ମନ୍ତବ୍ୟ ଦେବା ସହଜ ହୋଇପାରେ, ମାତ୍ର ସ୍ପୃହଣୀୟ ନୁହେଁ ।

ବାଲେଶ୍ୱର ରହଣି ମୋ ପାଇଁ ଏକ ଅତ୍ୟନ୍ତ ସ୍ମରଣୀୟ ସମୟ ଥିଲା । ଏଇ ସମୟ ଭିତରେ ମୁଁ କିଛି ପାଇନାହିଁ, କିମ୍ବା କାହାକୁ କିଛି ଦେଇନାହିଁ । ତଥାପି ଦ୍ୱନ୍ଦହୀନ-ଗଭୀର ମାନସିକ ପ୍ରଶାନ୍ତି ଭିତରୁ ସମୟ କଟାଇ ଦେଇଛି । ଏତକ ସମ୍ଭବ ହୋଇଥିଲା କେବଳ ମୋର ସହକର୍ମୀ ଓ ଛାତ୍ରବଂଧୁମାନଙ୍କର ସ୍ମରଣୀୟ ସହଯୋଗରୁ । ସହକର୍ମୀମାନଙ୍କ ଭିତରୁ କେତେକ ବିଦାୟ ନେଇଗଲେଣି । ଯେଉଁମାନେ ଅଛନ୍ତି, ବେଳେବେଳେ ସେମାନଙ୍କ ସହିତ ଦେଖା ହେଉଛି । ସେଥିରେ ଆଉ ପୂର୍ବର ସେଇ ଉଷ୍ମତା ନାହିଁ । ସମୟହିଁ ମନର ସେଇ ସତେଜଭାବକୁ ଟିକିଟିକି କରି ଖାଇଯାଇଛି । ଅଛନ୍ତି ପୂର୍ବର

ଛାତ୍ରବନ୍ଧୁମାନେ । ସେମାନେ ହଠାତ୍ ହଠାତ୍ ମନେ ପକାନ୍ତି । ଖବରକାଗଜରେ, ବେତାରରେ, ଦୂରଦର୍ଶନରେ ମୋର ନାମ କି ମୁହଁ ଦେଖିବା ମାତ୍ରେ ସେମାନେ ଆବେଗ ମୁଖର ହୋଇ ଉଠନ୍ତି । ପାଖରେ ଥିଲେ ନିଜେ ଆସି, ଦୂରରେ ଥିଲେ ପତ୍ରମାଧ୍ୟମରେ ନିଜର ଶୁଭକାମନା ପଠାଇ ଦିଅନ୍ତି । ସେତିକିବେଳେ ମନେହୁଏ ଜୀବନ ତ ବ୍ୟର୍ଥ ହୋଇନାହିଁ । ଚାଲିବା ବାଟ ତ କଣ୍ଟକାକୀର୍ଣ୍ଣ ହୋଇନାହିଁ । ନିଜ ଭିତରୁ ଜୀବନର ସାର୍ଥକତା ଖୋଜିବା ସେଇଥିପାଇଁ ଏକ ଅସାର କଥା । ଯେତେଦିନ ପର୍ଯ୍ୟନ୍ତ ଏମାନେ ଅଛନ୍ତି, ନିଜ ତାରୁଣ୍ୟର ବର୍ଣ୍ଣରେ ଆଉ ଗନ୍ଧରେ ପ୍ରବୀଣତାର ସମସ୍ତ ବିବର୍ଣ୍ଣତା ଆଉ ନିର୍ଗନ୍ଧତାକୁ ଦୂର କରିଦେଇ ପାରୁଛନ୍ତି, ସେତେଦିନ ଯାଏ ଆଉ ଜୀବନ ବ୍ୟର୍ଥ ହେବାକୁ ବାଟ କାହିଁ ? ଜୀବନପାଣ୍ଠିରୁ ମପାଚୁପା ସମ୍ପଦ ଦ୍ରୁତଗତିରେ ଶେଷହେବାର ଲାଗିଛି । ଅଚିରେ ଏହା ସମ୍ପୂର୍ଣ୍ଣ ନିଃଶେଷ ହୋଇଯିବ, ଏହା ଜଣାଶୁଣା କଥା । ବହୁତ ମାଇଲ୍ ଖୁଣ୍ଟ ଅତିକ୍ରମ କଲା ପରେ ଜୀବନ ତାର ଶେଷ ମାଇଲ ଖୁଣ୍ଟ ପାଖରେ ପହଞ୍ଚିଯିବ । ସେଇଠି ଗତିଶେଷ ହେବ । ଆଗକୁ ଆଉ ବାଟ ମିଳିବ ନାହିଁ । ପୁରୁଣା ପତ୍ର ଡେମ୍ଫରୁ ଝରି ପଡ଼ିବ । ଠିକ୍ ସେଇଠୁ ନୂଆପତ୍ର ଆତ୍ମପ୍ରକାଶ କରିବ । ପୁରୁଣା ନୂଆ ହେବ । ଏଥିରେ ଚକିତ ବିସ୍ମିତ ହେବାର କିଛି ନାହିଁ । ଗାଡ଼ିଘୋଡ଼ା ଯାନବାହାର କିଛି ହିଁ ତ ସେ ସମୟରେ କାମରେ ଆସିବ ନାହିଁ । ଏତେ ପରିଶ୍ରମରେ ଅର୍ଜିତ ଧନସମ୍ପତ୍ତିରୁ କାଣି କଉଡ଼ିଟିଏ ବି ସାଙ୍ଗରେ ନେଇ ହେବନାହିଁ । ଉପରେ କୌଣସି ବ୍ୟାଙ୍କ୍ ନାହିଁ ଯେ ! ସବୁତ ଏଇଠି ଛାଡ଼ିଦେଇ ଯିବାକୁ ପଡ଼ିବ ।

ଖାଲି ଗୋଟିଏ ଚିନ୍ତା, ଯେଉଁମାନଙ୍କ ସହିତ ଜୀବନସାରା ବାଟ ଚାଲି ଆସିଲି, ସେମାନେ ପାଖରେ ଥିବେ ତ ? ଏ ଆଶ୍ୱାସନା ବା ପ୍ରତିଶ୍ରୁତି କିଏ କାହାକୁ ଦେବ ?

• ହାରାମଣି ନିବାସ
ଦେଉଳ ସାହୀ
କଟକ-୭୫୩ ୦୦୮

# ହୀରକ ଜୟନ୍ତୀରେ ସ୍ମୃତି ରୋମନ୍ଥନ

## ଶ୍ରୀ ଗୟାଧର ବାରିକ୍

ଫକୀରମୋହନ ମହାବିଦ୍ୟାଳୟ ରାଜ୍ୟସରକାରଙ୍କ ଦ୍ୱାରା ୧୯୪୪ ମସିହାରେ ପ୍ରତିଷ୍ଠିତ ହୋଇ ଇତିମଧ୍ୟରେ ୬୦ଟି ବର୍ଷ ଅତିକ୍ରାନ୍ତ ହୋଇ ଥିବାରୁ ଚଳିତ ମାର୍ଚ୍ଚ ମାସ ତା୨୧ରିଖ ଦିନ ଏହି ଐତିହାସିକ ମହାବିଦ୍ୟାଳୟର 'ହୀରକ ଜୟନ୍ତୀ' ଉତ୍ସବ ପାଳିତ ହେଉଛି । ମୋ ଭଳି ଏହି ମହାବିଦ୍ୟାଳୟର ସମସ୍ତ ପୁରାତନ ଛାତ୍ରଛାତ୍ରୀ, ଅଧ୍ୟାପକ, ଅଧ୍ୟାପିକା ଓ ଜନସାଧାରଣଙ୍କ ପକ୍ଷରେ ଏହା ଅତ୍ୟନ୍ତ ଗର୍ବ ଓ ଗୌରବର ବିଷୟ । ଏହି ମହାବିଦ୍ୟାଳୟରୁ ମୁଁ ବି.ଏ. ପାସ୍ କରିଥିଲି ୧୯୫୩ ମସିହାରେ ଏବଂ ମୋର ଅନ୍ୟତମ ପୁତ୍ର ଶ୍ରୀମାନ ଉପେନ୍ଦ୍ର କୁମାର ବାରିକ୍ ଏମ୍.କମ୍. ପାଶକରି ଭଦ୍ରକସ୍ଥ ଫେକର ଚାର୍ଜକ୍ରୋମ ତଥା ବଉଲା ମାଇନ୍‌ସର ଜଣେ କର୍ମଚାରୀ ଭାବେ କାର୍ଯ୍ୟରତ ଅଛନ୍ତି । ମାତ୍ର ୧୯୫୩ ମସିହାରେ ମୁଁ ଏହି ମହାବିଦ୍ୟାଳୟରୁ ବି.ଏ. ପାଶ୍ କରିବା ପରେ କଟକସ୍ଥ ମଧୁସୂଦନ ଆଇନ ମହାବିଦ୍ୟାଳୟରେ ନାମ ଲେଖାଇ ୩ ମାସ ଅଧ୍ୟୟନ କରିବା ପରେ ମହାତ୍ମାଗାନ୍ଧିଙ୍କର ପଟ୍ଟଶିଷ୍ୟ ଆଚାର୍ଯ୍ୟ ବିନୋବା ଭାବେ, ଜୟପ୍ରକାଶ ନାରାୟଣ, ଜାତୀୟ କଂଗ୍ରେସର ପୂର୍ବତନ ସଭାପତି ସଞ୍ଜିବ ରେଡି, ଓଡ଼ିଶାର ଗାନ୍ଧିବାଦୀ ମୁଖ୍ୟମନ୍ତ୍ରୀ ନବକୃଷ୍ଣ ଚୌଧୁରୀଙ୍କ ଆହ୍ୱାନରେ ଭୂଦାନ-ଗ୍ରାମଦାନ-ଗ୍ରାମସ୍ୱରାଜ କାର୍ଯ୍ୟରେ ୬ ବର୍ଷ କାର୍ଯ୍ୟ କରିବା ପରେ ୧୯୬୧ରେ କଟକ ନୂଆବଜାର ହାଇସ୍କୁଲରେ ଜଣେ ସହକାରୀ ଶିକ୍ଷକଭାବେ କାର୍ଯ୍ୟକରି ମଧୁସୂଦନ ଆଇନ କଲେଜରୁ ୧୯୬୪ରେ ଏଲ୍.ଏଲ୍.ବି. ଓ ୧୯୬୫ ମସିହାରେ ଜଣେ ଘରୋଇ ଛାତ୍ରଭାବେ ରାଜନୀତି ବିଜ୍ଞାନରେ ଏମ୍.ଏ. ପାଶ କରିବାପରେ ଗରିବ ଅସହାୟ ବ୍ୟକ୍ତିମାନଙ୍କୁ କୋର୍ଟ କଚେରୀରେ ଆଇନଗତ ସାହାଯ୍ୟ ଯୋଗାଇବା କାର୍ଯ୍ୟରେ ଲିପ୍ତ ଅଛି ।

ପରାଧୀନ ଭାରତ ବର୍ଷରେ ଓଡ଼ିଶାର ସର୍ବାଧିକ ଅତ୍ୟାଚାରୀ ଜମିଦାର ବ୍ରିଟିଶ ସରକାରଙ୍କ ଠାରୁ ରାଜା ଉପାଧିପ୍ରାପ୍ତ କନିକା ଜମିଦାରୀରେ ମୋର ଜନ୍ମ ୧୯୪୦ ମସିହାରେ । ମୁଁ ମୋର ଜନ୍ମସ୍ଥାନ ପଲାଇସାହି (ଜଲେଶ୍ୱରପୁର) । ନିମ୍ନ ପ୍ରାଥମିକ ବୃତ୍ତି ପାଇ ଚାନ୍ଦବାଲିର ଗୋଲାମ ମହମ୍ମଦ ମି.ଇ. ସ୍କୁଲର ଛାତ୍ର ଥିବାବେଳେ ୧୯୪୨ ମସିହାରେ ଅଗଷ୍ଟ ୯ତାରିଖ ଦିନ ମହାତ୍ମାଗାନ୍ଧି ବ୍ରିଟିଶ୍ ସରକାରଙ୍କ ବିରୁଦ୍ଧରେ କଂଗ୍ରେସକର୍ମୀମାନଙ୍କୁ 'କର ବା ମର' ଓ 'ବ୍ରିଟିଶ ସରକାର ଭାରତଛାଡ଼' ଡାକରା ଦେବାରୁ ସମଗ୍ର ଭାରତବର୍ଷରେ ଏକ ଅହିଂସା ବିପ୍ଳବ ମହାତ୍ମାଗାନ୍ଧୀଙ୍କ ନେତୃତ୍ୱରେ ଗଢ଼ି ଉଠିଥିଲା । ମୁଁ ମାଇନର ସ୍କୁଲର ଅନ୍ୟତମ ଛାତ୍ରନେତା ଭାବେ ବ୍ରିଟିଶ ସରକାରଙ୍କ ବିରୁଦ୍ଧରେ ଧ୍ୱନୀ ଦେଇ ଚାନ୍ଦବାଲି ପୋଲିସ ଥାନା ଘେରାଉ କରିଥିବା ଅଭିଯୋଗରେ ଉପରୋକ୍ତ ମାଇନର ସ୍କୁଲର ପ୍ରଧାନଶିକ୍ଷକଙ୍କ ଦ୍ୱାରା ଦଣ୍ଡିତ ହୋଇଥିଲି । ଏହି ସମୟରେ ଦ୍ୱିତୀୟ ବିଶ୍ୱଯୁଦ୍ଧ ଚାଲିଥାଏ । ଧାମରାନଦୀ ମୁହାଣରେ ମାନ୍ଦ୍ରାଜରୁ କଲିକତା ଅଭିମୁଖେ ବଙ୍ଗୋପସାଗରରେ ଯାଉଥିବା ଏକ ଜଳଜାହାଜକୁ ଜାପାନୀ ଉଡ଼ାଜାହାଜ ଆକାଶ ମାର୍ଗରୁ ବୋମା ପକାଇବାରୁ ସେହି ଜଳଜାହାଜଟି ଧାମରା ନଦୀ ମୁହାଣରେ ବୁଡ଼ି ଯାଇଥିଲା । ସେହି ଜାହାଜରେ ବ୍ରିଟିଶ ପକ୍ଷରୁ କେତେଜଣ ସୈନିକ ମୃତାହତ ହୋଇଥିଲେ । ଏ ଖବର ପାଇ ବାଲେଶ୍ୱର ଚାନ୍ଦିପୁରର କମାଣ ପରୀକ୍ଷାକେନ୍ଦ୍ରରୁ କେତେଜଣ ସୈନିକ ଜିପ, ଟ୍ରକରେ ଚାନ୍ଦବାଲିରେ ପହଞ୍ଚି ଦ୍ୱିତୀଳ କୋଠାରେ ଚାଲିଥିବା ମି.ଇ ସ୍କୁଲଟିକୁ ଦଖଲକୁ ନେଇଯାଇ ଛଅମାସ ପାଇଁ ବନ୍ଦ ହେଲାବୋଲି ଏକ ସରକାରୀ ଘୋଷଣା ହେବାପରେ ସ୍କୁଲଘର ଓ ଛାତ୍ରାବାସ ବନ୍ଦ ହୋଇଗଲା । ସେ ସମୟରେ ଭଦ୍ରକଠାରେ କୋର୍ଟକଚେରୀ

ଆଗରେ ବ୍ରିଟିଶ ସରକାରଙ୍କର ବିରୁଦ୍ଧରେ ଧ୍ୱନିମାନ ଦେଇ କଂଗ୍ରେସ କର୍ମୀମାନେ ଭଦ୍ରକ ଏ.ସି.ଡି.ଓଙ୍କ କୋର୍ଟ ଦଖଲ କରୁଥାନ୍ତି । ମୁଁ କନିକାରୁ ଚାଲିଚାଲି ୨୨ ମାଇଲ ରାସ୍ତା ଅତିକ୍ରମ କରି ଏସ୍.ଡି.ଓଙ୍କ କୋର୍ଟ ଆଗରେ ପିକେଟିଂ କରୁଥିବା କର୍ମୀମାନଙ୍କ ସହ ମିଶି ବ୍ରିଟିଶ ସରକାର ବିରଦ୍ଧରେ ସ୍ଲୋଗାନ ଦେଉଥିବା ବେଳ ତତ୍‌କାଳୀନ ଏସ୍.ଡି.ଓ ୰ ପୂର୍ଣ୍ଣଚନ୍ଦ୍ର ମହାନ୍ତି ଭଦ୍ରକ ଥାନାରୁ କେତେଜଣ ବନ୍ଧୁକଧାରୀ ଓ ଲାଠିଧାରୀ ପୋଲିସଙ୍କ ସହ ସେଠାରେ ପହଞ୍ଚି ୧୪୪ ଧାରା ଜାରି କରିବା ସହ ଲାଠିଚାର୍ଜ ଅର୍ଡର ଦେବା ମାତ୍ରକେ ଲାଠି ଧାରୀ ପୋଲିସ ଏହି ସଭାକୁ ଲାଠିଦ୍ୱାରା ଛିନ୍‌ଛତ୍ର କରିଦେଲେ । ସେହି ସ୍ଥାନରେ ମୁଁ ପୋଲିସଙ୍କ ଠାରୁ ଲାଠି ମାଡ଼ ଖାଇଥିଲି । ମୋ ବିରୁଦ୍ଧରେ ଗିରଫ ପରୱାନା ବାହାରିଥିଲା । ମାତ୍ର ମୁଁ ଆତ୍ମଗୋପନ କରିବାରୁ ପୋଲିସ ମୋତେ ଏରେଷ୍ଟ କରି ପାରି ନଥିଲା ।

ଏହାର ପରବର୍ତ୍ତୀ ସମୟରେ ଭଦ୍ରକ ପୁରୁଣା ବଜାରରେ ନୂତନ ଭାବେ ଖୋଲା ଯାଇଥିବା ନାରାୟଣ ଚନ୍ଦ୍ର ହାଇସ୍କୁଲ ୧୯୪୫ରୁ ୧୯୪୮ପର୍ଯ୍ୟନ୍ତ ଅଧ୍ୟୟନ କରି ୧୯୪୮ରେ ମେଟ୍ରିକ୍ ପାସ୍ କରିବା ପରେ ଭଦ୍ରକରେ ନୂତନ ଭାବେ ଖୋଲାଯାଇଥିବା ଭଦ୍ରକ କଲେଜରେ ୨ବର୍ଷ ଅଧ୍ୟୟନ କରି ଆଇ.ଏ. ପାସ୍ କରିବା ପରେ ମୋର ଶ୍ୱଶୁର କନିକା ପ୍ରଜା ଆନ୍ଦୋଳନର ବିପ୍ଳବୀ ପ୍ରଜାନେତା ପୂର୍ବତନ ବିଧାୟକ ବିଶିଷ୍ଟ ସ୍ୱାଧୀନତା ସଂଗ୍ରାମୀ ଚକ୍ରଧର ବେହେରାଙ୍କ ଆର୍ଥିକ ସାହାଯ୍ୟକ୍ରମେ ବାଲେଶ୍ୱରସ୍ଥ ସରକାରୀ ଫକୀରମୋହନ ବିଦ୍ୟାଳୟରେ ନାମ ଲେଖାଇଲି । କଲେଜ ଛାତ୍ରାବାସରେ ରହିବାପାଇଁ ମୋର ଆର୍ଥିକ ସମ୍ବଳ ନଥିବାରୁ ଟ୍ୟୁସନ ଯୋଗାଡ଼ କରି ବହୁ କଷ୍ଟରେ ସ୍ୱାବଲମ୍ବୀ ହୋଇ ପାରିଥିଲି । ବାଲେଶ୍ୱର ଟାଉନ ହଲର ପୂର୍ବପାର୍ଶ୍ୱରେ ଥିବା ବୃହତ ପୋଖରୀର ପୂର୍ବପାର୍ଶ୍ୱର ପକ୍କା ଘାଟକୁ ଲାଗି ରହିଥିବା ଜଣେ ବୃଦ୍ଧ ବୈଷ୍ଣବ ବ୍ରାହ୍ମଣ ଯେ କି ଗଡ଼ଗଡେଶ୍ୱର ମନ୍ଦିରର ପୂଜକ ଥିଲେ ତାଙ୍କର ଦୁଇଟି ପୁତ୍ର ଶ୍ରୀ ତୁଳସୀ ରଞ୍ଜନ ମିଶ୍ର ୮ମ ଶ୍ରେଣୀ ଓ ତାର ସାନ ଭାଇ ଶ୍ରୀ ମାନସ ରଞ୍ଜନ ମିଶ୍ରଙ୍କୁ ପ୍ରତିଦିନ ସନ୍ଧ୍ୟାବେଳେ ଟ୍ୟୁସନ କରୁଥିବାରୁ ସେମାନଙ୍କର ପିତାମାତା ମୋର ଦୁଇଓଳି ଖାଦ୍ୟ ଯୋଗାଉଥିଲେ । ସେହି ବ୍ରାହ୍ମଣ ପରିବାରଟି ଅତ୍ୟନ୍ତ ବୈଷ୍ଣବ ଥିଲେ । ଗଡ଼ଗଡେଶ୍ୱର ମନ୍ଦିରରୁ ଯେଉଁ ଅରୁଆ ଚାଉଳ ଓ ମୁଗଡାଲି ଆଦି ପରିବା ଆଣୁଥିଲେ -ତାଙ୍କ ପତ୍ନୀ ଯାହାକୁ ମୁଁ ମାଉସୀ ବୋଲି ଡାକୁଥିଲି ଓ ତାଙ୍କ ବୃଦ୍ଧ ସ୍ୱାମୀଙ୍କୁ ମଉସା ବୋଲି ଡାକୁଥିଲି-ସେଅତ୍ୟନ୍ତ ସ୍ନେହୀ ଥିଲେ । ମୁଁ ଜାତିରେ ଅବ୍ରାହ୍ମଣ (ଗୋପାଳ) ଥିବାରୁ ତାଙ୍କ ଦାଣ୍ଡ ପିଣ୍ଡାରେ ମୋତେ ଖଣ୍ଡେ ତାଳପତ୍ର ଚଟେଇ ବସିବା ପାଇଁ ଦେଉଥିଲେ ଓ ମୁଁ ତାଙ୍କ ଦାଣ୍ଡ ପିଣ୍ଡାରେ ଦିନବେଳା ଖାଇବା ବେଳେ କାଳେ କେହି ଦେଖି ପକାଇବ ସେଥିପାଇଁ ଖଣ୍ଡେ ପରଦା ବାନ୍ଧି ଦେଉଥିଲେ । ମୋତେ ଖଣ୍ଡେ ପଥୁରୀ ଥାଳି ଓ ପଥୁରୀ ତାଟିଆରେ ଖାଇବାକୁ ମାଉସୀ ଦେଉଥିଲେ । ଖାଇ ସାରିବାପରେ ସେହି ପଥୁରି ଥାଳି ଓ ତାଟିଆକୁ ତାଙ୍କ ଘର ସାମନାରେ ଥିବା ପୋଖରୀରେ ଧୋଇ ଧାଇ ସେଇ ପଥୁରୀ ଥାଳି ତାଟିଆକୁ ତାଙ୍କ ଚାଳଘର ତାଳଶେଣୀ ଲାଗିଥିବା ଓରା ଉପରକୁ ପ୍ରତିଦିନ ଟେକି ଦେଉଥିଲି । ମୋ'ର ଏହି ପଥୁରୀ ଅଇଁଠା ବାସନ ଧୋଇବା କାମକୁ ଆମ କଲେଜର କୌଣସି ପିଲା (ଛାତ୍ରଛାତ୍ରୀ) ଯେପରି ନ ଦେଖନ୍ତି ସେଥିପ୍ରତି ମୁଁ ସାବଧାନ ଥିଲି । ସେହି ପାଖାପାଖି ଧୋବା ସାହିରେ ମୋର ସହପାଠୀ ଭଦ୍ରକ ନାରାୟଣ ଚନ୍ଦ୍ର ହାଇସ୍କୁଲ ଛାତ୍ର ମଧ୍ୟ ମୋର ଅନ୍ତରଙ୍ଗ ବନ୍ଧୁ ଥିବାରୁ ସେ ଭଡ଼ାନେଇ ରହୁଥିବା ଧୋବା ସାହିରେ ବଖରେ ଚାଳଘର ତାଙ୍କ ସହିତ ରହୁଥିଲି । ଆମେ ଅନ୍ତରଙ୍ଗ ଦୁଇବନ୍ଧୁ କଲେଜ ଛାତ୍ର ୟୁନିୟନର ନେତାଥିଲୁ ଓ ମୁଁ ଛାତ୍ର ସଂସଦର ସଭାପତି ଭାବେ ନିର୍ବାଚିତ ହୋଇଥିଲି । ବାଲେଶ୍ୱର ଫକୀରମୋହନ ମହାବିଦ୍ୟାଳୟ କାର୍ଯ୍ୟ ସକାଳ ୭ଟାରୁ ଆରମ୍ଭ ହୋଇ ଘ୧୦.୩୦ରେ ସରି ଯିବାପରେ ସେଠି ସରକାରୀ ହାଇସ୍କୁଲ ର କାର୍ଯ୍ୟ ଚାଲୁଥିଲା । ମୁଁ ଜଣେ ଗାନ୍ଧିବାଦୀ ଛାତ୍ର ଥିବାରୁ ଯେକୌଣସି କାର୍ଯ୍ୟ ବଡ଼ ବା ସାନ ନ ବିଚାରି ତାହା ନିଷ୍ଠାର ସହିତ କରୁଥିଲି । ମହାବିଦ୍ୟାଳୟ ଛାତ୍ର ସଂସଦର ସଭାପତି ନିର୍ବାଚିତ ହେବାପରେ ମୋତେ

କଲେଜର ଅଧିକାଂଶ ସଭାରେ ଓଜସ୍ୱିନୀ ଭାଷଣ ଦେବାକୁ ପଡୁଥିଲା । ୧୯୫୨ ରେ ଓଡ଼ିଶାର ନବକୃଷ୍ଣ ଚୌଧୁରୀ ମୁଖ୍ୟମନ୍ତ୍ରୀ ଥିଲାବେଳେ କଲେଜ ଛାତ୍ରଛାତ୍ରୀମାନଙ୍କର ମାସିକ ବେତନ ପୂର୍ବରୁ ନିଆ ଯାଉଥିବା ୭ଟଙ୍କା ଫିସ୍‌କୁ ୧୦ଟଙ୍କା କୁ ବୃଦ୍ଧି କରି ଦେଇଥିବାରୁ ସରକାରଙ୍କର ଏହି ଛାତ୍ରଦରମା ବୃଦ୍ଧି ବିରୁଦ୍ଧରେ ସମଗ୍ର ରାଜ୍ୟରେ ଛାତ୍ର ଧର୍ମଘଟ ଦୁଇମାସ ଧରି ଚାଲିଥିଲା । ଆମ ଫକୀରମୋହନ କଲେଜରେ ଏହି ଛାତ୍ର ଧର୍ମଘଟରେ ମୁଁ, ମୋର ବନ୍ଧୁ ୰ ଲାଲମୋହନ ନାୟକ, କେନ୍ଦୁଝର ଜିଲ୍ଲାର ଛାତ୍ର ଶ୍ରୀ ମୁରଲୀଧର କୁଅଁର, ଶ୍ରୀ ଘନଶ୍ୟାମ ଧଳ ଓ ଅନ୍ୟ କେତେଜଣ ନେତୃତ୍ୱ ନେଇ ଧର୍ମଘଟକୁ ସଫଳ କରାଇଥିଲୁ । ଫଳତଃ ସରକାରଙ୍କ ପକ୍ଷରୁ Rustication order ଆମ କଲେଜର ସୁଯୋଗ୍ୟ ଅଧକ୍ଷ P.S. Sundaramଙ୍କ ପାଖକୁ ଆସିଥିଲା । ତତ୍କାଳ ଆମ ମହାବିଦ୍ୟାଳୟ ଛାତ୍ର ସଂସଦର ଉପଦେଷ୍ଟା ଭାବେ ଇତିହାସ ବିଭାଗର ପ୍ରମୁଖ ଅଧ୍ୟାପକ ଡକ୍ଟର ମନ୍ମଥ ନାଥ ଦାସ (ଭୋଗରାଇଥାନା ଅଧିବାସୀ) କାର୍ଯ୍ୟ କରୁଥିଲେ । ଏ ଖବର ସେ ଜାଣିବା ପରେ ମୋତେ ତାଙ୍କର ସରକାରୀ ବାସଭବନକୁ ଡକାଇ ଏହି Rustication ଅର୍ଡର ବିଷୟ ମୋତେ ଜଣାଇଥିଲେ ମାତ୍ର ଛାତ୍ର ଧର୍ମଘଟ ହେବା ପୂର୍ବରୁ ପ୍ରିନ୍‌ସପାଲ ମହୋଦୟ ମୋତେ ଏକ ପ୍ରଶଂସା ପତ୍ର ଦେଇଥିଲେ । ସେହି ପ୍ରଂଶସା ପତ୍ରରେ ସେ ଲେଖିଥିଲେ -

PRINCIPAL
FAKIR MOHAN COLLEGE

BALASORE, ORISSA
21.08.51

Mr. Gayadhar Barik a student of the Fourth year Honours class, was President of the College Union from the 15th of December, 1950 to the 21st of August 1951. I found him at all times a man of high principles and very reasonable. I am sure he has a bright future before him.

P.S. Sundaram
Principal

ଉପରୋକ୍ତ Rustication order Principalଙ୍କ ଦ୍ୱାରା କାର୍ଯ୍ୟକାରୀ ହୋଇଥିଲେ ମୋ'ର କଲେଜରେ ଛାତ୍ର ଜୀବନର ପରିସମାପ୍ତି ଘଟିଥାନ୍ତା । ମାତ୍ର ମୋର ଶୁଭାକାଂକ୍ଷୀ ଇତିହାସ ଅଧାପକ ମନ୍ମଥ ବାବୁଙ୍କର ମୋ ପ୍ରତି ଅନୁକମ୍ପା ଏବଂ ଅଧକ୍ଷ ମହୋଦୟ ମୋତେ ଦେଇଥିବା ପ୍ରଶଂସା ପତ୍ର ସେହି ବିପଦ ସମୟରେ ଭଗବାନଙ୍କ କୃପାରୁ ଏକ ରକ୍ଷା କବଚ ଭାବେ କାର୍ଯ୍ୟ କରିଥିଲା । ତେଣୁ ମୁଁ ମୋର ଆଜୀବନ ଶୁଭେଚ୍ଛୁ ଅଧାପକ ମନ୍ମଥ ନାଥ ଦାସଙ୍କ ପାଖରେ ଚିର କୃତଜ୍ଞ । ମାତ୍ର ସେହି Rustication order ବଳରେ ମୋ'ର ଉପରୋକ୍ତ ଦୁଇବନ୍ଧୁ ୰ଲାଲମୋହନ ନାୟକ ଓ ଶ୍ରୀ ମୁରଲୀ ଧର କୁଅଁର (ପୂର୍ବତନ ବିଧାୟକ ରାମଚନ୍ଦ୍ରପୁର ନିର୍ବାଚନ ମଣ୍ଡଳୀ) ଙ୍କର କଲେଜ ପାଠ ପଢାରେ ଡୋରି ବନ୍ଧା ହୋଇଗଲା - ଚିରଦାନ ପାଇଁ ।

ମୁଁ ଫକୀରମୋହନ କଲେଜରୁ ବି.ଏ. ପାସ୍ କରିଥିଲି, ମୋର ପୁତ୍ର ମଧ୍ୟ ଫକୀରମୋହନ କଲେଜରୁ ଏମ୍.କମ୍. ପାସ୍‌କରି ଫେକର କମ୍ପାନୀରେ ଜଣେ କର୍ମଚାରୀଭାବେ କାର୍ଯ୍ୟ କରିଛି । ମୋର ଶୁଭାକାଂକ୍ଷୀ ଫକୀରମୋହନ ମହାବିଦ୍ୟାଳୟର ପୂର୍ବତନ ଅଧକ୍ଷ ପି.ଏସ୍.ସୁନ୍ଦରମ୍‌ଙ୍କର ପ୍ରଶଂସା ପତ୍ରର ଶେଷ ଧାଡ଼ିଟି ମୋ ଜୀବନରେ ଏକ ଆଲୋକବର୍ତ୍ତିକାସମ ଘନ ଅନ୍ଧକାର ମଧରେ ଦିକ୍‌ଦର୍ଶନ ଦେଇ ଆସିଛି ବୋଲି ମୁଁ ସବୁବେଳେ ଅନୁଭବ କରୁଛି ।

• ସର୍ବୋଦୟ ସେବକ

# ସ୍ମୃତିର ଅଗଣାରୁ

## ଡକ୍ଟର ଅରବିନ୍ଦ ଗିରି

ଆମ ଗାଁଠାରୁ ସଇଁତିରିଶ କିଲୋମିଟର ଦୂରରେ ଓ ଗମନାଗମନର ବହୁ ଅସୁବିଧା ମଧ୍ୟରେ ଅବସ୍ଥିତ ସେ ଅଞ୍ଚଳର ଏକମାତ୍ର ଉଚ୍ଚ ଶିକ୍ଷା ଅନୁଷ୍ଠାନ ବାସୁଦେବପୁର ଅଟଳ ବିହାରୀ ହାଇସ୍କୁଲ । ଏହି ସ୍କୁଲରେ ପଢ଼ିବାକାଳୀନ ଫକୀରମୋହନ ମହାବିଦ୍ୟାଳୟର ପଢ଼ାପଢ଼ି ତଥା ପରୀକ୍ଷାଫଳର ସୁନାମ ସାଙ୍ଗସାଥୀ ଓ ସମ୍ବାଦପତ୍ରରୁ ଜାଣିଥିଲି । ବ୍ୟାସକବି ଫକୀରମୋହନଙ୍କ 'ଆତ୍ମଜୀବନୀ' ପୁସ୍ତକଟି ସ୍କୁଲର କୌଣସି ପ୍ରତିଯୋଗିତାରେ ପୁରସ୍କାର ସ୍ୱରୂପ ପାଇବା ମୋ ପାଇଁ ଅନ୍ୟ ଏକ ସୌଭାଗ୍ୟ ଥିଲା । ସେ ପର୍ଯ୍ୟନ୍ତ ବାଲେଶ୍ୱର ସହରରେ ମୁଁ ପାଦ ପକାଇନଥିଲି । ଫକୀରମୋହନଙ୍କ ଜନ୍ମପୀଠ ଦର୍ଶନ କରିବା ଏବଂ ତାଙ୍କ ନାମିତ ମହାବିଦ୍ୟାଳୟରେ ଅଧ୍ୟୟନ କରିବାର ପ୍ରବଳ ଅକାଂକ୍ଷା ବାସ୍ତବ ସତ୍ୟରେ ପରିଣତ ହୋଇଥିଲା, ଯେଉଁଦିନ ପ୍ରଥମେ କଲେଜରେ ନାମ ଲେଖାଇବା ପାଇଁ ଇଣ୍ଟିମେସନ୍ ଲେଟର ପାଇଥିଲି ୧୯୭୧ ମସିହା ଜୁଲାଇ ମାସରେ ।

ଆମ ସମୟରେ ପ୍ରଥମ ବି.ଏ.ଶ୍ରେଣୀରେ ଓଡ଼ିଆ (ଇଚ୍ଛାଧୀନ) ବିଷୟରେ ଛଅଜଣ ପିଲା ବି ନଥିଲେ । ଆମେ ମାତ୍ର ୪ଜଣ ପିଲା ଓଡ଼ିଆ ବିଷୟ ନେଇଥିଲୁ । ଆମର ଆଉ କ୍ଲାସ ହେଲାନାହିଁ ବରଂ ଆମକୁ କୁହାଗଲା ସାନ୍ଧ୍ୟ ମହାବିଦ୍ୟାଳୟରେ ଓଡ଼ିଆ କ୍ଲାସରେ ଯୋଗ ଦେବାପାଇଁ । ଆମେ ବାଧ୍ୟ ହୋଇ ସାନ୍ଧ୍ୟ ମହାବିଦ୍ୟାଳୟରେ ଓଡ଼ିଆ କ୍ଲାସ କଲୁ । ସେତେବେଳେ ଅଧ୍ୟାପକ ମୋହନଲାଲ ସାହୁ, ଅଧ୍ୟାପକ ନାଗମଣି ସାମନ୍ତ ଆମର କ୍ଲାସ ନେଉଥିଲେ । ବେଳେବେଳେ ପାଠପଢ଼ା ଚାଲିଥିବା ବେଳେ ଇଲେକ୍ଟ୍ରିକ ଲାଇନ୍ ଦୀର୍ଘ ସମୟ ଚାଲିଯାଇ ବିଭ୍ରାଟ ସୃଷ୍ଟି କରେ । ଫଳରେ ଆଉ ପଢ଼ାପଢ଼ି ହୋଇପାରେ ନାହିଁ । କଲେଜ ତରଫରୁ ମଧ୍ୟ ଜେନେରେଟର କିମ୍ବା ପେଟ୍ରୋମାକ୍ସ ଆଲୁଅ ଯୋଗାଇ ଦେବାର ବ୍ୟବସ୍ଥା ନଥିଲା । ଫଳରେ ପିଲାମାନେ ହୋ ହାଲ୍ଲା କରି ଘରକୁ ଫେରି ଯାଆନ୍ତି ।

ମୋର ଛାତ୍ର ଜୀବନରେ ଚାରିବର୍ଷ (୧୯୭୧-୭୫)ମଧ୍ୟରେ ତିନିଜଣ ଅଧ୍ୟକ୍ଷ ଦାୟିତ୍ୱରେ ଥିଲେ । କଲେଜର ନାମ ଲେଖାଇଲାବେଳକୁ ଶ୍ରୀ କେ. ପି.ଏ. ପିଲାଇ ଅଧ୍ୟକ୍ଷ ଥିଲେ । ଅଗଷ୍ଟ ମାସରେ କ୍ଲାସ୍ ଆରମ୍ଭ ହେଲାବେଳେ ତାଙ୍କ ସ୍ଥାନରେ ଆସିଲେ ମେଜର ଆର.ସି . ପଟ୍ଟନାୟକ । ସେ ଥିଲେ ଅର୍ଥନୀତି ବିଭାଗର ଅଧ୍ୟାପକ । ଖୁବ୍ ଦକ୍ଷତା ସମ୍ପନ୍ନ ଅଧ୍ୟକ୍ଷ । ତାଙ୍କ ସମୟରେ କଲେଜରେ ନିର୍ବାଚନକୁ କେନ୍ଦ୍ରକରି ଯେଉଁ ସବୁ ଛୋଟବଡ଼ ଛାତ୍ର ଗଣ୍ଡଗୋଳ ସୃଷ୍ଟି ହେଉଥିଲା, ସେ ସବୁକୁ ସେ ଖୁବ୍ ବିଚକ୍ଷଣତାର ସହିତ ସମାଧାନ କରି ପାରିଥିଲେ । ତାଙ୍କ ସମୟରେ କଲେଜର ପରୀକ୍ଷାପତ୍ର ମଧ୍ୟ ଖୁବ୍ କଡ଼ାକଡ଼ି ଭାବରେ ଖୁବ୍ ଶୃଙ୍ଖଳାର ସହିତ ହେଉଥିଲା । ଆମେ କପି କରିବା କଣ ଜାଣିନଥିଲୁ । ତା'ଛଡ଼ା କଲେଜ ସାରମାନଙ୍କ ସମ୍ମୁଖରେ ଛିଡ଼ାହୋଇ କଥାବାର୍ତ୍ତା କରିବାର ମଧ୍ୟ ସାହସ ନଥିଲା । ସେ ପ୍ରାୟ ଦୁଇବର୍ଷ ରହି ବଦଳି ହୋଇଗଲେ ଏବଂ ଆସିଲେ ଶ୍ରୀ କେ.ପି.ନିଗମ । ତାଙ୍କର ଫିକା ନୀଳରଙ୍ଗର ଫ୍ୟାଟ୍ କାର୍‌ଟି ସବୁବେଳେ ହଲ୍ ପାଖରେ ଛିଡ଼ା ହୋଇଥାଏ । ଭାରି କଡ଼ା ମିଜାଜର ଲୋକ । ପିଲାମାନେ ଡରରେ କେହି କାର୍‌ରେ ଲାଗନ୍ତି ନାହିଁ ।

ଆମର ପ୍ରଥମବର୍ଷ ବି.ଏ. ପରୀକ୍ଷା ସରିଯାଇଥାଏ । ପୂର୍ବବର୍ଷ ଆମ ସହିତ ପି.ୟୁ. ପଢୁଥିଲା ଫୁଲାଡ଼ି ଗ୍ରାମର ଜହର ପଣ୍ଡା ନାମ· ·ୁବକ । ଦେଖିବାକୁ ଯେମିତି ଦୀର୍ଘକାୟ ଚେହେରାଟି ମଧ୍ୟ ସେହିଭଳି

ହୃଷ୍ଟପୃଷ୍ଟ । ଖୁବ୍ କମ୍ କଥାବାର୍ତ୍ତା କରେ । ତାକୁ ଦେଖିଲେ ଡରଲାଗେ । କ୍ଲାସ୍ ପାଞ୍ଚମିନିଟ୍ ହୋଇ ସାରିଲା ପରେ ସେ ଷ୍ଟାଇଲ୍ ମାରି କ୍ଲାସ୍ ମଧ୍ୟକୁ ପ୍ରବେଶ କରେ ଏବଂ ପଛ ବେଞ୍ଚରେ ବସେ । ଆମେ ସବୁ ସାନସାନ ପିଲାମାନେ ଆଗ ବେଞ୍ଚରେ ବସିଥାଉଁ । ସେ କ୍ଲାସ୍‌କୁ ପଶିଲା ମାତ୍ରେ ପିଲାମାନେ ଚାପିଚାପି ହସନ୍ତି । କେହି କିନ୍ତୁ ତାକୁ ପ୍ରତିବାଦ କରିବାକୁ ସାହସ କରନ୍ତି ନାହିଁ । ପ୍ରଥମବର୍ଷ ଫେଲ ହୋଇ ପୁନଶ୍ଚ ପରୀକ୍ଷା ଦେଇଥିଲା । ସେଥର ମଧ୍ୟ କୃତକାର୍ଯ୍ୟ ହୋଇ ପାରିନଥିଲା । ଆମର ଅଧିକାଂଶ ବଡ଼ ବଡ଼ କ୍ଲାସ ହଲ୍, ସି.ଏଲ୍.ଟି. ଏବଂ ପି.ଏଲ୍.ଟିରେ ହେଉଥିଲା । ଆମେ ସି.ଏଲ୍.ଟି.ରେ କ୍ଲାସ କରୁଥିଲାବେଳେ ହଠାତ୍ ଖବର ପ୍ରଚାର ହେଲା, ପ୍ରିନ୍‌ସିପାଲ୍ ମେଜର ଆର.ସି. ପଟ୍ଟନାୟକଙ୍କୁ ଛୁରା ମରା ଯାଇଛି । ସଙ୍ଗେ ସଙ୍ଗେ କ୍ଲାସ ବନ୍ଦ ହୋଇଗଲା । ପିଲାମାନେ ପ୍ରିନ୍‌ସିପାଲ୍‌ଙ୍କ ଅଫିସକୁ ଦୌଡ଼ିଲେ । ଚାରିଆଡ଼େ ଗୁଞ୍ଜରଣ ସୃଷ୍ଟି ହେଲା । ଆମ କ୍ଲାସ ପିଲା ଜହର ପଣ୍ଡା ପ୍ରିନ୍‌ସିପାଲଙ୍କୁ ଛୁରାମାଡ଼ ମାରିଛି । ଏକଥା ଶୁଣି ମୋର ତଥା ଆମ ସାଙ୍ଗମାନଙ୍କ ମୁଣ୍ଡ ଲାଜରେ ତଳକୁ ହୋଇଗଲା । ଆମେ ଦେଖିଲୁ ଅଧକ୍ଷ ମୁଣ୍ଡରେ ଛୁରାର ଆଘାତ ପାଇ ରକ୍ତାକ୍ତ ହୋଇଛନ୍ତି । ତାଙ୍କୁ ସଙ୍ଗେସଙ୍ଗେ ହସ୍‌ପିଟାଲକୁ ନିଆଗଲା । ସେ ଦୁଇତିନିଦିନ ହସପିଟାଲରେ ରହିଥିଲେ । ପ୍ରତିଦିନ ସକାଳେ ଓ ସନ୍ଧ୍ୟାବେଳେ ପିଲାମାନେ ଯାଇ ସାର୍‌ଙ୍କୁ ସାକ୍ଷାତ କରୁଥିଲେ । ମୁଁ ମଧ୍ୟ ଦୁଇତିନିଥର ଯାଇ ସାର୍‌ଙ୍କୁ ସୌଜନ୍ୟମୂଳକ ଭାବରେ ସାକ୍ଷାତ୍ କରିଥିଲି । ପରେ ସେ ଆରୋଗ୍ୟ ହୋଇଥିଲେ ଏବଂ ତାଙ୍କ କାର୍ଯ୍ୟଦକ୍ଷତା ଜନିତ ସୁନାମ ଅର୍ଜନ କରିଥିଲେ ।

ସେ ସମୟରେ କଲେଜରେ ଡ୍ରାମା ଖୁବ୍ ଭଲ ହେଉଥିଲା । ପୁଅଝିଅ ମିଶି ଡ୍ରାମା କରୁଥିଲେ । ଆମ ଉପର କ୍ଲାସ୍‌ର ଛାତ୍ର ପ୍ରେମାଞ୍ଜନ ପରିଡ଼ା ଥିଲେ ଡ୍ରାମାଟିକ୍ ସେକ୍ରେଟାରୀ । ଅଭିନୟ କଳାରେ ଜଣେ ନିପୁଣ ପ୍ରତିଭା । ସେହି କଳାନୁରାଗୀ ପ୍ରତିଭା ପାଇଁ ଆଜି ସେ ଓଡ଼ିଶାରେ ଜଣେ ପ୍ରତିଭାବାନ୍ କଳାକାର ଭାବେ ପରିଚିତ । ସମ୍ପ୍ରତି ବିଭିନ୍ନ ଓଡ଼ିଆ ଚଳଚିତ୍ର ଓ ଦୂରଦର୍ଶନ ଓଡ଼ିଆ ଧାରାବାହିକରେ ଖଳନାୟକ ଭୂମିକାରେ ଅଭିନୟ କରି ସୁଖ୍ୟାତି ଅର୍ଜନ କରିଛନ୍ତି । ଅନ୍ୟ ଜଣେ ସହପାଠୀ ବନ୍ଧୁଥିଲେ ବସନ୍ତ ପାଣିଗ୍ରାହୀ । ସେ ଥଲା କଲେଜର ଆସିଷ୍ଟାଣ୍ଟ ଡ୍ରାମାଟିକ୍ ସେକ୍ରେଟାରୀ । ସୁନ୍ଦର ଗୀତ ଗାଇପାରୁଥଲା । ହସହସ ମୁହଁକୁ ସୁନ୍ଦର ଚେହେରା ଓ ବ୍ୟବହାର । କ୍ଲାସକୁ କୌଣସି ଅଧ୍ୟାପକ ଆସିବାର ବିଳମ୍ବ ହେଲାମାତ୍ରେ ସବୁପିଲା ବସନ୍ତକୁ ଗୀତଗାଇବା ପାଇଁ ଅନୁରୋଧ କରନ୍ତି । ସେ ତାର ପ୍ରିୟ ଗୀତଟି 'ରାଜାଝିଅ ସଙ୍ଗେ କରିଥଲି ଭାବ ଭୁବନେଶ୍ୱର ହାଟରେ/ ସେଇ ଝିଅ ପୁଣି ଦଗା ଦେଇଗଲା ତେଲେଙ୍ଗା ବଜାର ପେଣ୍ଠରେ' ଅଧିକାଂଶ ବେଳେ ଗାଉଥିଲା । ସେତେବେଳେ ଏହି ଗୀତଟି ଅକ୍ଷୟ ମହାନ୍ତି ନୂଆନୂଆ ଗାଇଥାନ୍ତି । ବସନ୍ତ ଯୌବନର ତାରୁଣ୍ୟରେ ଯେଭଳି ସେହି ଗୀତଟିକୁ ଗାଇବା ପାଇଁ ବ୍ୟାକୁଳ ହେଉଥିଲା, ଆମେ ମଧ୍ୟ ସେହିଭଳି ଯୁବ ସୁଲଭ ଚପଳତାରେ ତା' କଣ୍ଠରୁ ଗୀତ ଶୁଣିବାକୁ ପ୍ରବଳ ଆଗ୍ରହ ପ୍ରକାଶ କରୁଥିଲୁ । ଗୀତ ଆସର ଜମି ଆସୁଥିଲା ବେଳେ ସାର୍ ହଠାତ୍ ପଶି ଆସନ୍ତି ଏବଂ ବସନ୍ତ ଜିଭ କାମୁଡ଼ି ଗୀତ ବନ୍ଦ କରି ହସିହସି ତା' ସିଟ୍‌କୁ ଚାଲିଆସେ । ଗୀତପାଇଁ ସାର୍‌ମାନେ ତାକୁ ଖୁବ୍ ଭଲ ପାଉଥିବାରୁ ସେ ସବୁ ସାରମାନଙ୍କର ଖୁବ୍ ପ୍ରିୟପାତ୍ର ହୋଇ ପାରିଥିଲା ।

ସେ ସମୟର କଲେଜରେ କୋ-ଅପରେଟିଭ ଷ୍ଟୋର୍ ନୂଆ କରି ଖୋଲା ଯାଇଥିଲା । କଲେଜର ଛାତ୍ରଛାତ୍ରୀମାନେ କମ ଦାମରେ କାଗଜ, ଖାତାପତ୍ର ଓ ଷ୍ଟେସନାରୀ ଜିନିଷ ପତ୍ର କିଣିବାର ସୁଯୋଗ ପାଉଥିଲେ । ଫଳରେ ଗରୀବ ଛାତ୍ରଛାତ୍ରୀମାନେ ବହୁ ଭାବରେ ଉପକୃତ ହୋଇଥିଲେ ।

ସେତେବେଳେ ଫକୀରମୋହନ ମହାବିଦ୍ୟାଳୟର ଛାତ୍ରହେବାର ଗୌରବ ଓ ସ୍ୱାଭିମାନ ଭିନ୍ନ ଭାବରେ ମୁଁ ଅନୁଭବ କରିଥିଲି । ମହାବିଦ୍ୟାଳୟର ଛାତ୍ର ଭାବରେ ପ୍ରଶସ୍ତ ବାରଣ୍ଡାର ଏପାଖରୁ ସେପାଖକୁ ଚାଲିଯାଉଥିବା ବେଳେ ଛାତି ଯେପରି କୁଣ୍ଢେମୋଟ ହୋଇଯାଉଥିଲା । ସେ ସ୍ପନ୍ଦନର ପୁଲକିତ ସ୍ମୃତି ଆଜି

ବି ମନେପଡ଼େ । ବାସ୍ତବ ଜୀବନରେ ସିନା ଏ ଅନୁଷ୍ଠାନକୁ ଦୂରେଇ ଯାଇଛୁଁ । କିନ୍ତୁ ମାନସ [illegible] ଦୀର୍ଘ ଚାରିବର୍ଷର (୧୯୭୧-୧୯୭୪) ଅତୀତ ସ୍ମୃତି ମେଞ୍ଚାମେଞ୍ଚା ହୋଇ ଅନୁଷ୍ଠାନ [illegible] ବୋଳା ହୋଇ ରହିଛି ।

ଏହି ଅନୁଷ୍ଠାନ, ଆଦି ଜ୍ଞାନବୃଦ୍ଧ ତପସ୍ୱୀ ସଦୃଶ୍ୟ । ଏହାର ଗୌରବ [illegible] ଗର୍ବ ସଂଚାର ହୁଏ । ଏହା ଥିଲା ଅତୀତର ସର୍ବପ୍ରାଚୀନ ଶିକ୍ଷା ଅନୁଷ୍ଠାନ-ଧୂଳି [illegible] ବହୁ ଅମର ସନ୍ତାନ, କୃତୀ ଶିକ୍ଷକ ଓ ଶିକ୍ଷାବିତ୍ ମାନଙ୍କର କର୍ମଭୂମି । କବିବର [illegible] ମଧୁସୂଦନ, ସୁସାହିତ୍ୟିକ ଚନ୍ଦ୍ରମୋହନ ମହାରଣା, ଉତ୍କଳ ଗୌରବ ମଧୁସୂଦନ, ପଲ୍ଲୀ କବି [illegible] ଭଳି ପ୍ରତିଭାଧର କବିମାନେ ଶିକ୍ଷାଦାନ ଦେଇଥିଲେ । ଉପେନ୍ଦ୍ର ନାରାୟଣ ଦତ୍ତଗୁପ୍ତ, ଭୈରବଚନ୍ଦ୍ର [illegible] ଅତୁଲ ଚନ୍ଦ୍ର ଘୋଷ, ଭୀମ ରାଉତ ଆଦି କୃତୀ ଶିକ୍ଷକମାନେ ଦୀର୍ଘଦିନ ଧରି ଏହି ଅନୁଷ୍ଠାନରେ ଶିକ୍ଷକତା କରିଥିଲେ । ତତ୍କାଳୀନ କମିଶନର ରେଭେନ୍‌ସା ସାହେବ, କଲେକ୍ଟର ଜନ୍ ବୀମସ୍ ସାହେବ, ଫକୀରମୋହନ ସେନାପତି, ରାଜା ବୈକୁଣ୍ଠ ନାଥ ଦେ ଆଦି ବ୍ୟକ୍ତିମାନେ ଏ ଅନୁଷ୍ଠାନ ପରିଦର୍ଶନ କରି ନିଜ ନିଜର ସୁଚିନ୍ତିତ ଅଭିମତ ପ୍ରଦାନ କରିଥିଲେ । ୰ ଚନ୍ଦ୍ରମୋହନ ମହାରଣା, ୰ ଲକ୍ଷ୍ମୀନାରାୟଣ ସାହୁ, ୰ ହରିଶ୍ଚନ୍ଦ୍ର ବଡ଼ାଳ, ୰ ଭୈରବ ଚନ୍ଦ୍ର ମାହାପାତ୍ର, ୰ଗୋଲକ ଚନ୍ଦ୍ର ମହାପାତ୍ର, ୰ ଲକ୍ଷ୍ମୀକାନ୍ତ ମହାପାତ୍ର, ଗାନ୍ଧିକ ୰ ଅନନ୍ତ ପ୍ରସାଦ ପଣ୍ଡା, ସ୍ୱାଧୀନତା ସଂଗ୍ରାମୀ ଜୀବନ୍ଦ୍ରମୋହନ ଦାସ, ବିଶିଷ୍ଟ ଗାନ୍ଧିବାଦୀ ତଥା ଭୂଦାନ ନେତା ଶରତ ଚନ୍ଦ୍ର ମହାରଣା, ପ୍ରଫେସର ମନ୍ମଥ ନାଥ ଦାସ, ପ୍ରଫେସର ମନୋଜ ଦାସ, ରାଜନୀତିଜ୍ଞ ୰ ସମରେନ୍ଦ୍ର କୁଣ୍ଡୁ, ପ୍ରଫେସର ଶ୍ୟାମସୁନ୍ଦର ମହାପାତ୍ର ଓ କବି ବ୍ରଜନାଥ ରଥ ଏହି ଅନୁଷ୍ଠାନର ଛାତ୍ର ହେବାର ଗୌରବ ଅର୍ଜନ କରିଥିଲେ । ବାଲେଶ୍ୱର ଜିଲ୍ଲା ସ୍କୁଲ ପରି ପୁରୀର ସାମନ୍ତ ଚନ୍ଦ୍ରଶେଖର କଲେଜ ମଧ୍ୟ ଆଜିବି ପୁରୀ ଜିଲ୍ଲା ସ୍କୁଲର ଅତୀତ ସ୍ମୃତିକୁ ବହନ କରିଛି ।

ସ୍କୁଲ ଓ କଲେଜର ସମନ୍ୱିତ ସ୍ମୃତିସୁଧାରେ ଆପ୍ଲୁତ ଏହାର ଅଙ୍ଗ ସୌଷ୍ଠବ । ଗରୀମାମୟ ଏହାର ଅତୀତ ଇତିହାସ । କାହିଁ କେଉଁ କାଳରୁ ଜ୍ଞାନର ପ୍ରଦୀପ, ଅନିର୍ବାଣ ଶିଖା ଭଳି ପ୍ରଜ୍ୱଳିତ ହୋଇ ଆସିଛି । ଅଜ୍ଞାନତା ଦୂର କରିଛି ସାରା ଭାରତବର୍ଷରେ । ଧନ୍ୟ ହୋଇଛି ଏହି ମାତୃ ମନ୍ଦିର । ଆଜି ସେହି ଶିଖାତଳେ ମୁଣ୍ଡ ଆପେଆପେ ନଇଁ ଆସେ । ହୃଦୟରେ ଭକ୍ତି ଭାବ ଅର୍ଘ୍ୟ ବାଢ଼େ । ନାଁ ଟି ସିନା 'ଫକୀର', ଶିକ୍ଷାଦାନ, ସେବା ଓ ତ୍ୟାଗରେ ସିନା ଫକୀର, ହେଲେ ମଣିଷ ଗଢ଼ିବାରେ, ଜ୍ଞାନ ବିତରଣରେ ଏହା ସର୍ବଦା କୁବେର; ପୁଣି ଓଡ଼ିଆ ଭାଷା ସାହିତ୍ୟ ରକ୍ଷକ ବ୍ୟାସକବି ଫକୀରମୋହନଙ୍କ ନାମାଙ୍କିତ ଏକ ଅବତାର । ଏହି ଜ୍ଞାନ ମନ୍ଦିରରେ ସ୍ୱଦେଶୀ, ବିଦେଶୀ କେତେ ଗୁଣୀ, ଜ୍ଞାନୀ ଜନଙ୍କ ପଦଧୂଳି ପଡ଼ିଛି, ତା'ର କଳନା ନାହିଁ । ପ୍ରଫେସର ୰କୁଞ୍ଜବିହାରୀ ଦାଶଙ୍କ ଠାରୁ କବି ରମାକାନ୍ତ ରଥଙ୍କ ପର୍ଯ୍ୟନ୍ତ ଓଡ଼ିଶାର ବିଶିଷ୍ଟ ଶିକ୍ଷାବିତ୍, ସୁସାହିତ୍ୟିକ, କବି ଓ ରାଜନୀତିଜ୍ଞ ତଥା ପାଶ୍ଚାତ୍ୟ ଶିକ୍ଷାବିତ୍ ପ୍ରଫେସର ଜନ୍ ବୋଲଟନ୍ ଏବଂ ଭାରତ ବର୍ଷର ବହୁ ବିଶିଷ୍ଟ ଶିକ୍ଷାବିତ୍‌ମାନଙ୍କ ଆଗମନର ଇତିହାସ ଏହାର ପ୍ରତିଟି ପୁଣ୍ୟରେଣୁରେ ଲିପିବଦ୍ଧ ହୋଇ ରହିଛି । ତେଣୁ ଏହା ଅତୀତରୁ ବର୍ତ୍ତମାନ ଓ ଭବିଷ୍ୟତ ଜ୍ଞାନ ପିପାସୁ ବଂଶଧର ପାଇଁ ତୀର୍ଥଭୂମି । ସହରର ନାଭି କେନ୍ଦ୍ରରେ ଏହାର ଅବସ୍ଥିତି, ସୌଧମାଳା ପରିବେଷ୍ଟିତ ପ୍ରାକୃତିକ ପରିବେଶ, ଧର୍ମୀୟ ଓ ସାଂସ୍କୃତିକ ରୂପସଜ୍ଜା, ସମ୍ମୁଖ ଭାଗସ୍ଥ ଫୁଲପତ୍ର ପରିଶୋଭିତ ବଗିଚାଦ୍ୱୟ,ବିଶାଳ ଗ୍ରନ୍ଥାଗାର ବିଦ୍ୟାର୍ଥୀମାନଙ୍କ ଜ୍ଞାନପିପାସୁ ହୃଦୟକୁ ପରିପୁଷ୍ଟ କରିପାରିଛି ।

ଛାତ୍ରଜୀବନରେ ପାଳିତ ହୋଇଥିବା 'ରଜତ ଜୟନ୍ତୀ', ଅଧ୍ୟାପନା ଜୀବନରେ ପାଳିତ ହୋଇଥିବା 'ସୁବର୍ଣ୍ଣ ଜୟନ୍ତୀ' ରେ ଏହାର ବର୍ଣ୍ଣାଢ୍ୟ ରୂପସଜ୍ଜା ଦେଖି ମୁଗ୍ଧ ହୋଇଥିଲି । ଛାତ୍ରଜୀବନର ଅନ୍ତରଙ୍ଗ ବନ୍ଧୁମାନଙ୍କ ସହିତ ସାକ୍ଷାତ୍, ସୁଖାଳାପ, ପୂଜ୍ୟ ଅଧ୍ୟାପକମାନଙ୍କ ଦର୍ଶନ, ଶୁଭାଶୀର୍ବାଦ

ପାଇବାର ସୌଭାଗ୍ୟ ଓ ଆନନ୍ଦ ପାଇଥିଲି । ଆଜି ଅନୁଷ୍ଠାନର ଷାଠିଏ ବର୍ଷ ପୂର୍ତ୍ତି ସମାରୋହ ଦେଖିବାର ସୁଯୋଗ କମ୍ ବଡ଼ କଥା ନୁହେଁ । ଅନୁଷ୍ଠାନରେ ପାଦଦେବା ମାତ୍ରେ ଛାତ୍ରଜୀବନର କେତେ ହଜିଲା ସ୍ମୃତି ସବୁ ବର୍ଷାଦିନିଆ ବାଲିଛତୁ ଭଳି ସାଂଗସାଥୀ ସଂସ୍ପର୍ଶରେ ମନେ ପଡ଼ିଯାଉଛି । କର୍ମକ୍ଷେତ୍ରରେ ଥାଇ ବି ଅନେକଥର ତାର ଶାନ୍ତ, ସ୍ନିଗ୍ଧ କୋଳରେ ବସି ଛାତ୍ରଜୀବନର ସ୍ମୃତିକୁ ରୋମନ୍ଥନ କରିବାର ଅବକାଶ ପାଇଛି । ପୁଣି ଥରେ ଅତୀତ ଜୀବନକୁ ଫେରିଯିବା ପାଇଁ ଇଚ୍ଛା ହୋଇଛି । ଜୀବନର ଅଧିକାଂଶ ସମୟ ପ୍ରାୟ ଅନୁଷ୍ଠାନର ପାଖେପାଖେ ରହିଛି । ଅନୁଷ୍ଠାନକୁ କେନ୍ଦ୍ରକରି ସୃଷ୍ଟି ହୋଇଥିବା କମ ବେଶୀ ସାରସ୍ୱତ ଓ ସାଂସ୍କୃତିକ ସମାବେଶରେ ଭାଗନେବାର ମଧ୍ୟ ସୌଭାଗ୍ୟ ପାଇଛି । ଆପଣାର ଅନୁଷ୍ଠାନ ଭାବରେ ଉତ୍ସବକୁ ପ୍ରାଣଭରି ଉପଭୋଗ କରିଛି । ତେଣୁ ଆଜୀବନ ମୁଁ ଅନୁଷ୍ଠାନର ଋଣୀ ପାଲଟି ଯାଇଛି ।

ଆଜି ମଧ୍ୟ ପ୍ରାଣ ମଧ୍ୟରେ ବ୍ୟାକୁଳତା ସୃଷ୍ଟି ହୁଏ ତାର ଶାନ୍ତ, କ୍ଲାନ୍ତ, ମୃଦୁମନ୍ଦ ଶୀତଳ ବାୟୁ ଓ ଛାୟାର ସ୍ପର୍ଶ ପାଇଁ । ଅସଂଖ୍ୟ ବକୁଳ ପୁଷ୍ପରେ ପୁଷ୍ପିତା ବଉଳ ବୃକ୍ଷ ଏବଂ ତାର ମୂଳରେ ବିଛୁରିତ ପୁଷ୍ପ ଚାନ୍ଦୁଆର ପକ୍କା ପିଣ୍ଡାରେ ଘଡ଼ିଏ ବସି ସୁବାସିତ ମୃଦୁ ବାୟୁ ସେବନରେ ବେଶ୍ ମାନସିକ ଆତ୍ମତୃପ୍ତି ପାଏ ଏବଂ ମନେମନେ ଏହାର ଚରଣ ତଳେ ନିଜ ଅନ୍ତରର ଭକ୍ତିପୂତ ପ୍ରଣତି ବାଢ଼େ ।

• ବରିଷ୍ଠ ଅଧ୍ୟାପକ
ଓଡ଼ିଆ ଭାଷା ଓ ସାହିତ୍ୟ ବିଭାଗ
ସ୍ୱର୍ଣ୍ଣବୃତ୍ତ ମହାବିଦ୍ୟାଳୟ, ମିତ୍ରପୁର

# କିଛି ସ୍ମୃତି, କିଛି ଅନୁଭୂତି

## ଶ୍ରୀଯୁକ୍ତ ରଣଧୀର ଦାସ

ବାଲେଶ୍ୱର ଫକୀରମୋହନ କଲେଜର ହୀରକ ଜୟନ୍ତୀ ଉତ୍ସବ ପାଳନ କରାଯାଉଛି । ଏହା ମୋ ପାଇଁ ବଡ଼ ଆନନ୍ଦର କଥା । ବନ୍ଧୁ କବି ବ୍ରଜନାଥ ରଥଙ୍କ ସହ ଜୁଲାଇ ତେର ତାରିଖରେ ଉତ୍କଳ-ସାହିତ୍ୟ ସମାଜର ୧୦୧ତମ ଉତ୍ସବରେ ସାକ୍ଷାତ୍ ହେଲା । ସେ ଅନୁରୋଧ କଲେ ଫକୀରମୋହନ କଲେଜର ହୀରକ ଜୟନ୍ତୀ ପୂର୍ତ୍ତି ଅବସରରେ ଏକ ସ୍ମରଣିକା ପ୍ରକାଶ ପାଇବ । ଆପଣ ଗୋଟିଏ ଲେଖା ଦେବେ । ପରେପରେ ସଂପାଦକ ଚନ୍ଦ୍ର ବାବୁଙ୍କ ଚିଠି ପାଇଲି ।

୧୯୫୫ରୁ ୧୯୫୭ -ଦୁଇବର୍ଷ ଫକୀରମୋହନ କଲେଜରେ ମୁଁ ମୋର ଛାତ୍ରଜୀବନ କଟାଇଛି । ସେତେବେଳେ ସାଉଥ୍ ହଷ୍ଟେଲରେ ରହୁଥାଏ । ମୋ ଠାରୁ ସିନିୟର ଛାତ୍ର ଥିଲେ ଇନ୍ଦୁ ଭୂଷଣ କର । ଓଡ଼ିଶା ସରକାରଙ୍କର ପ୍ରଥମ ଶ୍ରେଣୀ ଅଫିସର ଭାବେ ଅବସର ନେଇଛନ୍ତି । ସେ ଜଣେ କବି ଏବଂ ନାଟ୍ୟପ୍ରିୟ ବ୍ୟକ୍ତି । ସେ ଓଡ଼ିଶା ସାହିତ୍ୟ ଏକାଡେମୀର ସମ୍ପାଦକ ମଧ ଥିଲେ । ଆଉ ଜଣେ ବନ୍ଧୁ ଥିଲେ ଉପେନ୍ଦ୍ର ମଲ୍ଲିକ । ସେ ମୋ ସହ ସାଉଥ୍ ହଷ୍ଟେଲରେ ରହୁଥିଲେ । ଉପେନ୍ଦ୍ର ବାବୁ ଆଉ ଇହ ଜଗତରେ ନାହାନ୍ତି । ପ୍ରାୟ ସାତବର୍ଷ ତଳେ ତାଙ୍କର ପରଲୋକ ହୋଇ ଯାଇଛି । ସେ କଲେଜ ୟୁନିୟନର ସଭାପତି ପଦପାଇଁ ପ୍ରାର୍ଥୀ ହୋଉଥାଆନ୍ତି । ଏହା ୧୯୫୬ ମସିହାର ଘଟଣା । ପ୍ରତିଦିନ ରାତିରେ ଏବଂ ଦିନରେ ବିଳମ୍ବରେ ଫେରୁ ଥାଆନ୍ତି । ଇନ୍ଦୁବାବୁ ଓ ଉପେନ୍ଦ୍ର ବାବୁ ମୋ ସହିତ ଗୋଟିଏ ରୁମ୍‌ରେ ଅବସ୍ଥାନ କରୁଥାଆନ୍ତି । ହଷ୍ଟେଲରେ ସେତେବେଳେ ପର୍ଯ୍ୟାୟକ୍ରମେ ପ୍ରତିଛାତ୍ର ଗୋଟିଏ ମାସ ଖାଇବା ପିଇବା ଦାୟିତ୍ୱ ବୁଝୁଥାଆନ୍ତି । ସେ ସମୟରେ ଗୋଟିଏ ମାସର ଦାୟିତ୍ୱ ମୁଁ ନେଇଥାଏ । ହଷ୍ଟେଲର କର୍ମଚାରୀମାନେ ସବୁବେଳେ ଉପେନ୍ଦ୍ରବାବୁଙ୍କ ବିରୁଦ୍ଧରେ ମୋତେ ଆସି ଅଭିଯୋଗ କରନ୍ତି । ସେ ନିର୍ବାଚନ ପ୍ରଚାରରେ ଛାତ୍ରମାନଙ୍କୁ ଘରେଘରେ ସାକ୍ଷାତ୍ କରୁଥିବା ହେତୁ ବିଳମ୍ବରେ ଫେରନ୍ତି । ତେଣୁ ତାଙ୍କୁ ରାତ୍ରିଭୋଜନ ଦେବାପାଇଁ ହଷ୍ଟେଲର କର୍ମଚାରୀମାନଙ୍କୁ ଅପେକ୍ଷା କରିବାକୁ ପଡୁଥାଏ । ହଷ୍ଟେଲର ପୂଜାରୀ ଏମିତି ଥରେ ଅଭିଯୋଗ କରୁକରୁ ମୁଁ ତାଙ୍କୁ କହିଥିଲି - "ତୁମେ ଉପେନ୍ଦ୍ର ବାବୁଙ୍କୁ ଗାଳି ଦେଉଛ, ତୁମେ ଜାଣ, ହୁଏତ ଦିନେ ସେ ଜିଲ୍ଲାପାଳ ବି ହୋଇ ଆସି ପାରନ୍ତି । ସେତେବେଳେ କଲେଜ ପରିଚାଳନା କମିଟିରେ ସେ ହେବେ ମୁଖ୍ୟ । ତୁମ ଅବସ୍ଥା କ'ଣ ହେବ ଜାଣ ?" ମୁଁ ଏମିତି କହୁକହୁ କହିଦେଲି । କିନ୍ତୁ ପରବର୍ତ୍ତୀ କାଳରେ ସେ ଆଇ.ଏ.ଏସ୍. ପାଇଲେ । ସେତେବେଳେ ମୁଁ କଟକରେ ମୋ ମାମୁ ଯୁଦନାଥ ଦାସଙ୍କ ଘରେ ରହୁଥାଏ । ମାମୁ ପୂର୍ବତନ ମୁଖ୍ୟମନ୍ତ୍ରୀ ନୀଳମଣି ରାଉତରାୟଙ୍କର ସହପାଠୀ ଥିଲେ । ସେ ଓଡ଼ିଶା ସରକାରଙ୍କର ଜଣେ ଉଚ୍ଚ ପ୍ରଶାସନିକ ଅଫିସର ଥିଲେ । ଯେଉଁ ଦିନ ଉପେନ୍ଦ୍ର ମଲ୍ଲିକ ଆଇ.ଏ.ଏସ୍. ପାଇଲେ, ଟାଇମସ୍ ଅଫ ଇଣ୍ଡିଆ ସମ୍ବାଦପତ୍ର ଧରି ମାମୁଁଙ୍କ ଘରେ ପହଞ୍ଚିଲେ ଏବଂ ମୋତେ କହିଲେ ଦେଖନ୍ତୁ, ମୁଁ ଆଇ.ଏ.ଏସ୍. ପାଇବା କଥା ସମ୍ବାଦପତ୍ରରେ ପ୍ରକାଶ ପାଇଛି । ମୁଁ ବିଶ୍ୱାସ କରି ପାରିଲି ନାହିଁ । ମୁଁ କହିଲି, "ଆପଣ ତ ଓ.ଏ.ଏସ୍. ପରୀକ୍ଷା ଦେଇ ପାଇ ନଥିଲେ, ଆଉ ଆଇ.ଏ.ଏସ୍ ପାଇଲେ କିପରି ?" କଥାଟି ତାଙ୍କୁ ବାଧିଲା । ସେ ମୁହଁ ଶୁଖାଇ କହିଲେ, "ଏ କଥା ସତ୍ୟ ।" ମାମୁଁ ମଧ କଥାଟି ଶୁଣି ବିଶ୍ୱାସ କରିପାରୁ ନଥିଲେ ।

ଇତି ମଧରେ କେତେ ବର୍ଷ ବିତି ଯାଇଛି । ମୋ ସହିତ ତାଙ୍କର ଆଉ ସାକ୍ଷାତ୍ ହୋଇ ନଥିଲା ।

ଦିନେ ସମ୍ବଲପୁର [illegible] ମୋ କାର୍ ଖରାପ ହୋଇଗଲା । ସେଠାରୁ କାରରୁ ଓହ୍ଲେଇ କେଉଁଠି ଗେଟେ[illegible] ଆଖପାଖରେ ଆଖି ବୁଲାଉଛି, ହଠାତ୍ ମୋତେ ଦେଖି ଉପେନ୍ଦ୍ର ବାବୁ ପାଖକୁ ଆସିଲେ ଏବଂ ଖୁସି ହୋଇଗଲେ । ଦୁଃଖସୁଖ ହେଲୁ । ସେ କହିଲେ ସମ୍ବଲପୁରରେ ଅତିରିକ୍ତ ଜିଲ୍ଲାପାଳ ଭାବରେ ଯୋଗ ଦେଇଛନ୍ତି । ପାଖରେ ଠିଆ ହୋଇଥିବା ଡ୍ରାଇଭରକୁ ଡାକି କହିଲେ ସାର୍‌ଙ୍କ ଗାଡ଼ି ଟିକିଏ ଦେଖିନିଅ । କଥାବର୍ତ୍ତା ହେଉଥିବା ସମୟରେ ତାଙ୍କ ଡ୍ରାଇଭର ଗାଡ଼ିଟି ସଜାଡ଼ି ଦେଲା ।

କିଛି ବର୍ଷ ବିତିଗଲା ।'ଜୀବନରଙ୍ଗ' ପତ୍ରିକାର ସଂପାଦକ ଭାବରେ ଭୁବନେଶ୍ୱରରେ ଅବସ୍ଥିତ ଏକ ନିଗମକୁ ବିଜ୍ଞାପନ ନିମନ୍ତେ ଆବେଦନ କରିଥାଏ । ଉଚ୍ଚ ପଦବୀ ଆଇ.ଏ.ଏସ୍ ଅଫିସରମାନେ ନିଗମର ଅଧ୍ୟକ୍ଷ ପଦରେ ଅବସ୍ଥାପିତ ହେଉଥିଲେ । ଚିଠି ପଠାଇବାର ଦଶଦିନ ମଧ୍ୟରେ ବିଜ୍ଞାପନଟି ପାଇ ମୁଁ ଖୁସି ହୋଇଗଲି । ଏହା କିପରି ସମ୍ଭବ ହେଲା ? ଚିଠିତଳେ ଦେଖିଲି ସ୍ୱାକ୍ଷର କରିଛନ୍ତି ବନ୍ଧୁ ଉପେନ୍ଦ୍ର ମଲ୍ଲିକ । କିଛିଦିନ ପରେ ଭୁବନେଶ୍ୱର ଯାଉଥିବାବେଳେ ଖୋଜିଖୋଜି ତାଙ୍କ ଅଫିସରରେ ପହଞ୍ଚିଲି । ତାଙ୍କ ସହିତ ସାକ୍ଷାତ୍ ହେଲା । ବେଶ୍ କିଛି ସମୟ ଆମେ କଥାବାର୍ତ୍ତା ହେଲୁ । ଉପେନ୍ଦ୍ର ମଲ୍ଲିକ ବେଶ୍ ମେଳାପୀ ବ୍ୟକ୍ତି ଥିଲେ । ସେ ଡକ୍ଟର ରାଜକୁମାରୀ ଶର୍ମାଙ୍କୁ ବିବାହ କରିଥିଲେ । ତାହାହିଁ ଥିଲା ମୋର ଶେଷ ଦେଖା ।

କିଛି ବର୍ଷ ତଳେ ତାଙ୍କ ପରଲୋକ କଥା ମୁଁ ସମ୍ବାଦପତ୍ରରୁ ଜାଣିଲି । ଆଜି ଫକୀରମୋହନ କଲେଜର ହୀରକ ଜୟନ୍ତୀ ଅବସରରେ ସ୍ମରଣିକା ପାଇଁ ଲେଖିବା ବେଳେ ଏହି ଅନୁଷ୍ଠାନରୁ ତିଆରି ହୋଇଥିବା ଏହି ବଡ଼ ମଣିଷଟିର କଥା ବେଶୀ ମନେ ପଡ଼ିଲା । ତାଙ୍କଠାରୁ ଆହୁରି ଅନେକ ଜ୍ଞାନୀ ଗୁଣୀ ବଡ଼ଲୋକ ଏହି ଅନୁଷ୍ଠାନରୁ ମଧ୍ୟ ତିଆରି ହୋଇଛନ୍ତି । ସେମାନଙ୍କ ଭିତରୁ ଜଣେ ହେଲେ ଆମ ଗାଁର ପ୍ରଦିପ ମହାନ୍ତି ଯେ କି ବର୍ତ୍ତମାନ ଓଡ଼ିଶାର ଚିଫ୍ ସେକ୍ରେଟେରୀ । ଆଜି ହୀରକ ଜୟନ୍ତୀ ଅବସରରେ ସମ୍ମାନିତ ହେଉଥିବା ଏହି ଅନୁଷ୍ଠାନର ଛାତ୍ର ମନୋଜ ଦାସ, ଛାତ୍ରୀ ଶାନ୍ତିଦେବୀ ଓ ଶିକ୍ଷକ ଜୟନ୍ତ ମହାପାତ୍ର ମଧ୍ୟ ନିଜନିଜ କ୍ଷେତ୍ରରେ ନିଜକୁ ସୁପ୍ରତିଷ୍ଠିତ କରିବା ସହିତ ଅନୁଷ୍ଠାନଟିର ଗୌରବ ବୃଦ୍ଧି କରି ପାରିଛନ୍ତି । ଏହିଭଳି ଏହି ଅନୁଷ୍ଠାନର ପ୍ରତିଭାଧରମାନଙ୍କ ନାମ ଲେଖି ବସିଲେ ଲମ୍ବା ଫର୍ଦ୍ଦ ହେବ । ସଂକ୍ଷେପରେ ଏତିକି ମୁଁ ମୋର ଏହି ପ୍ରିୟ ଆଲ୍‌ମାମେଟର ପାଇଁ ଖୁବ୍ ଗର୍ବୀତ ଏବଂ ଏହି ଅବସରରେ ମୁଁ ତାକୁ ମୋର ପ୍ରଣାମ ଜଣାଉଛି ।

• ମୁଖ୍ୟ ସଂପାଦକ : 'ଜୀବନରଂଗ'

କଟକ-୭୫୩ ୦୦୨

# ପଛକୁ ଫେରି ଚାହିଁ ଦେଖୁଛି

## ପ୍ରଫେସର ଡକ୍ଟର ଦେବେନ୍ଦ୍ର ନାଥ ରାଉତ

ମଣିଷ ପଛକୁ ଚାହିଁ ଦେଖେ ତା'ର ଅତୀତକୁ । ସ୍ମୃତି ଭିଜା ଅତୀତରେ ଥାଏ ଅନେକ ଆତ୍ମୀୟତା । ଅତୀତର ଇତିହାସ ପୃଷ୍ଠାରେ ଖୋଜେ ତା'ର ପାଦଚିହ୍ନ । ଅତୀତର ଫିକାରଙ୍ଗ, ଅସ୍ପଷ୍ଟ ରାଗିଣୀ ପ୍ରତି ଆତ୍ମୀୟତାର ମନଟିଏ ମିଳିଗଲେ ସେ ମହ୍ଲାରିତ ହୋଇଉଠେ, ତା' ଦେହରେ ଲାବଣ୍ୟ ଫୁଟିଉଠେ ।

ଆଜି ପଛକୁ ଚାହିଁ ତୋତେ ଦେଖିଲାବେଳେ ମନେ ପଡୁଛି ସେହିଦିନ କଥା । ସେହି ନୂଆ ଉତ୍ସାହ, ସେହି ନୂଆ କର୍ମ ପ୍ରେରଣା । ଆଖିରେ ଥିଲା କେତେ ସ୍ୱପ୍ନ । ସବୁ ସ୍ୱପ୍ନତ ସତ ହୁଏନା । ସମୟର ଉତ୍ତରଣରେ ପରିବର୍ତ୍ତିତ ପରିପ୍ରେକ୍ଷୀରେ ସ୍ୱପ୍ନ ରାଇଜରେ କିଛିଟା ଭଟ୍ଟା ପଡ଼ିଯାଏ, ଶିଥିଳତା ଆସିଯାଏ ଓ ତାହାର ଛବି ଗୁଡ଼ିକ ମ୍ଳାନ ହୋଇ ପଡ଼ନ୍ତି । କିନ୍ତୁ ଆତ୍ମୀୟ ମଣିଷଟିଏ ପାଇଗଲେ ସେହି ପୁରୁଣା ସ୍ୱପ୍ନ ଭିତରେ ନୂତନ ଭାବାବେଶର ବିହ୍ୱଳତା ପରିପ୍ରକାଶ କରେ । ପୁଣି ସୃଜନଶୀଳତାର ସବୁଜିମା ଉକୁଟି ଉଠେ ।

ପଛକୁ ଫେରି ଚାହିଁ ଆଜି ତୋତେ ଦେଖିଲାବେଳେ ମନରେ କାହିଁକି ଏଭଳି ବ୍ୟାକୁଳତା ଉଠେ, ବୁଝିହୁଏନି । ହୁଏତ ସେତେବେଳେ ଯେଉଁଟା ମୋ ପାଇଁ ବର୍ତ୍ତମାନ ଥିଲା, ଆଜି ତାହା ଅତୀତ ହୋଇ ଯାଇଛି । ଅତୀତକୁ ପାଶୋରି ଦେବାର ଅଭିନୟ ଭିତରେ ତୁ ଆନମନା ହେଉଛୁ । ତୁ ଚୁପି ଚୁପି କହି ଦେବାକୁ ଚାହୁଁଛୁ, ତୋ' ଅଙ୍ଗ ଲତିକାରେ ଥିବା କୁନି କୁନି ଫୁଲର ଅତୀତ ହେଉଛି ତୋ' ପାଦ ତଳର ମାଟି । ସେହି ଅତୀତକୁ ଦୂରେଇ ଦେଲେ ଲତିକାଟି ମଳିନ ପଡ଼ି ଝଡ଼ି ପଡ଼ିବ । ତେଣୁ ତୁ ଆତ୍ମୀୟ ମଣିଷଟିଏ ଖୋଜୁଛୁ ତୋତେ ସଜାଡ଼ି ଧରି ରଖିବା ପାଇଁ ।

ଯାହା ତୋ'ର ଅତୀତ, ତାହା ମୋ ପାଇଁ ସ୍ମୃତି । ସେହି ସ୍ମୃତିର ଅଇନାରେ ଆଜି ଯାହା ଦେଖୁଛି, ତହିଁରେ କିଛି ବ୍ୟତିକ୍ରମ ଅନୁଭବ କରୁଛି । କିଛି ଅସଜଡ଼ା ହେବାଭଳି ଲାଗୁଛି । କେତେକ ହୁଏତ ତୋ' ଅତୀତକୁ ଏଡ଼ାଇ ଦେବାର ଛଳନା କରି ତାହାକୁ ଆପଣେଇ ନେବାରେ କୁଣ୍ଠିତ ପ୍ରକାଶ କରୁଛନ୍ତି । କାରଣ, ଅତୀତରେ ଯାହାକିଛି ଘଟିଛି ତାହା ସେମାନଙ୍କ ପାଇଁ ଗ୍ରହଣୀୟ ହୋଇ ପାରୁନାହିଁ । ଅବଶ୍ୟ ତାହା ବ୍ୟକ୍ତି ବିଶେଷର ଦୃଷ୍ଟିକୋଣ ଉପରେ ନିର୍ଭର କରେ । ଯେ ତାହାକୁ ଗ୍ରହଣ ନକରି ପାରେ, ସେ ସମାଲୋଚନା କରେ । ଏଥିରେ ବ୍ୟଥିତ ହେବାର ନାହିଁ । ଏହା ହେଉଛି ମଣିଷର ଏକ ମନସ୍ତାତ୍ତ୍ୱିକ ଦିଗ । ସମସ୍ତଙ୍କର ଦୃଷ୍ଟିକୋଣ ଭିନ୍ନ । ଏହା ଏକ ନିଛକ ସତକଥା ।

ଏହି ପରିପ୍ରେକ୍ଷୀରେ ମନେପଡ଼େ ପୃଥିବୀର ଆଦ୍ୟଶ୍ଳୋକ, ଯାହା ବାଲ୍ମିକୀଙ୍କ ଅନ୍ତରରୁ ବାହାରି ଆସିଥିଲା -

''ମା ନିଷାଦ୍ ପ୍ରତିଷ୍ଠାତ୍ୱମଗମ ଶାଶ୍ୱତ ସମାଃ,<br>ଯତ୍ କ୍ରୌଞ୍ଚ ମିଥୁନାତ୍ ଏକମ ବଧି କାମ ମୋହିତମ୍ ।''

କ୍ରୌଞ୍ଚ ଓ କ୍ରୌଞ୍ଚି ଯୁଗଳ ପ୍ରେମରେ ବନ୍ଦୀ ଥିଲାବେଳେ, ସେଠାରେ ବ୍ୟାଧର ଦୃଷ୍ଟିଭଙ୍ଗୀ କ'ଣ ଥିଲା ଏବଂ ବାଲ୍ମିକୀଙ୍କର ଦୃଷ୍ଟିଭଙ୍ଗୀ କ'ଣ ଥିଲା । ବ୍ୟାଧର ଶରାଘାତରେ କ୍ରୌଞ୍ଚ ପକ୍ଷୀର ମୃତ୍ୟୁରେ ଆନନ୍ଦ ଅନୁଭବ କରୁଥିବା ବ୍ୟାଧର ଦୃଷ୍ଟିଭଙ୍ଗୀ ଠାରୁ ଏହାକୁ ଦର୍ଶନ କରି ମନରେ ବ୍ୟଥିତ ହୋଇଥିବା ବାଲ୍ମିକୀଙ୍କର

ଦୃଷ୍ଟିଭଙ୍ଗୀ ଭିନ୍ନ ଥିଲା । ତେଣୁ ତୋ' ପରିବାର ଭିତରେ ବ୍ୟାଧର ଦୃଷ୍ଟିଭଙ୍ଗୀ ଯେ ନାହିଁ, ତାହା କେମିତ କହିବି ।

ତଥାପି, ତୋ' ଚାରିପାଖରେ ଘେରିଥିବା ମଣିଷ ଭିତରେ ଆତ୍ମୀୟତା ପ୍ରଚ୍ଛନ୍ନ ଭାବରେ ଲୁଚି ରହିଛି । କିଛି ମଣିଷ ପାଖରେ କିଛି ଆତ୍ମୀୟତା ରହିଛି, ତାହାକୁ ପ୍ରମାଣିତ କରିବା ପାଇଁ କିଛି ପରିସ୍ଥିତି ଦରକାର ।

''ଦସ୍ୟୁ ରତ୍ନାକର ଭିତରେ ବାଲ୍ମିକୀ ଥିଲା ପରା ।''

ଆଜି ତୋତେ ପଛକୁ ଫେରିଚାହିଁ ଦେଖିଲା ବେଳେ ମନେ ପଡୁଛି କେତୋଟି ଅବିସ୍ମୃତ ମୁହୂର୍ତ୍ତ । ତୋ' ଆତ୍ମୀୟମାନଙ୍କ ମଧ୍ୟରୁ କୋଡେଟି ଭଲ ମଣିଷ ପାଇଥିଲୁ ଯେଉଁମାନଙ୍କ ପରଶପାଇ କେତେ କ'ଣ ସ୍ୱପ୍ନ ଦେଖିଥିଲୁ, ତାହାର କଳନା ନାହିଁ । ତୋ' ସ୍ୱପ୍ନକୁ ସାକାର କରିବା ପାଇଁ ଆମେ ମଧ୍ୟ ସ୍ୱପ୍ନର ସଉଧ ଗଢୁଥିଲୁ ।

ଆଜି ମନେ ପଡ଼ି ଯାଉଛି ସେହି ଅତୀତର ଏକ ଅଭୁଲା ସ୍ୱପ୍ନ । ଏବେ ମଧ୍ୟ ଗୁଂଜରିତ ହେଉଛି ଆଜି ଏହି ବେଳାରେ । ସେ ସ୍ୱପ୍ନ ଥିଲା ଜଣେ ଆଶାବାଦୀ ତୋ'ର ଅତି ଆତ୍ମୀୟ ମଣିଷର ତୋ' ସହିତ ନିବଡ଼ତାର ପ୍ରତିଫଳନ ।

ମୁଁ ଅତିଶୟ ଭାବପ୍ରବଣ ହୋଇ ପଡୁଛି । ସାହିତ୍ୟର ଛିଟା ଦେଇ ଯେଉଁ ଅଭିବ୍ୟକ୍ତି ମୁଁ ପ୍ରକାଶ କରିବାକୁ ଚାହୁଁଛି, ତହିଁରେ ସତ୍ୟ ରହିଛି କିନ୍ତୁ ତଥ୍ୟଟି ଲୁଚି ଯାଉଛି । ତେଣୁ ଏହି ଭାବପ୍ରବଣତା ଭିତରେ ମୁଁ ବାସ୍ତବତା ମଧ୍ୟକୁ ପ୍ରବେଶ କରୁଛି; କାରଣ ଏହି ହୀରକଜୟନ୍ତୀ ପାଳନ ଅବସରରେ ଏହାର ପର୍ଯ୍ୟାଲୋଚନା କରିବାର ଆବଶ୍ୟକତା ରହିଛି ।

ଏହି ମହାବିଦ୍ୟାଳୟ ସହିତ ମୋର ପ୍ରଥମ ସାକ୍ଷାତ ହୋଇଥିଲା ୧୯୯୨ ମସିହା ମେ-ମାସ ତା୨୫ରିଖ, ଯେଉଁଦିନ ମୁଁ ରସାୟନ ବିଭାଗର ପ୍ରାଧ୍ୟାପକ ଭାବେ ଯୋଗଦାନ କରିଥିଲି । ତା'ପରେ କ୍ରମେ ଏହି ମହାବିଦ୍ୟାଳୟ ସହିତ ମୋର ପରିଚୟ ହେଲା, ଆତ୍ମୀୟତା ବଢ଼ିଲା -ଏହାର ଭଲମନ୍ଦ, ହାନିଲାଭରେ ମୁଁ ନିଜକୁ ନିୟୋଜିତ କଲି । ଏହାର ପଚାଶ ବର୍ଷ ପୂର୍ତ୍ତୀ ଉପଲକ୍ଷେ ସୁବର୍ଣ୍ଣ ଜୟନ୍ତୀ ପାଳନ କରିବାର ଅବକାଶ ଆସିଲା । ପ୍ରଫେସର ଗୋପାଳ ଘୋଷ ଅଧ୍ୟକ୍ଷ ଥାଆନ୍ତି । ସେତେବେଳେ ନୂତନଭାବେ ଗଠିତ ପୁରାତନ ଛାତ୍ର ସଂସଦ ମହାବିଦ୍ୟାଳୟର ଅଭାବନୀୟ ପରିସ୍ଥିତିକୁ ଅଧ୍ୟକ୍ଷ ଶ୍ରୀଯୁକ୍ତ ଘୋଷଙ୍କ ଆଗରେ ପ୍ରତିଫଳନ କଲେ । ସେମାନେ ସହଯୋଗର ବାତାବରଣ ସୃଷ୍ଟିକଲେ । ସେ ସମୟରେ କଲେଜର କୋ-ଅପରେଟିଭ ସୋସାଇଟ୍‌ର ସମ୍ପାଦକ ଶ୍ରୀ ଜୟନ୍ତ କୁମାର ମହାପାତ୍ର (ଜଣେ ପୁରାତନ ଛାତ୍ର)ଙ୍କର ଅବଦାନ ଭୁଲିବାର ନୁହେଁ । ଅଧ୍ୟକ୍ଷ ମଧ୍ୟ ଏହି ମହାବିଦ୍ୟାଳୟର କଳେବର ବୃଦ୍ଧିରେ ସହଯୋଗର ହାତ ବଢ଼ାଇଲେ । ତାହାର ଫଳସ୍ୱରୂପ 'ଅତିଥି ଭବନ' ଟିଏ ନିର୍ମାଣ ହୋଇ ପାରିଲା ।

ତା'ପରେ ଯୋଗଦାନ କରନ୍ତି ପ୍ରଫେସର ଅଧ୍ୟକ୍ଷ କୃଷ୍ଣକାନ୍ତ ଦାସ ।ସେ ଏହି ମହାବିଦ୍ୟାଳୟର ପୁରାତନ ଛାତ୍ର । ତେଣୁ ତାଙ୍କର ସ୍ୱଳ୍ପକାଳ ରହଣି ଭିତରେ ପୁରାତନ ଛାତ୍ର ସଂସଦର ସହଯୋଗର ଏକ ଅଭିନବ ପରିକଳ୍ପନାର ସୂତ୍ରପାଦ କଲେ । ବାଲେଶ୍ୱର ସାଂସଦ ଶ୍ରୀଯୁକ୍ତ ଖାରବେଳ ସ୍ୱାଇଁଙ୍କର ଆଞ୍ଚଳିକ ଉନ୍ନୟନ ପାଣ୍ଠି ତଥା ପୁରାତନ ଛାତ୍ର, କର୍ମଚାରୀ ଏବଂ କଲେଜର ଛାତ୍ରମାନଙ୍କଠାରୁ ସଂଗୃହିତ୍ତ ଅର୍ଥକୁ ପାଥେୟ କରି ଗଢ଼ାହେଲା ଏକ ତ୍ରିତଳ ପ୍ରାସାଦ 'ସୁବର୍ଣ୍ଣ ସ୍ମାରକୀ ଭବନ' । ଏହି ପ୍ରାସାଦଟି ପରବର୍ତ୍ତୀ କାଳରେ ସ୍ୱୟଂଶାସିତ ମାନ୍ୟତା ପାଇବାରେ ଅନେକାଂଶରେ ପଥ ପଦର୍ଶକ ହୋଇଥିଲା । ଏହାର ତଳ ତାଲାରେ ଦୁଇଟି କଠୋରୀରେ ନିଜ ଅଧିକାରରେ ପୁରାତନ ଛାତ୍ର ସଂସଦ ତାର ଅଫିସ ମଧ୍ୟ କରୁଅଛି ।

ତା'ପରେ ଏହି ମହାବିଦ୍ୟାଳୟ ସ୍ୱୟଂଶାସିତର ମାନ୍ୟତା ପାଇଲା । କିନ୍ତୁ ଏହାର ଅନେକ

ଅଭାବନୀୟ ପରିସ୍ଥିତି ମନରେ ବ୍ୟାକୁଳତା ସୃଷ୍ଟିକଲା । ହଠାତ୍ ୨୦୦୧ ମସିହା ଫେବୃୟାରୀରେ ଅଧ୍ୟକ୍ଷ ଭାବେ ପ୍ରମୋଶନ ପାଇଲି ଏବଂ ଏଠାରୁ ବଦଳି ହୋଇ ପୁରୀର ସାମନ୍ତ ଚନ୍ଦ୍ରଶେଖର ସ୍ୱୟଂଶାସିତ ମହାବିଦ୍ୟାଳୟରେ ଯୋଗଦାନ କଲି । ଘଟଣା ଚକ୍ରରେ ପୁଣିଥରେ ଏହି ସ୍ୱୟଂଶାସିତ ମହାବିଦ୍ୟାଳୟକୁ ଅଧ୍ୟକ୍ଷଭାବେ ବଦଳି ହୋଇ ଯୋଗଦାନ କଲି ୨୦୦୨ ଫେବୃୟାରୀ ତା୧୪ରେ । ଏଠାରେ ଦୀର୍ଘଦିନର ଅଧ୍ୟାପନା ଜୀବନରେ ବାଲେଶ୍ୱରର ବୁଦ୍ଧିଜୀବୀ ତଥା ପୁରାତନ ଛାତ୍ରମାନଙ୍କର ସଂସ୍ପର୍ଶରେ ଆସି ଏହି କଲେଜର ଉନ୍ନତି ସମ୍ପର୍କରେ ଯାହାକିଛି ଆବେଗ ଓ ଉଚ୍ଛ୍ୱାସର ଆଭାସ ପାଇଥିଲି, ତାହାର ରୂପାୟନ ପାଇଁ ମୁଁ ସୁଯୋଗ ସୃଷ୍ଟି କରିବାର ପ୍ରୟାସ କଲି । ତହିଁରେ ତିନୋଟି କଳ୍ପନା ମନକୁ ଛୁଇଁଥିଲା । ମୋର ଅବସର ନେବାର ସମୟ ପାଖେଇ ଆସୁଥାଏ । ମାତ୍ର ୧୧ ମାସ ରହିଣି ସମୟ ମଧ୍ୟରେ ଯେଉଁ କଳ୍ପନା ଆଙ୍କିଥିଲି ତାହାର ସଫଳ ରୂପାୟନ ପାଇଁ ପୁରାତନ ଛାତ୍ର ସଂସଦର ସହଯୋଗ ଏକ ଐତିହାସିକ ଆଲେଖ୍ୟ ।

| | |
|---|---|
| ୧ମ ପରିକଳ୍ପନା ଥିଲା | - କଲେଜର ଅଭାବନୀୟ ପରିସ୍ଥିତିକୁ ସଜାଡ଼ିବା । |
| ୨ୟ ପରିକଳ୍ପନା ଥିଲା | - କଲେଜର ଶୈକ୍ଷିକ ବାତାବରଣ ସୃଷ୍ଟି କରିବା । |
| ୩ୟ ପରିକଳ୍ପନା ଥିଲା | - ଫକୀରମୋହନ ବିଶ୍ୱବିଦ୍ୟାଳୟର ପୂର୍ଣ୍ଣାଙ୍ଗୀକରଣ ପାଇଁ ସହଯୋଗର ହାତ ବଢ଼ାଇବା । |

ପ୍ରଥମେ ଏହାର ଅଭାବନୀୟ ପରିସ୍ଥିତିକୁ ସଜାଡ଼ିବା ପାଇଁ କଳେବର ବୃଦ୍ଧି ଏକାନ୍ତ ପ୍ରୟୋଜନ । କଳେବର ବୃଦ୍ଧିପାଇଁ ଲୋଡ଼ା ଏହାର ପରିସର ଅଥବା ସ୍ଥାନର ଅଭିବୃଦ୍ଧି ଏବଂ କୋଠାବାଡ଼ିର ନିର୍ମାଣ । ତେଣୁ ପ୍ରଥମେ ଏକ ତ୍ରିତଳ ପ୍ରାସାଦ ବିଶିଷ୍ଟ 'ବିଜ୍ଞାନ ଭବନ' ନିର୍ମାଣର ପରିକଳ୍ପନା କଲି । ଯେଉଁ ପୃଷ୍ଠଭୂମିରେ ଏହି 'ବିଜ୍ଞାନ ଭବନ' ରୂପ ନେଇଛି, ତାହାର ଅନ୍ତରାଳରେ ଯେଉଁ ଅନୁଭୂତି ଜଡ଼ିତ, ତାହାର ଏକ ସମ୍ୟକ ସୂଚନାଦେବାକୁ ମୁଁ ଉଚିତ ମନେ କରୁଛି, କାରଣ ସେଥିରେ ଅଛି ମୋର ଅନ୍ତରର କିଛି ବ୍ୟଥା ଓ ବେଦନା । ୧୯୪୪ ମସିହାରେ ପ୍ରତିଷ୍ଠିତ ଏହି ମହାବିଦ୍ୟାଳୟର ରସାୟନଗାର ଏକ ଜରାଜୀର୍ଣ୍ଣ ଆଜ୍‌ବେସ୍‌ଟସ୍ ଘରେ ପରିଚାଳିତ ହୁଏ । ଏପ୍ରିଲ -ମେ ମାସରେ ଏହି ଆଜ୍‌ବେସ୍‌ଟସ୍ ଛାତ ତଳେ ପ୍ରଚଣ୍ଡ ରୌଦ୍ରତାପ ସାଙ୍ଗକୁ ରସାୟନ ଗାରର 'ବୁନ୍‌ସେନ ବର୍ଣ୍ଣର'ର ଉତ୍ତାପ ସାରା ବତାବରଣକୁ ଏକ ବ୍ଲାଷ୍ଟ ଫରନେସ୍‌ରେ ପରିଣତ କରିଦିଏ । ଏହି ପରିସର ମଧ୍ୟରେ ପ୍ରାକ୍ଟିକାଲ କରିବା ସମୟରେ (ସାଧାରଣତଃ ପରୀକ୍ଷା ବେଳେ) ଅନେକ ପିଲା ଚେତାଶୂନ୍ୟ ହୋଇ ପଡ଼ନ୍ତି ।

ତା'ପର ଘଟଣା । ଏହି ମହାବିଦ୍ୟାଳୟ ସ୍ୱୟଂଶାସିତ ମାନ୍ୟତା ପାଇବା ପାଇଁ ସମୟ ପହଞ୍ଚିଲା । ବିଶ୍ୱବିଦ୍ୟାଳୟ ମଞ୍ଜୁରୀ କମିଶନର ପରିଦର୍ଶକମାନେ ଏଠାରେ ଉପସ୍ଥିତ ହେବାର ଦିନ ଠିକ୍ ହେଲା । କଲେଜର ସବୁକିଛି ଟିପ୍-ଟପ୍ ହୋଇଗଲା । ମୁଁ ରସାୟନ ବିଭାଗର ମୁଖ୍ୟଥାଏ । ଭଙ୍ଗା ଆଜ୍‌ବେସ୍‌ଟସ୍ ଘର ଏହି ବିଜ୍ଞାନାଗାରକୁ କ'ଣ ଟିପ୍-ଟପ୍ କରିବି । ମନ ମାନିଲା ନାହିଁ । ମୁଣ୍ଡରେ ଗୋଟିଏ ବୁଦ୍ଧି ପଶିଲା । ଯୁକ୍ତ ଦୁଇ ବିଜ୍ଞାନଗାରକୁ ସଜାଇ-ରଙ୍ଗଦେଇ-ଦ୍ୱାରଦେଶରେ ନାମ ଫଳକକୁ ପରିବର୍ତ୍ତନ କରି ଝୁଲାଇ ଦିଆଗଲା । ପରିଦର୍ଶକ ସନ୍ତୋଷ ଲାଭ କଲେ । ସେହି ଛଳନା କରିଥିବା ବ୍ୟକ୍ତିଟି ପରବର୍ତ୍ତୀ କାଳରେ ଅଧ୍ୟକ୍ଷ ଭାବେ ଯୋଗଦାନ କରିଥିବାରୁ, ସେଦିନ ସେହି ଝଲକଟି ପ୍ରଜ୍ୱଳିତ ହେବାର ସୁଯୋଗ ପାଇଲା । ସ୍ଥାନ ଅଭାବରୁ ପରିତ୍ୟକ୍ତ ଆଜ୍‌ବେସ୍‌ଟସ୍ ସେଡ୍‌କୁ ଭାଙ୍ଗି, ତା' ସ୍ଥାନରେ ନୂତନ ସୌଧର ନିର୍ମାଣ ମନକୁ ଛୁଇଁଲା । ସେ ସମୟର ଅଧିକ୍ଷଣ ଯନ୍ତ୍ରୀ (ବିଲ୍‌ଡିଂ କମିଟିର ଜଣେ ସଭ୍ୟ) ଶ୍ରୀଯୁକ୍ତ ରାଧାଶ୍ୟାମ ମହାପାତ୍ରଙ୍କର ଉକ୍ତି ଆଜି ମନେ ପଡୁଛି । ''କିଛି ଗଢ଼ିବା ପାଇଁ ହେଲେ, କିଛି ଭାଙ୍ଗିବାର ଅବଶ୍ୟକତା ଅଛି ଏବଂ ତାହା ନିୟମ ବର୍ହିଭୁତ ନୁହେଁ ।''ଏହି ଉକ୍ତିକୁ ପାଥେୟ କରି ବିଜ୍ଞାନ ଭବନଟିଏ ଗଢ଼ିବାର ଉଦ୍ଯମ

ମାନସିକତାକୁ ଚରିତାର୍ଥ କରିବାପାଇଁ ପୁରାତନ ଛାତ୍ର ସଂସଦର ସହଯୋଗ ସବୁଦିନ ପାଇଁ ସ୍ମରଣୀୟ ହୋଇ ରହିବ । ବାଲେଶ୍ୱର ସାଂସଦ ଶ୍ରୀଯୁକ୍ତ ଖାରବେଳ ସ୍ୱାଇଁଙ୍କର ଆଞ୍ଚଳିକ ଉନ୍ନୟନ ପାଣ୍ଠିର ସହଯୋଗରେ ପୁରାତନ ଛାତ୍ର ସଂସଦର ସମ୍ପାଦକ ଶ୍ରୀଯୁକ୍ତ ସୁବାସ ଚନ୍ଦ୍ର ପାତ୍ରଙ୍କ ତତ୍ତ୍ୱାବଧାନରେ ଏବଂ ଏହି ସହରର ସମସ୍ତ ବୁଦ୍ଧିଜୀବୀ ତଥା କଲେଜ ପରିଚାଳନା ସମିତିର ଚେୟାରମେନ୍ ଶ୍ରୀଯୁକ୍ତ ରାବନ୍ଦ୍ରମୋହନ ଦାସଙ୍କର ପ୍ରେରଣାରେ ବିଜ୍ଞାନ ଭବନର ଦ୍ୱିତୀୟ ମହଲା ପରିସମାପ୍ତି ଘଟିଛି । ତୃତୀୟ ମହଲା ଯେ ସମ୍ପୂର୍ଣ୍ଣ ହେବ ସେ ବିଶ୍ୱାସ ମୁଁ ରଖୁଛି । ସେହିଭଳି ପ୍ରଚେଷ୍ଟାରେ ସ୍ଥାନୀୟ ବିଧାୟକ ଶ୍ରୀଯୁକ୍ତ ପ୍ରଦୀପ ଦାଶଙ୍କ ଆଞ୍ଚଳିକ ଉନ୍ନୟନ ପାଣ୍ଠିର ବିନିଯୋଗରେ ଏହାର କଳେବର ବୃଦ୍ଧିରେ କିଛିଟା ସାହାଯ୍ୟ କରିଛି । ତା'ପରେ ଦ୍ୱିତୀୟ ଓ ତୃତୀୟ ପରିକଳ୍ପନାର ସଫଳ ରୂପାୟନ । କଲେଜର ଶୈକ୍ଷିକ ବାତାବରଣ ଆଣିବା ପାଇଁ ପ୍ରଚେଷ୍ଟା । ଏହାର ପ୍ରଥମ ପଦକ୍ଷେପ ସ୍ୱରୂପ, କଲେଜର ପ୍ରତ୍ୟକ୍ଷ ନିର୍ବାଚନ ପରିବର୍ତ୍ତେ ପରୋକ୍ଷ ନିର୍ବାଚନ କରାଇବାର ମାନସିକ ପ୍ରସ୍ତୁତି । ଏହି ପରିପ୍ରେକ୍ଷୀରେ ମନେପଡ଼େ ସହରର ପୁରାତନ ଛାତ୍ର ଓ ବୁଦ୍ଧିଜୀବିମାନଙ୍କର ଅକୁଣ୍ଠିତ ସହଯୋଗ ଓ ପ୍ରେରଣା । ସହରର ବୁଦ୍ଧିଜୀବି ଓ ବିଭିନ୍ନ ରାଜନୈତିକ ନେତୃବୃନ୍ଦ, ପୁରାତନ ଛାତ୍ରନେତାମାନଙ୍କୁ ନେଇ ଯେଉଁ ସଭା ଅନୁଷ୍ଠିତ ହୋଇଥିଲା ଏବଂ ସେଥିରେ ମୋତେ ଯେଉଁ ଅକୁଣ୍ଠିତ ସହଯୋଗ ମିଳିଥିଲା, ତାହାରି ଉପରେ ଭରସା ରଖି କଲେଜର ଛାତ୍ର ୟୁନିୟନ ନିର୍ବାଚନର ରୂପରେଖର ପରିବର୍ତ୍ତନ କରି ଶୈକ୍ଷିକ ବାତାବରଣ ସୃଷ୍ଟି କରିବାକୁ ସମର୍ଥ ହୋଇଥିଲି । ସେହି ନାଗରିକ ମାନଙ୍କ ସଭାରେ ମଧ ସର୍ବସମ୍ମତି କ୍ରମେ ନିଷ୍ପତ୍ତି ନିଆଗଲା ଯେ, ଏହି ମହାବିଦ୍ୟାଳୟର ୫ଟି ଉପାଧ୍ୟୁତ୍ତର ପାଠ୍ୟକ୍ରମ ବିଶ୍ୱବିଦ୍ୟାଳୟକୁ ସ୍ଥାନାନ୍ତରିତ କରିବା, ଯାହାଦ୍ୱାରା ଏହା ଏକ ପୂର୍ଣ୍ଣାଙ୍ଗ ବିଶ୍ୱବିଦ୍ୟାଳୟର ମାନ୍ୟତା ପାଇବାପାଇଁ ଯୋଗ୍ୟ ବିବେଚିତ ହେବ । ଏହି ଦୁଇଟି ଐତିହାସିକ ନିଷ୍ପତ୍ତି ନେବାରେ ମୋତେ ସାହଯ୍ୟ କରିଥିବାରୁ ମୁଁ ବାଲେଶ୍ୱରର ପୁରାତନ ଛାତ୍ର ସଂସଦ ଓ ବୁଦ୍ଧିଜୀବିମାନଙ୍କ ନିକଟରେ କୃତଜ୍ଞତା ପ୍ରକାଶ କରୁଛି ।

ଏହି ଅବସରରେ ମୋର ମନେ ପଡୁଛି ଏହି ମହାବିଦ୍ୟାଳୟ ପରିସର ଭିତରେ ବର୍ଷବର୍ଷ ଧରି ବାତ୍ୟାରେ ଉପୁଡ଼ି ପଡ଼ିଥିବା ୧୦୦ ବର୍ଷର ପୁରାତନ ମହାନିମ୍ବ ଗଛର କାହାଣୀ । ଏଭଳି ଏକ ମୂଲ୍ୟବାନ ଗଛକୁ କୁଚକ୍ରାନ୍ତ କରି ନିଲାମ କରାଇ ନେବାର ପ୍ରଚେଷ୍ଟା ମୋ ଦୃଷ୍ଟିକୁ ଆସେ ଓ କଲେଜର ବୃହତ୍ତର ସ୍ୱାର୍ଥ ଦୃଷ୍ଟିରୁ ତାହାକୁ ଆପଣେଇ ନେବାକୁ ମନ ବଳାଏ । ପୁରାତନ ଛାତ୍ରମାନଙ୍କର ସହଯୋଗରେ ତଥା ଶ୍ରୀଯୁକ୍ତ ରାବନ୍ଦ୍ରମୋହନ ଦାସଙ୍କର ପ୍ରତ୍ୟକ୍ଷ ତତ୍ତ୍ୱାବଧାନରେ ସରକାରୀ କଳ ନାଲିଫିତାରେ ବନ୍ଧା ନିୟମର ବ୍ୟତିକ୍ରମକୁ ଏଡ଼ାଇ ଯାଇ ପାରିବାକୁ ସକ୍ଷମ ହୋଇଥିଲୁ । ସେହି ଗଛ କାଠର ସଦୁପଯୋଗ କରି କଲେଜର ବିଭିନ୍ନ ବିଭାଗରେ ବିନିଯୋଗ କରାଯାଇ ପାରିଥିବାର ନଜିର ଯେକୌଣସି ଲୋକ ଅନୁଭବ କରିବାକୁ ସକ୍ଷମ ହୋଇପାରିବ ।

ସେହିଭଳି ଆଉ ଏକ କୁଚକ୍ରାନ୍ତ ଜନିତ ବ୍ରହ୍ମସମାଜ ଜମି ସମ୍ପର୍କୀୟ ଘଟଣା । ନିଷ୍ପନ୍ଦ, ନିଶ୍ଚଳ ଅବସ୍ଥାରେ ପଡ଼ି ରହିଥିବା ଫାଇଲ ମଧ୍ୟରୁ ତାହାକୁ ଉନ୍ମୋଚନ କରିବାର ପ୍ରୟାସ ଜାରି ରଖିଲି । ଘଟଣା କ୍ରମରେ କୁଚକ୍ରାନ୍ତ ଯୋଗୁଁ ବ୍ରହ୍ମ ସମାଜର ଜମି ଅଧିଗ୍ରହଣ ଏକପ୍ରକାର ନାସ୍ତି ବାଚକ ସୂଚନାରେ ପରିଣତ ହେବା ସମୟରେ ପୁରାତନ ଛାତ୍ର ତଥା ବୁଦ୍ଧିଜୀବିମାନଙ୍କର ଆପ୍ରାଣ ପ୍ରଚେଷ୍ଟା ଏବଂ ଉଚ୍ଚ କର୍ତ୍ତୃପକ୍ଷଙ୍କର ନିକଟରେ ସଠିକ୍ ଭାବରେ ଉପସ୍ଥାପନ କରିବାର ସଂଘଟିତ ଉଦ୍ୟମ ଯୋଗୁଁ ଆଜି ତାହା ମହାବିଦ୍ୟାଳୟର ପରିସର ମଧ୍ୟକୁ ଆସି ପାରିବାକୁ ସକ୍ଷମ ହୋଇଛି ।

ଆଜି ପଛକୁ ଫେରି ଚାହିଁ ଦେଖିଲାବେଳେ ଏଗୁଡ଼ିକ ଆପେଆପେ ମନେ ପଡ଼ିଯାଉଛି । ପ୍ରତ୍ୟେକ ମଣିଷର ଗୋଟିଏ ଜୀବନଥାଏ-ସେଥିରେ କିଛି ଅନୁଭୂତି ଥାଏ-କିଛି ସୁଖ, ଦୁଃଖ ଥାଏ, କିଛି ହସ, କାନ୍ଦ

ଥାଏ-କିଛି କଳ୍ପନା ଥାଏ -କିଛି ଆଶା, ନିରାଶା ବି ଥାଏ, ଆଉ ତା' ସାଥିରେ କିଛି ସ୍ୱପ୍ନ ବି ଥାଏ । ମୁଁ ମୋର ୧୧ ମାସ ଅଧ୍ୟକ୍ଷ ପଦରେ ରହି କିଛି ସ୍ୱପ୍ନ ଦେଖିଥିଲି । ସେହି ଫିକାଫିକା ସ୍ମୃତିରେ ଭିଜା ଅତୀତ ପୃଷ୍ଠାର କେତୋଟି ସ୍ୱପ୍ନ ମଧ୍ୟରୁ ଆଜି ଝଲସି ଉଠୁଛି ଏକ ଅଭୂଲା ସ୍ୱପ୍ନ ।

ଗୋଟିଏ ସୁଉଚ୍ଚ ଅଟ୍ଟାଳିକା
ତା' ଉପରୁ ମୁଁ ତଳକୁ ଖସୁଛି ।

ମୋର ଅତି ଆତ୍ମୀୟମାନେ ପାଟିକରି ଚିତ୍କାର କରୁଛନ୍ତି -
ବାରମ୍ବାର କହୁଛନ୍ତି -

''ନିଶ୍ଚୟ ତଳେ ପଡ଼ିବେ,
ରକ୍ତାକ୍ତ ହେବେ,
ଅଘଟଣ ଘଟିବ,
କ'ଣ ହେବ-କ'ଣ ହେବ-''

କିନ୍ତୁ ମୁଁ ତଳକୁ ଖସିବାରେ ଲାଗିଛି ।
ତଳକୁ ଖସିବା ସମୟରେ ଠିକ୍ ମଝିବାଟରେ ଥିବାବେଳେ ମୁଁ ମୋର ଆତ୍ମୀୟମାନଙ୍କୁ କହୁଛି-

''ହେ, ତୁମ୍ଭେମାନେ ଦେଖ,
ମୁଁ ତଥାପି ନିଖୁଣ ଅଛି,
ମୁଁ ରକ୍ତାକ୍ତ ହୋଇ ନାହିଁ,
କିଛି ଅଘଟଣ ଘଟିନାହିଁ-''

ଏହି ହେଉଛି ଜଣେ ଆତ୍ମୀୟ ମଣିଷର ଦୃଷ୍ଟିରେ ଆଶାବାଦୀର ସଂଜ୍ଞା ।

ଗତ ୨୦୦୩ ଜାନୁଆରୀ ତା୩୧ରିଖ ଅପରାହ୍ଣରେ ମୁଁ ସେହି ସୁଉଚ୍ଚ ଅଟ୍ଟାଳିକା ଉପରୁ ତଳେ ପଡ଼ିଲି । ରକ୍ତାକ୍ତ ହୋଇଛି କି ନାହିଁ, ସମୟ କହିବ ।

• ପ୍ରାକ୍ତନ ଅଧ୍ୟକ୍ଷ,
କଂଗ୍ରେସ ଅଫିସ ଲେନ୍
ନିଉ କଲୋନୀ, ବାଲେଶ୍ୱର

# ମହନୀୟ ଇତିହାସରୁ କେତୋଟି ଝଲକ

## ଚନ୍ଦ୍ର କୁମାର ମହାନ୍ତି

କଟକର ରେଭେନ୍‌ସା କଲେଜକୁ ଛାଡ଼ିଦେଲେ ଓଡ଼ିଶାରେ ପ୍ରଥମେ ଯେଉଁ କେତୋଟି ଇଣ୍ଟରମେଡିୟେଟ କଲେଜ ପ୍ରତିଷ୍ଠା କରାଯାଇଥିଲା ଫକୀରମୋହନ ମହାବିଦ୍ୟାଳୟ ତହିଁ ମଧ୍ୟରୁ ଗୋଟିଏ । ଏହା କାଳକ୍ରମେ ଡିଗ୍ରୀକଲେଜ ହୋଇ ଏବେ ୨୦୦୦-୨୦୦୧ରୁ ସ୍ୱୟଂଶାସିତ ମହାବିଦ୍ୟାଳୟରେ ପରିଣତ ହୋଇଛି । ୧୯୪୪ରୁ ଜନ୍ମ ନେଇଥିବା ଏହି ମହାବିଦ୍ୟାଳୟର ଷାଠିଏ ବର୍ଷ ପୂରିଯିବାରୁ ଏବର୍ଷ ଏହାର ହୀରକଜୟନ୍ତୀ ପାଳନ କରାଯାଉଥିବା ଅବସରରେ ଏହାର ଇତିହାସ, ପରମ୍ପରା ଓ ଗୌରବକୁ ନେଇ ଉଲ୍ଲସିତ ହେବାର ଅପୂର୍ବ ସୁଯୋଗଟିଏ ମିଳିଛି ।

ଏହି ଅନୁଷ୍ଠାନରୁ ଅନେକ ଛାତ୍ରଛାତ୍ରୀ ଶିକ୍ଷାପାଇଁ ନିଜନିଜର କର୍ମକ୍ଷେତ୍ରରେ ନିଜ ନିଜର କୃତି ଓ କୀର୍ତ୍ତିର ସ୍ୱାକ୍ଷର ଛାଡ଼ି ଯାଉଥିବାବେଳେ ଅନେକ ମଧ୍ୟ ସ୍ଥବୀର ବା ଲୋକାନ୍ତରିତ ହୋଇ ସାରିଲେଣି । ଏହି ଅନୁଷ୍ଠାନର ଅନେକ କୃତି ଶିକ୍ଷକ ମଧ୍ୟ ଆଜି ଜୀବନର ସାୟାହ୍ନରେ ତ ଅନେକ ପରଲୋକଗତ । ମାତ୍ର ସେହି ଛାତ୍ରଛାତ୍ରୀ ଶିକ୍ଷକଶିକ୍ଷୟତ୍ରୀମାନେ ସମସ୍ତେ ଏହି ଅନୁଷ୍ଠାନକୁ କିଭଳି ମହନୀୟ ଓ ଗୌରବ ମଣ୍ଡିତ କରିଛନ୍ତି ତାର କିଛି ଝଲକ ଏହି ଅନୁଷ୍ଠାନର ପଚାଶବର୍ଷ ପୂର୍ତ୍ତି ଅବସରରେ ପାଳିତ ହୋଇଥିବା ସୁବର୍ଣ୍ଣ ଜୟନ୍ତୀ ସମୟରେ ପ୍ରକାଶିତି 'ସୁବର୍ଣ୍ଣଶ୍ରୀ' ନାମକ ପୁସ୍ତକରେ ଦିଆ ଯାଇଥିଲା । ଏଥର ହୀରକ ଜୟନ୍ତୀ ରେ ମଧ୍ୟ 'ହୀରକଲିପି'ରେ ତାର ଆଉ କିଛି ଝଲକ ଦିଆଯିବାର ପ୍ରଚେଷ୍ଟା କରାଯାଇଛି । ଏହି ଅନୁଷ୍ଠାନର ଗୌରବମୟ ଇତିହାସ ଏତେ ଲମ୍ବା ଓ ବ୍ୟାପକ ଯେ ଏହାକୁ ଏକାବେଳକେ ଲେଖି ଶେଷ କରିହେବ ନାହିଁ । ଅଂଧମାନଙ୍କର ହାତୀ ଦେଖା ଉଦ୍ଧାରଣ ପରି ଏଥିରେ ସବୁ ଉଚ୍ଚାରିତ ଓ ଏହାର ସାମଗ୍ରିକତାରେ କିଛି ଆକଳନ କରା ଯାଇ ପାରିବ ଓ ଆମେ ସମସ୍ତଙ୍କୁ ଆମର ଆଲ୍‌ମାମେଟର ପାଇଁ ଉଲ୍ଲସିତ କରିବ ।

୧୯୫୮ରୁ ୧୯୬୨ଯାଏ ମୋର ଏହି ଅନୁଷ୍ଠାନରେ ଛାତ୍ର ଜୀବନକୁ ନେଇ ମୋ ସ୍ମୃତିରୁ କିଛି କଥା 'ସୁବର୍ଣ୍ଣଶ୍ରୀ'ରେ ଲେଖିଛି । ଏଠି ତା'ର ପୁନରାବୃତ୍ତି ଅନାବଶ୍ୟକ । ଆଜି ଏଇ ଫେରି ଚାହିଁବାର ବେଳରେ ମୋର ଆଉ କେତୋଟି କଥା ମନକୁ ଆସୁଛି । ଏହି ଅନୁଷ୍ଠାନରେ ଛାତ୍ରଜୀବନ କଟେଇ କଟକରେ ଉଚ୍ଚତର ଶିକ୍ଷାଲାଭ ପରେ ୧୯୬୬ରେ ବାଲେଶ୍ୱର ଆସି ଆଜିଯାଏ ଏଠାରେ ଆଇନ ବ୍ୟବସାୟକୁ ବୃତ୍ତିଭାବରେ ଗ୍ରହଣ କରିଥିଲେ ହେଁ ସାହିତ୍ୟ ଓ ସମାଜସେବାରେ ଅଧିକ ସମୟ ବିତେଇ ଚାଲିଛି । ଏହି ସୂତ୍ରରେ ମୋର ଏହି ପ୍ରିୟ ଆଲ୍‌ମାମେଟରର ସୁଖଦୁଃଖରେ ଆଗ୍ରହ ସହକାରେ ନିଜକୁ ସାମିଲ କରିବାର ଚେଷ୍ଟା ମଧ୍ୟ କରି ଆସିଛି ।

ବିଖ୍ୟାତ ସାହିତ୍ୟିକ ଅଧ୍ୟାପକ ରାଜକିଶୋର ରାୟ ଜଣେ ସଫଳ ଅଭିନେତା । ନିଜର ସୁଉଚ୍ଚ ସୌମ୍ୟକାନ୍ତ ଚେହେରା ସାଂଗକୁ ଗୁରୁ ଗମ୍ଭୀର ପୁରୁଷସୁଲଭ ସ୍ୱର ତାଙ୍କର ଅଭିନୟକୁ କରିଥିଲା ଅଧିକ ଆକର୍ଷଣୀୟ । ସେ କଲେଜରେ ଯୋଗଦେଲା ପରେ ତାଙ୍କରି ପ୍ରଭାବରେ କଲେଜର ଝିଅମାନେ ଅଧ୍ୟାପକ ଓ ଛାତ୍ରମାନଙ୍କ ସାଂଗରେ ମିଶି ଅଭିନୟରେ ଅଂଶ ଗ୍ରହଣ କଲେ । କଳକଳତା ଦାସ, ପି. ନିର୍ମଳା ଆଦି ଝିଅମାନେ ଏ ଦିଗରେ ନୂଆ ସଂସ୍କାର ଆଣି ଅନ୍ୟମାନଙ୍କ ପାଇଁ ଯେଉଁ ବାଟ ଫିଟାଇଲେ ଆଜି ତାହା ଚୌଡ଼ା ଓ କଂକ୍ରିଟ ହୋଇପାରିଛି । ଏଥିପାଇଁ ରାଜକିଶୋର ରାୟଙ୍କ ଅବଦାନ ଅତୁଳନୀୟ ।

ସେତେବେଳେ କଲେଜ ପରିସରରେ ଅନେକ ପ୍ରାଚୀନ ବୌଦ୍ଧମୂର୍ତ୍ତି, ପ୍ରସ୍ତର ମୂର୍ତ୍ତି, ବିରାଟ

ବିରାଟ ଲୁହା ଲଙ୍ଗର ରଖାଯାଇଥାଏ । ସେ ସବୁ ବାଲେଶ୍ୱର ଜିଲ୍ଲାର ପ୍ରାଚୀନ ବୌଦ୍ଧକୀର୍ତ୍ତିର ଓ ନୌବାଣିଜ୍ୟର ସ୍ମୃତିଲିପି । ଜାଣିବାକୁ ମିଳିଲାଯେ କଲେଜର ବିଶିଷ୍ଟ ଐତିହାସିକ ଅଧ୍ୟାପକ ଘନଶ୍ୟାମ ଦାଶ ଛାତ୍ର ଓ ଶିକ୍ଷକଙ୍କ ସହଯୋଗରେ ସେ ସବୁ ଉଦ୍ଧାର କରି ଏଠାରେ ରଖି ଏକ ବିରାଟ ଐତିହାସିକ ଆବଶ୍ୟକତା ପୂରଣ କରିଥିଲେ । ବର୍ତ୍ତମାନ ଜିଲ୍ଲା ସଂଗ୍ରହାଳୟରେ ଏସବୁକୁ ସଂରକ୍ଷଣ କରାଯାଇ ସଂଗ୍ରହାଳୟର ଶ୍ରୀବୃଦ୍ଧି କରାଯାଇଛି ।

ଜିଲ୍ଲା ସଂଗ୍ରହାଳୟକୁ ଏସବୁ ନେଲାପରେ ମଧ୍ୟ ଆହୁରି କିଛି ପ୍ରସ୍ତର ମୂର୍ତ୍ତି କଲେଜ ପରିସରରେ ରହିଥିଲା । ବର୍ତ୍ତମାନ ଏହି ଶିକ୍ଷାନୁଷ୍ଠାନର ହୀରକ ଜୟନ୍ତୀ ପାଳନ ଅବସରରେ ସେହି ମୂର୍ତ୍ତିଗୁଡ଼ିକୁ ପୁରାତନ ଛାତ୍ର ସଂସଦପକ୍ଷରୁ ଅନୁଷ୍ଠାନର ଦ୍ୱାରଦେଶରେ ସୁସଜ୍ଜିତ ଓ ସୁରକ୍ଷିତ କରାଯାଇ ପ୍ରବେଶ ଦ୍ୱାରଟିକୁ ଶ୍ରୀମଣ୍ଡିତ କରାଯାଇଛି ।

୧୯୬୮ ମସିହାରେ 'ବାଲେଶ୍ୱର ଶିକ୍ଷା ପରିଷଦ' ଗଠନ କରାଗଲା । ଏହା ପୂର୍ବରୁ ଏଭଳି ଏକ ଅନୁଷ୍ଠାନ ଗଢ଼ି ଏହାରି ମାଧ୍ୟମରେ ବାଲେଶ୍ୱର ଜିଲ୍ଲାରେ ଉପାଧ୍ୟୁତ୍ତର ଶିକ୍ଷାଦାନର ବ୍ୟବସ୍ଥା କରିବା ସହିତ ପରିଶେଷରେ ଏକ ବିଶ୍ୱବିଦ୍ୟାଳୟ ପ୍ରତିଷ୍ଠା କରିବାର ସ୍ୱପ୍ନ ପ୍ରଥମେ ଦେଖିଥିଲେ ଏହି ଅନୁଷ୍ଠାନର କେଇଜଣ ଅଧ୍ୟାପକ ଏହି ଅନୁଷ୍ଠାନର ଶିକ୍ଷକ କମନରୁମ୍‌ରେ ଏବଂ ସେମାନଙ୍କ ମଧ୍ୟରେ ମୁଖ୍ୟ ଥିଲେ ପୁରାତନ ଛାତ୍ର ସଂସଦର ପ୍ରଥମ ସଭାପତି ସ୍ୱର୍ଗତ ପ୍ରଫୁଲ୍ଲ କୁମାର ରଥ । ତାଙ୍କୁ ସହଯୋଗ କରିଥିଲେ ଅଧ୍ୟାପକ ରାଜେନ୍ଦ୍ର ଦାସ, ସତ୍ୟନାରାୟଣ ମହାନ୍ତି, ବୈରାଗୀ ଜେନା ପ୍ରମୁଖ । ସେଇମାନଙ୍କ ଉଦ୍ୟମରେ ବାଲେଶ୍ୱରର ବିଶିଷ୍ଟ ନାଗରିକଙ୍କୁ ନେଇ ଗଢ଼ାହେଲା 'ବାଲେଶ୍ୱର ଶିକ୍ଷା ପରିଷଦ' ୧୯୬୮ରେ । ଏହି ଶିକ୍ଷା ପରିଷଦର ପ୍ରଚେଷ୍ଟାରେ ଆଜି ପ୍ରତିଷ୍ଠିତ ହୋଇପାରିଛି ଫକୀରମୋହନ ବିଶ୍ୱବିଦ୍ୟାଳୟ ।

ଫକୀରମୋହନ ସାହିତ୍ୟ ପରିଷଦ ଆଜି ଓଡ଼ିଶାର ଏକ ପୁରାତନ ସାହିତ୍ୟ ଅନୁଷ୍ଠାନ । ଡକ୍ଟର କୁଂଜବିହାରୀ ଦାଶ ଏଠାରେ ଅଧ୍ୟାପକ ଭାବେ ଯୋଗ ଦେଲାପରେ ଅଧ୍ୟାପକ ତ୍ରିଲୋଚନ ମିଶ୍ର ଓ ଅନ୍ୟାନ୍ୟ ଅଧ୍ୟାପକ, ବିଜୟ କୃଷ୍ଣ ଦେ, ଅଚ୍ୟୁତାନନ୍ଦ ଦାସ, ପ୍ରହ୍ଲାଦ ପ୍ରସାଦ ମହାନ୍ତି, ଜ୍ଞାନରଞ୍ଜନ ପଟ୍ଟନାୟକ ପ୍ରମୁଖ ବିଶିଷ୍ଟ ବ୍ୟକ୍ତିମାନଙ୍କୁ ସାଂଗରେ ନେଇ ୧୯୪୮ରେ ଗଢ଼ିଲେ 'ଫକୀରମୋହନ ସାହିତ୍ୟ ପରିଷଦ' । ଏହି ଅନୁଷ୍ଠାନର ଛାତ୍ର ଓ ଶିକ୍ଷକମାନଙ୍କ ସହଯୋଗରେ ପରିଷଦର କର୍ମକର୍ତ୍ତାମାନେ ପରିଷଦର ବିକାଶ ଓ ଶ୍ରୀ ବଢ଼େଇବାରେ ସକ୍ଷମ ହୋଇ ପାରିଛନ୍ତି ।

ଏହି ଅନୁଷ୍ଠାନର ଅଧ୍ୟାପକ ରାଜେନ୍ଦ୍ର ଦାସ ଓ ସତ୍ୟନାରାରୟଣ ମହାନ୍ତିଙ୍କ ଉଦ୍ୟମରେ ସତୁରି ଦଶକରେ ଏହି କଲେଜ ପରିସରରେ ଆରମ୍ଭ ହେଲା Poetry Club । ବ୍ରଜନାଥ ରଥ, ଚଣ୍ଡିଚରଣ କର, ଶୁଭେନ୍ଦୁମୋହନ ଦାସ ଓ ମୋ ସମେତ ଆହୁରି ଅନେକ ସେମାନଙ୍କୁ ସକ୍ରିୟ ସହଯୋଗ କଲେ । ପ୍ରତି ରବିବାର କବିତା ପଢ଼ିବା ଓ କବିତା ସଂପର୍କରେ ଆଲୋଚନା କରିବା ଥିଲା କାର୍ଯ୍ୟଧାରା । ସାହିତ୍ୟ କ୍ଷେତ୍ରରେ ଉଣା ଅଧିକେ କ୍ଲବର ପ୍ରତ୍ୟେକ ସଭ୍ୟ ଆଜି ସୁପରିଚିତ ।

ଗତ କିଛି ବର୍ଷ ହେଲା ରାଜ୍ୟସରକାର ଆର୍ଥିକ ସମ୍ବଳର ଅଭାବଯୋଗୁଁ ଏହି ଅନୁଷ୍ଠାନର କୌଣସି ଉନ୍ନତିମୂଳକ କାର୍ଯ୍ୟ ପ୍ରାୟ କରୁ ନାହାନ୍ତି । ଅବସ୍ଥା ଏଭଳି ହୋଇଛି ଯେ ଅଧକ୍ଷଙ୍କ ଅବସର ଗ୍ରହଣ ପରେ ଆଉ ନୂତନ ଅଧକ୍ଷ ନିଯୁକ୍ତ ନକରି ଜଣେ ସିନିୟର ଅଧ୍ୟାପକଙ୍କୁ କାମଚଳା ଅଧକ୍ଷ ଦାୟିତ୍ୱରେ ରଖି କାମ ଚଳାଉଛନ୍ତି । କିନ୍ତୁ ତେଣେ ଘର ସବୁ ଭାଂଗି ପାଣି ଗଳିଲାଣି ତ, ପିଲାଙ୍କୁ ଜାଗା ଅକୁଳାଣ ପଡ଼ିଲାଣି । ପୁରାତନ ଛାତ୍ର ସଂସଦ ଏହି ଅଭାବନୀୟ ଅସୁବିଧାକୁ ସୁଧାରିବାକୁ ଯାଇଁ ନିଜ ଉଦ୍ୟମରେ ବିନା ସରକାରୀ ସାହାଯ୍ୟରେ ଗଢ଼ିଛନ୍ତି ତ୍ରିତଳ ପ୍ରାସାଦ 'ସୁବର୍ଣ୍ଣସ୍ମାରକୀ ଭବନ' ଓ ଆଧୁନିକ 'ବିଜ୍ଞାନ ଭବନ' । ଏହି ନିର୍ମାଣ ପାଇଁ ପୁରାତନ ଛାତ୍ର ସଂସଦ ନିଜର ପାଣ୍ଠି ସମେତ ଲୋକସଭା ଓ ବିଧାନସଭା ସଭ୍ୟମାନଙ୍କର ନିଜ ଅଞ୍ଚଳ

ଉନ୍ନୟନ ପାଣ୍ଠିରୁ ଅର୍ଥ ଆଣି ମୁଖ୍ୟତ ଖର୍ଚ୍ଚ କରିଅଛନ୍ତି । ଏ ଦିଗରେ ସ୍ଥାନୀୟ ବିଧାୟକ ଜୀବନପ୍ରଦୀପ ଦାଶ ଓ ଲୋକସଭା ସଦସ୍ୟ ମହାମେଘ ବାହନ ଐର ଖାରବେଳ ସ୍ୱାଇଁଙ୍କ ଅବଦାନ ଉଲ୍ଲେଖନୀୟ । ପୁରାତନ ଛାତ୍ର ସଂସଦର ଅଫିସ ବର୍ତ୍ତମାନ 'ସୁବର୍ଣ୍ଣ ସ୍ମାରକୀ' ଭବନର ତଳତାଲାର ଦୁଇଟି କୋଠରୀରେ ନିଜସ୍ୱ ଅଧିକାରରେ ଚାଲୁଛି ।

ଏହି ଅନୁଷ୍ଠାନ ବର୍ତ୍ତମାନ ସ୍ୱୟଂଶାସିତ ମହାବିଦ୍ୟାଳୟରେ ପରିଣତ ହେବାପରେ ଛାତ୍ରଛାତ୍ରୀ ସଂଖ୍ୟା ବଢ଼ିବା ସାଂଗକୁ ସ୍ଥାନାଭାବ ସମସ୍ୟା ମଧ ଉତ୍କଟ ହେବାରେ ଲାଗିଛି । କଲେଜର ପୂର୍ବଦିଗରେ ରାସ୍ତା ଆରପହଟେ ବ୍ରାହ୍ମସମାଜର ପ୍ରାୟ ଏକ ଏକର ପରିମିତ ଜମି ଅବହେଳିତ ଅବସ୍ଥାରେ ଖୋଲାମେଲା ଟାଙ୍ଗରା ହୋଇ ପଡ଼ିଛି । ଏହା କଲେଜର ସଂପ୍ରସାରଣ ପାଇଁ ଖୁବ୍ ଆବଶ୍ୟକ । କଲେଜ ଏହାକୁ ସରକାରଙ୍କ ଜରିଆରେ ଅଧିଗ୍ରହଣ କରିବାକୁ ଚେଷ୍ଟା କଲାରୁ କେତେକ ନ୍ୟସ୍ତ ସ୍ୱାର୍ଥ ବ୍ୟକ୍ତି ଏହା କରାଇ ନଦେଇ ନିଜେ ଏହି ମୂଲ୍ୟବାନ ଜମିକୁ ନେବାପାଇଁ ଦୁର୍ନୀତିପୂର୍ଣ୍ଣ ଉପାୟରେ କର୍ତ୍ତୃପକ୍ଷଙ୍କୁ କରାୟତ୍ତ କରି ଏହି ଅଧିଗ୍ରହଣ ପ୍ରୋସିଡିଂକୁ ଡ୍ରପ କରାଇଦେଲେ । ମାତ୍ର ପୁରାତନ ଛାତ୍ର ସଂସଦର ସକ୍ରିୟ ସହଯୋଗରେ ଓ ମୁଁ, ବୈଦ୍ୟନାଥ ଷଡ଼ଙ୍ଗୀଙ୍କ ଆପ୍ରାଣ ଉଦ୍ୟମରେ ଏହି ମୃତ ଅଧିଗ୍ରହଣ ପ୍ରୋସିଡିଂକୁ ପୁନର୍ଜୀବିତ କରାଗଲା । ସୁଖର କଥା ଏହି ଜମି ବର୍ତ୍ତମାନ ମହାବିଦ୍ୟାଳୟର ଦଖଲକୁ ଆସିପାରି ଥିବାରୁ ମହାବିଦ୍ୟାଳୟର ସଂପ୍ରସାରଣର ଅସୁବିଧା ଅନେକ ପରିମାଣରେ ଦୂରକରାଯାଇ ପାରିଛି ।

ଗତ ଷାଠିଏ ବର୍ଷ ଭିତରେ ଏହିଭଳି ନାନା ଘଟଣାକୁ ନେଇ ଏହି ଅନୁଷ୍ଠାନର ଇତିହାସ । ଏହାର ଶିକ୍ଷକମାନଙ୍କ ଦୂରଦୃଷ୍ଟି ସମ୍ପନ୍ନ ଚିନ୍ତାଧାରା, ଏବଂ ସକ୍ରିୟ ରଚନାତ୍ମକ କର୍ମଧାରାକୁ ସହରବାସୀ ଓ ପୁରାତନ ଛାତ୍ର ସଂସଦ ସକ୍ରିୟ ସହଯୋଗ ଯୋଗେଇବା ସହିତ ଦେଇଛି ଶକ୍ତି ଓ ପ୍ରେରଣା । ଫଳରେ ଆମେ ପାଇ ପାରିଛୁ ଫକୀରମୋହନ ବିଶ୍ୱବିଦ୍ୟାଳୟ; ସାହିତ୍ୟ ଓ ସଂସ୍କୃତିର ବିକାଶ ପାଇଁ ଫକୀରମୋହନ ସାହିତ୍ୟ ପରିଷଦ, ସୁରକ୍ଷା କରିପାରିଛୁ ଐତିହାସିକ ପ୍ରାଚୀନ କୀର୍ତ୍ତିରାଜି, ଗଢ଼ିଛୁ ବାଲେଶ୍ୱର ଶିକ୍ଷା ପରିଷଦ, ତୋଳିଛୁ ସୁବର୍ଣ୍ଣ ସ୍ମାରକୀ ଭବନ ସହିତ ବିଶାଳ ବିଜ୍ଞାନ ଭବନ ଓ କଲେଜର ସଂପ୍ରସାରଣ ପାଇଁ ଯୋଗାଣ କରିପାରିଛୁ ବହୁମୂଲ୍ୟ ଜମି । ଆଜି ହୀରକ ଜୟନ୍ତୀ ସମାରୋହ ଅବକାଶରେ ଏହି କାର୍ଯ୍ୟ ଓ ଭାବନା ଆମ୍ଭଙ୍କୁ ଓ ଆମର ପରବର୍ତ୍ତୀ ପିଢିକୁ ଉଦ୍‌ବୁଦ୍ଧ କରିବା ସହିତ ଆଗକୁ ଯିବାପାଇଁ ଶକ୍ତି ଓ ପ୍ରେରଣା ଯୋଗାଇବ ବୋଲି ବିଶ୍ୱାସ ।

• ଆଡ୍‌ଭୋକେଟ
ବିବେକାନନ୍ଦ ମାର୍ଗ,
ବାଲେଶ୍ୱର -୭୫୬ ୦୦୧

# ଫକୀରମୋହନ ମହାବିଦ୍ୟାଳୟର ଅଭୁଲା ସ୍ମୃତି

## ରାଧା ଦେବୀ

୧୯୪୮ ମସିହାରେ ବାଲେଶ୍ୱର ମିଶନ ବାଳିକା ଉଚ୍ଚ ଇଂରାଜୀ ବିଦ୍ୟାଳୟରୁ ପ୍ରଥମ ଶ୍ରେଣୀରେ ପାଶକରି ଉଚ୍ଚଶିକ୍ଷା ପାଇଁ କୌଣସି ଉପାୟ ଖୋଜି ପାଇଲି ନାହିଁ । ପରିବାରରୁ ମୋର ବାପା ଓ ଜେଜେବାପା ଏବଂ ସାହିର ମୁଖିଆ ସମସ୍ତେ ବିବାହ ପାଇଁ ସ୍ଥିର କରି ବସିଲେ । ଡାକ୍ତରୀ ପଢ଼ିବାପାଇଁ ଅତ୍ୟନ୍ତ ଆଗ୍ରହ; ପୁଣି ସେଥିପାଇଁ ବିଜ୍ଞାନ କଲେଜରେ ନାମ ଲେଖାଇବାର ଆବଶ୍ୟକ ଥିଲା । ବାଲେଶ୍ୱରରେ ବିଜ୍ଞାନ କଲେଜ ନଥିଲା । କଟକ କିମ୍ବା କଲିକତା ଯାଇ ପଢ଼ିବା ମୋ ପାଇଁ ଏକ ସ୍ୱପ୍ନ ଭଳି ଲାଗୁଥିଲା । ଆର୍ଥିକ ଅବସ୍ଥା ପ୍ରଧାନ ପ୍ରତିବନ୍ଧକ ଥିଲା । ଝିଅମାନଙ୍କର ୯ରୁ ୧୪ ବର୍ଷ ଭିତରେ ବିବାହ କରାଇଦେବା ସେତେବେଳେ ସମାଜରେ ପ୍ରଚଳିତ ଥିଲା । ଝିଅମାନଙ୍କର ପାଠ ପଢ଼ିବାପାଇଁ କୌଣସି ଗୁରୁତ୍ୱ ଦିଆଯାଉ ନଥିଲା ।

୧୯୪୮ ମସିହାରେ ଫକୀରମୋହନ କଲେଜରେ ବିଜ୍ଞାନ ବିଭାଗ ଖୋଲିବାର ସମ୍ବାଦ ଖବରକାଗଜରେ ବାହାରିଲା । ଓଡ଼ିଶାରେ ଖବରକାଗଜ କହିଲେ ଲୋକେ ସେତେବେଳେ 'ସମାଜ' କାଗଜ ବୁଝୁଥିଲେ । ବାଲେଶ୍ୱରରୁ 'ସମାଜ' ନୀଳଗିରି ଆସୁଥିଲା । ଏଥିରେ ଫକୀରମୋହନ କଲେଜ ଅଧକ୍ଷ ବିଜ୍ଞାନ ବିଭାଗରେ ନାମ ଲେଖାଇବା ପାଇଁ ଛାତ୍ରଛାତ୍ରୀଙ୍କ ଠାରୁ ଦରଖାସ୍ତ ଆହ୍ୱାନ କରିଥିଲେ । ଏହି ସୁଯୋଗ ହାତଛଡ଼ା ନକରି ବାଲେଶ୍ୱରକୁ ଆସି କଲେଜରୁ ଆବେଦନ ଫର୍ମ ନେଇ ପୂରଣ କରି ଅଫିସରେ ଦାଖଲ କରି ସନ୍ଦିହାନ ମନରେ ନୀଳଗିରି ଫେରିଗଲି । ଏହାର କିଛିଦିନ ପରେ ପୋଷ୍ଟପିଅନ ଚିଠି ଆଣିଦେଲା । କଲେଜ ଅଧକ୍ଷଙ୍କ ଅନୁମତି ପତ୍ର ନାମ ଲେଖାଇବା ପାଇଁ; ଅର୍ଥର ପରିମାଣ ଓ ନିର୍ଦ୍ଦିଷ୍ଟ ତାରିଖ ସେଥିରେ ଲେଖାଥିଲା । ମୋର ବାପା ନୀଳଗିରି ଗଡ଼ଜାତର ପୋଲିସରେ ସବ୍‌ଇନ୍‌ସିପେକ୍ଟର କାମ କରୁଥିଲେ । ସେତେବେଳେ ଗଡ଼ଜାତ ମିଶ୍ରଣ ପରେ ତାଙ୍କର ମୋଗଲବନ୍ଦୀ ବାଲେଶ୍ୱରକୁ ବଦଳି ହୋଇଥିଲା । ପ୍ରଥମେ ମୁଁ ଭୂଇଁସାହିରେ ଅବସରପ୍ରାପ୍ତ ପୋଲିସ୍ ସବ୍-ଇନିସ୍‌ପେକ୍ଟର ଲକ୍ଷ୍ମୀନାରାୟଣ ମହାନ୍ତିଙ୍କ ଘରେ ଗୋଟିଏ ବଖରା ଭଡ଼ାନେଇ ରହିଲି । ରୋଷାଇକରି ଖାଇ ଚାଲିଚାଲି ଫକୀରମୋହନ କଲେଜ ଆସୁଥିଲି । ପରେ ଆର୍ତ୍ତ କବିରାଜ ରୋଡ଼ରେ ଥିବା ଗୋଟିଏ ପକ୍କାଘରେ ବାପାଙ୍କ ସାଙ୍ଗେ ରହୁଥିଲି । ସେହି ଘରଟି ବର୍ତ୍ତମାନ ଜୟନ୍ତ ଦାସଙ୍କ ଆନନ୍ଦ କ୍ଲିନିକ୍ ହୋଇଛି । ଫକୀରମୋହନ ମହାବିଦ୍ୟାଳୟ ମୋର ଜୀବନରେ ଏକ ବତୀଘର । ଏହିଠାରେ ପ୍ରଥମ ବେଞ୍ଚ୍‌ରେ ବିଜ୍ଞାନ ବିଭାଗରେ ଆଇ.ଏସ୍.ସି. ପଢ଼ି ନଥିଲେ ମୋତେ ଡାକ୍ତର ହୋଇ ବାଲେଶ୍ୱରରେ ରୋଗୀମାନଙ୍କୁ ସେବା କରିବାର ସୁଯୋଗ ମିଳି ନଥାନ୍ତା । ହୁଏତ କେଉଁ ଏକ ପରିବାରରେ ଗୃହିଣୀ, ମା' ହୋଇ ସାଧାରଣ ଜୀବନଯାପନ କରିବା ସାର ହୋଇଥାନ୍ତା । ଦ୍ୱିତୀୟତଃ ମହାବିଦ୍ୟାଳୟରେ ପଢ଼ି ନଥିଲେ ମୋର ଜୀବନ୍‌ର ସବୁଠାରୁ ଗୁରୁତ୍ୱପୂର୍ଣ୍ଣ ଅଂଶ ମୋର ସ୍ୱାମୀ ଶ୍ୟାମସୁନ୍ଦର ମହାପାତ୍ରଙ୍କ ସଙ୍ଗେ ଅନ୍ତରଙ୍ଗ ପ୍ରେମ ଓ ପରେ ବିବାହ ହୋଇ ପାରିନଥାନ୍ତା । ଫକୀରମୋହନ ମହାବିଦ୍ୟାଳୟର ପରିସର ମଧ୍ୟରେ ଜିଲ୍ଲାସ୍କୁଲର ପୁରୁଣା ଘର, ନୂଆହୋଇ ବିଜ୍ଞାନ ପାଇଁ ତିଆରି ହୋଇଥିବା ଏଜବେଷ୍ଟସ୍ ଛାଉଣୀ ବିରାଟ ହଲ । ସହପାଠୀମାନଙ୍କ ସହିତ ସେତେବେଳର ଦୁଇବର୍ଷର ସ୍ମୃତିମଧୁର ପରିବେଶ ମାନସପଟରେ ଆଜି ବି କମ୍ପନ ସୃଷ୍ଟିକରେ । ସବୁବେଳେ 'ଫନି' ଶବ୍ଦ ଉଚ୍ଚାରଣ କରୁଥିବା ପଦାର୍ଥ ବିଜ୍ଞାନର ବରିଷ୍ଠ ଅଧାପକ ଅଜୟ ବୀର, ଥୋତଲା

ଭାଷା,.ଗୌରବର୍ଣ୍ଣ, ରସାୟନ ବିଭାଗର ବଙ୍ଗାଳୀ ଅଧ୍ୟାପକ ଅଶୋକ ମିତ୍ର, ବୋଟାନି ବିଭାଗର ଶ୍ୟାମାନନ୍ଦ ପଟ୍ଟନାୟକ, ଗଣିତ ଅଧ୍ୟାପକ ଭୁବନାନନ୍ଦ ରାୟ, ଗଣିତ ଅଧ୍ୟାପକ ଶିବକୁମାର ପଣ୍ଡା, ଇଂରାଜୀ ଅଧ୍ୟାପକ ଦେବବାବୁ । ରେଭେନ୍ସାରୁ ମାତ୍ର ୧ମାସ ପାଇଁ ପ୍ରାଣୀବିଜ୍ଞାନ (Zoology) ପଢ଼ାଇବାକୁ ଆସିଥିବା ଅଧ୍ୟାପକ ଉପାଧ୍ୟାୟ, ଇଂରାଜୀ ଅଧ୍ୟାପକ ମୁଖାର୍ଜି ବାବୁ, ସବୁ ଆଜି ସ୍ମୃତିରେ ଅଲିଭା ହୋଇ ରହିଛନ୍ତି । ସେମାନଙ୍କର ବକ୍ତିତ୍ୱ, ଗୁଣାତ୍ମକ ଶିକ୍ଷା ସେହିଭଳି ଜାଜୁଲ୍ୟମାନ ରହିଛି; ଟିକିଏ ମ୍ଳାନ ହୋଇନାହିଁ । ବହୁଳ ସ୍ମୃତି ବହନ କରୁଥିବା ଫକୀରମୋହନ ମହାବିଦ୍ୟାଳୟର ସମୟ ସୀମା ଅର୍ଦ୍ଧଶତାବ୍ଦୀରୁ ଉର୍ଦ୍ଧ୍ୱହୋଇ ଏହାର ରୌପ୍ୟ, ସ୍ୱର୍ଣ୍ଣ ପରେ ହୀରକ ଜୁବୁଲି ପାଳିତ ହେବାକୁ ଯାଉଛି । ଯୌବନ ଓ ପ୍ରୌଢ଼ତ୍ୱ ଅତିକ୍ରମ କରି ବାର୍ଦ୍ଧକ୍ୟରେ ଉପନୀତ ହୋଇ ଆଜି ପଛକୁ ଫେରି ଚାହିଁ ସେହି କଲେଜ ଜୀବନର ସ୍ମୃତିରେ ବୁଡ଼ି ଯିବାକୁ ଇଚ୍ଛା ହେଉଛି । ଏହାର ପ୍ଲାଟିନମ୍ ଜୁବୁଲି ଓ ଶତାବ୍ଦୀର ଉତ୍ସବ ପାଳିତ ହେବ । ଆଜି ଅଧ୍ୟୟନରତ ଯୁବପିଢ଼ି ଦିନେ ପୁରାତନ ଛାତ୍ରଭାବେ ଏହାର ଦାୟିତ୍ୱ ବହନ କରିବେ ।

ସେତେବେଳେ ଫକୀରମୋହନ ମହାବିଦ୍ୟାଳୟର ପରିବେଶ ଓ ଛୋଟ ସହର ବାଲେଶ୍ୱରରେ ଏହାର ଭୂମିକା ବିଷୟରେ ନ ଲେଖିଲେ ପ୍ରବନ୍ଧଟି ଅପୂର୍ଣ୍ଣ ହେବାଭଳି ମନେହେବ । ବର୍ତ୍ତମାନର ମହାବିଦ୍ୟାଳୟ ପରିସର ମଧ୍ୟରେ ବହୁ ଅଟ୍ଟାଳିକା ନିର୍ମିତ ହେବାସଙ୍ଗେ ସଙ୍ଗେ ଏହାର କଳେବର ବୃଦ୍ଧି ପାଇଛି । ୬୦ବର୍ଷ ତଳର ୧୯୪୪ ମସିହାର ଆରମ୍ଭରେ ଏହାର ଚାରି ପାଖରେ କୁଟା ଛାଉଣୀ ଘର ବହୁତ ଥିଲା । କଲେଜରୁ ଆଜିମାବାଦ ଦେଇ ଷ୍ଟେସନ ଆଡ଼କୁ କଲେକ୍ଟରଙ୍କ କୋଠିର ପଛପାଖ ଫାଟକ ଆଗ ଦେଇ ଯାଇଥିବା ରାସ୍ତାର ଦୁଇ ପାଖରେ ବହୁତ ବଡ଼ବଡ଼ ଗଛଥିଲା । ଦୁଇପାଖରେ ଚାଳଘରେ କଲେଜ ଛାତ୍ରମାନେ ଭଡ଼ାନେଇ ମେସ୍‌କରି ରହୁଥିଲେ । କଲେଜରେ ଥିବା ଛାତ୍ରାବାସରେ ସ୍ଥାନ ସୀମିତ ଥିଲା । ଆଜିମାବାଦ୍ ରାସ୍ତାରେ ରାତ୍ରିରେ ବିଜୁଳୀବତି ନଥିବାରୁ ଷ୍ଟେସନ ଯିବାକୁ ରାତ୍ରିବେଳେ ଭୟ ଲାଗୁଥିଲା । ଛାତ୍ରୀଙ୍କ ସଂଖ୍ୟା ସୀମିତ ଥିଲା । କଳା ବିଭାଗରେ ୧୫/୨୦ଜଣ ଛାତ୍ରୀଥିଲେ ଏବଂ ବିଜ୍ଞାନ ବିଭାଗରେ ପ୍ରଥମ ବେଚ୍‌ରେ ମାତ୍ର ଆମେ ତିନିଜଣ ଛାତ୍ରୀ ଥିଲୁ । ଯୋଗବିଦ୍ୟା ଦେବୀ, ମାୟାଦାସ ଏବଂ ମୁଁ ।

ଫକୀରମୋହନ ମହାବିଦ୍ୟାଳୟ ସହରର ସାଂସ୍କୃତିକ କେନ୍ଦ୍ରବିନ୍ଦୁ ଥିଲା । ୧୯୪୪ ମସିହା ପରଠାରୁ ପ୍ରଦେଶ ତଥା ଜାତୀୟସ୍ତରରେ ବିଶିଷ୍ଟ କଳାକାର, କଣ୍ଠଶିଳ୍ପୀ ଭାରତର ଖ୍ୟାତିସମ୍ପନ୍ନ ମଞ୍ଜୁ ବାନାର୍ଜୀ, ଖ୍ୟାତନାମା କଥକ ନୃତ୍ୟଗୁରୁ ବିର୍ଜୁ ମହାରାଜ ଓ ତାଙ୍କର ଶିଷ୍ୟମାନେ । ବଙ୍ଗଦେଶର ବିଶିଷ୍ଟ ନୃତ୍ୟଶିଳ୍ପୀ ଓ ସଂଗୀତଜ୍ଞମାନେ ସାଂସ୍କୃତିକ ଉତ୍ସବରେ ଭାଗ ନେଉଥିଲେ । ଓଡ଼ିଶାରେ ବିଶିଷ୍ଟ କଳାକାର ବାଳକୃଷ୍ଣ ଦାସ, ଶ୍ୟାମାମଣି ଦେବୀ, ମନମୋହନ ସାବତ୍ ଓ ଅନ୍ୟାନ୍ୟ ବିଶିଷ୍ଟ କଳାକାରମାନେ ଯୋଗ ଦେଉଥିଲେ । ଛାତ୍ରଛାତ୍ରୀମାନେ ସଂଗୀତଜ୍ଞ ୰ସୁକୁମାର ସାହୁଙ୍କ ସହାୟତାରେ ଉଚ୍ଚକୋଟୀର ନାଟକମାନ ପରିବେଷଣ କରୁଥିଲେ କଲେଜ ହଲରେ । ସାରା ସହରର ବିଶିଷ୍ଟ ନାଗରିକ, ଅଭିଭାବକ ଓ ଶୁଭେଚ୍ଛୁମାନେ ଏହା ଉପଭୋଗ କରୁଥିଲେ । ଓଡ଼ିଶା, ବଙ୍ଗଳା ଓ ଭାରତର ଗୁଣୀ ଓ ବିଦ୍ୱାନ ବ୍ୟକ୍ତିମାନଙ୍କୁ ନେଇ ୭ ଦିନ ଧରି ଆଲୋଚନା ସଭାମାନ ଅନୁଷ୍ଠିତ ହୋଇ ସାରାପ୍ରଦେଶରେ ଚହଳ ସୃଷ୍ଟି କରିଥିଲା ।

ସେତେବେଳେ ସଭାପାଇଁ ସହରରେ କେବଳ ଫକୀରମୋହନ ମହାବିଦ୍ୟାଳୟର ହଲ, ଟାଉନ ହଲ, ଓଝା ହଲ, ବର୍ତ୍ତମାନର ଷ୍ଟେସନ କ୍ଲବ ବ୍ୟବହୃତ ହେଉଥିଲା । ବଡ଼ ସଭାମାନ ସାମିୟାନା ଟଙ୍ଗାଯାଇ ବାଗବୃନ୍ଦାବନ ପଡ଼ିଆ (ବର୍ତ୍ତମାନର ଯକ୍ଷ୍ମା ଚିକିତ୍ସା କେନ୍ଦ୍ର), ଟାଉନ ହଲ ପାଖ ପରିସର ମଧ୍ୟରେ ଖୋଲା ସ୍ଥାନରେ ହେଉଥିଲା ।

ମୁଁ ୧୯୫୯ ମସିହାରେ କଲିକତାରୁ ବାଲେଶ୍ୱରକୁ ଘରୋଇ ଚିକିତ୍ସା ପାଇଁ ଆସିବା ସମୟରେ ମଧ୍ୟ ଏହି ଅବସ୍ଥା ଥିଲା । ୧୯୬୦ ମସିହାରେ ଏକ ନାରୀ ସମ୍ମିଳନୀ ଏହି ଫକୀରମୋହନ କଲେଜ ହଲ୍‌ରେ

ହୋଇଥିଲା । ଏହି ହଲ୍‌ଟି ମେ'ରୁ ଜୁନ୍ ପ୍ରଥମ ସପ୍ତାହ ପର୍ଯ୍ୟନ୍ତ ଖାଲି ରହୁଥିବା ଯୋଗୁଁ ଫକୀରମୋହନ କଲେଜ ଅଧ୍ୟକ୍ଷଙ୍କ ଅନୁମତି ନେଇ ୧୯୬୦ରୁ ୧୯୬୫ ମସିହା ପର୍ଯ୍ୟନ୍ତ ନାରୀ ସମ୍ମେଳନ ଏହି ଅନୁଷ୍ଠାନରେ ଅନୁଷ୍ଠିତ ହୋଇଥିଲା । ମହାବିଦ୍ୟାଳୟ ଛାତ୍ରାବାସରେ ସମ୍ମେଳନର ପ୍ରତିନିଧିଭାବେ ଯୋଗ ଦେଉଥିବା ସହସ୍ରାଧିକା ନାରୀ ପ୍ରତିନିଧି ତିନିଦିନ ବ୍ୟାପି ରହୁଥିଲେ ଏବଂ ରାତ୍ରିର ବିଳମ୍ବିତ ପ୍ରହର ପର୍ଯ୍ୟନ୍ତ ସାଂସ୍କୃତିକ କାର୍ଯ୍ୟକ୍ରମ ଉପଭୋଗ କରୁଥିଲେ ।

ଏହି ମହାବିଦ୍ୟାଳୟରୁ ସହସ୍ର ସହସ୍ର ଛାତ୍ରଛାତ୍ରୀ ଉଚ୍ଚଶିକ୍ଷିତ ହେବା ସଙ୍ଗେସଙ୍ଗେ, ବାଲେଶ୍ୱରର ସାଂସ୍କୃତିକ ପ୍ରଗତିରେ ସହାୟକ ହୋଇଛନ୍ତି । ନାରୀ ପ୍ରଗତିରେ ମଧ୍ୟ ଏହା ଏକ ମୁଖ୍ୟ ଭୂମିକା ଗ୍ରହଣ କରିଛି । ଭବିଷ୍ୟତରେ ବାଲେଶ୍ୱରର ପ୍ରଗତି କ୍ଷେତ୍ରରେ ଇତିହାସ ରଚିତ ହେଲେ ମହାବିଦ୍ୟାଳୟର ଅବଦାନ ସ୍ୱର୍ଣ୍ଣାକ୍ଷରରେ ଲିପିବଦ୍ଧ ହେବ ।

ଏହି କଲେଜରୁ ଆଦ୍ୟ ଅଧ୍ୟୟନ ବର୍ଷରୁ ଏବଂ ଏହାର ପରବର୍ତ୍ତୀ ସମୟରେ ବହୁ ଛାତ୍ରଛାତ୍ରୀ ପ୍ରାଦେଶିକ ଓ ଜାତୀୟସ୍ତରରେ ବହୁ ବିଶିଷ୍ଟ ସ୍ଥାନ ଅଧିକାର କରିଛନ୍ତି । ସାରା ଜିଲ୍ଲା ତଥା ପ୍ରଦେଶର ଛାତ୍ରଛାତ୍ରୀମାନେ, ଆମର ପୁତ୍ର ପୌତ୍ରମାନେ ଏହି ମହାବିଦ୍ୟାଳୟର ମାନ (standard) ଯୋଗୁଁ ଏଥିରେ ଅଧ୍ୟୟନ କରିବା ପାଇଁ ଆଗ୍ରହୀ । ମହାବିଦ୍ୟାଳୟ ବର୍ତ୍ତମାନ ସ୍ୱୟଂଶାସିତ ମହାବିଦ୍ୟାଳୟରେ ପରିଣତ ହୋଇଛି । ଏହାର ଭବିଷ୍ୟତ ଉଜ୍ଜ୍ୱଳ ଏବଂ ଗୌରବାବହ । ଏହାର ପ୍ଲାଟିନମ୍ ଓ ଶତାବ୍ଦୀ ଉତ୍ସବ ଦିନେ ନିଶ୍ଚିତ ପାଳିତ ହେବ; ଏହି ଅନୁଷ୍ଠାନର ସ୍ୱାଭିମାନୀ ଛାତ୍ରଛାତ୍ରୀମାନେ ଭାରତର ପ୍ରଗତିରେ ଉପଯୁକ୍ତ ଭୂମିକା ଗ୍ରହଣ କରିବେ । ମୃତ୍ୟୁ ପର୍ଯ୍ୟନ୍ତ ଏହାର ସ୍ମୃତି ମୋ ମାନସପଟରେ ଅମ୍ଳାନ ହୋଇ ରହିବ ।

• ପ୍ରାକ୍ତନ୍ ଛାତ୍ରୀ,
ଫକୀରମୋହନ ମହାବିଦ୍ୟାଳୟ,
ବାଲେଶ୍ୱର

# ଆମରଣ ଅନଶନ : ଏକ ସ୍ମୃତିଲିପି

## ଡକ୍ଟର ବଂଶୀଧର ଚୌଧୁରୀ

ମହାକାଳର ଗତି କେଡ଼େ କ୍ଷିପ୍ର । କାଲିପରି ଲାଗୁଛି । ବାଲେଶ୍ୱରର ସ୍ୱନାମଧନ୍ୟ ଫକୀରମୋହନ କଲେଜର ସୁବର୍ଣ୍ଣ ଜୟନ୍ତୀ ମହୋତ୍ସବ ପାଳିତ ହୋଇଥିଲା । ଏହା ମଧ୍ୟରେ ଦଶଟି ବର୍ଷ ଅନନ୍ତ ସମୟର ସ୍ରୋତରେ ଭାସି ଗଲାଣି । ମୁହୂର୍ତ୍ତକୁ ଗଣିଗଣି ହୀରକ ଜୟନ୍ତୀ ମହୋତ୍ସବ ପାଳନ କରିବାକୁ ଫକୀରମୋହନ କଲେଜ ଓ ତା'ର ଆଲୁମିନୀ ଆସୋସିଏସନ ପ୍ରସ୍ତୁତ । ଏହି ଅବସରରେ ସ୍ମୃତି ସାଇତା କେତେ ଦୁଃଖସୁଖର କାହାଣୀ ଉଙ୍କି ମାରୁଛି ମନରେ ।

ଆମ ସମୟର କଥା । ଓଡ଼ିଶାର ବିଭିନ୍ନ କଲେଜରେ ଛାତ୍ର ଆନ୍ଦୋଳନ ହେଉଥାଏ । କଲେଜ ତରଫରୁ ସରକାରଙ୍କ ବହୁବିଧ ସମସ୍ୟାର ସମାଧାନ ପାଇଁ ଛାତ୍ରମାନଙ୍କ ତରଫରୁ ସରକାରଙ୍କ ଉପରେ ଚାପ ପକାଯାଉଥାଏ । ଫକୀରମୋହନ କଲେଜର ଛାତ୍ରମାନେ ମଧ ଏହି ଧାରାରୁ ବିଚ୍ୟୁତ ହୋଇ ନାହାନ୍ତି ବରଂ ଏ କ୍ଷେତ୍ରରେ ଆଉ ପାଦେ ଆଗକୁ ଆଗେଇ ଯିବାର ଦୃଢ଼ ସିଦ୍ଧାନ୍ତ ନେଇଥାନ୍ତି । ଏହାର ଫଳ ସ୍ୱରୂପ ଦାବୀତ ପୂରଣ ହେଲା; କିନ୍ତୁ ସରକାର ଏହି ଆନ୍ଦୋଳନର ଗଭୀର ପ୍ରଭାବକୁ ଲକ୍ଷ୍ୟକରି ସାରା ଓଡ଼ିଶାରକଲେଜ ୟୁନିୟନ୍‌ର ସଭାପତି ଓ ସମ୍ପାଦକମାନଙ୍କର ଏକ ସମ୍ମିଳନୀ ବାରବାଟି ଷ୍ଟାଡିୟମକୁ ଡାକି ବିଭିନ୍ନ ଛାତ୍ର ସମସ୍ୟାର ସମାଧାନ ଓ ଶୃଙ୍ଖଳିତ ଆଚରଣ ବିଷୟରେ ଆଲୋଚନା କରିଥିଲେ । ଏହି ଆଲୋଚନା ଦୁଇଦିନ ଧରି ଚାଲିଥିଲା । ଏହାପରେ ଲକ୍ଷ୍ୟ କରାଯାଇଛି ଫକୀରମୋହନ କଲେଜର ଥିବା ବିଭିନ୍ନ ଛାତ୍ର ସଙ୍ଗଠନ ମଧ୍ୟରେ କୌଣସି ଗଣ୍ଡୋଗଳ ହୋଇନାହିଁ । ବରଂ ଏକ ସୌହାର୍ଦ୍ଦ୍ୟପୂର୍ଣ୍ଣ ବାତାବରଣ ମଧ୍ୟରେ ସେହି ସମୟ କଟିଯାଇଛି ।

୧୯୭୭-୭୮ ଶିକ୍ଷା ବର୍ଷରେ କଲେଜରେ ନାମଲେଖା କାର୍ଯ୍ୟ ସମାପନ ହେଉହେଉ ଭିନ୍ନଭିନ୍ନ ଛାତ୍ର ସଂଗଠନ ତରଫରୁ ବିଭିନ୍ନ ଦାବି ଉପସ୍ଥାପନ କରିବାପାଇଁ ମିଟିଂମାନ ଚାଲିଥାଏ । ଅଧ୍ୟୟନରତ ଛାତ୍ରଛାତ୍ରୀମାନେ ଯେଉଁ ଗୁରୁତର ସମସ୍ୟାଗୁଡ଼ିକୁ ଅଙ୍ଗେ ଲିଭାଇଥାନ୍ତି ତା'ର ସମାଧାନ ପାଇଁ କଲେଜ ଅଧକ୍ଷଙ୍କ ଜରିଆରେ ଜିଲ୍ଲାପାଳ ଓ ସରକାରଙ୍କ ନିକଟକୁ ଦାବୀପତ୍ର ପଠାଉଥାନ୍ତି । ଏ କ୍ଷେତ୍ରରେ ସେତେବେଳେ ଫକୀରମୋହନ କଲେଜର ଏ.ଆଇ.ଏସ୍.ଏଫ୍. ଛାତ୍ର ସଙ୍ଗଠନ ଅଗ୍ରଣୀ ଭୂମିକାରେ ଅବତୀର୍ଣ୍ଣ ହୋଇଥାଏ । ଏହି ସଙ୍ଗଠନର ତତ୍କାଳୀନ ସଭ୍ୟମାନଙ୍କର ମୁକ୍ତ ଚିନ୍ତନ ହେତୁ କଲେଜର ବିଭିନ୍ନ ସମସ୍ୟାର ସମାଧାନ ପାଇଁ ଯେଉଁ ଆଲୋଚନା ହେଉଥିଲା ତା'ର ସିଦ୍ଧାନ୍ତ ଥିଲା ଅତ୍ୟନ୍ତ ଗଠନମୂଳକ । କେବଳ ଅଧ୍ୟୟନରତ ଛାତ୍ରମାନେ ହିଁ ଯେକୌଣସି ବିଷୟରେ ସର୍ବଶେଷ ନିଷ୍ପତ୍ତି ଗ୍ରହଣ କରୁଥିଲେ । ନିଜ ଖର୍ଚ୍ଚ କାଟି ସେମାନେ ଚାନ୍ଦାଦେଇ ଆନ୍ଦୋଳନ ଜନିତ ବିଭିନ୍ନ ଖର୍ଚ୍ଚକୁ ତୁଳାଉଥିଲେ । ସେ ସମୟରେ ଏହି ସଙ୍ଗଠନର କାର୍ଯ୍ୟକାରୀ ସଭ୍ୟମାନେ କୌଣସି ରାଜନୈତିକ ଦଳ ବା ବ୍ୟକ୍ତିର ପ୍ରଚ୍ଛଦ ଇଙ୍ଗିତରେ ପରିଚାଳିତ ହେବାପାଇଁ ପସନ୍ଦ କରୁ ନଥିଲେ । ନିଜ ଗୋଡ଼ରେ ନିଜେ ଛିଡ଼ା ହେବାର ଦୃଢ଼ ମନୋବଳ ଓ ଆତ୍ମବିଶ୍ୱାସକୁ ଆଧାର କରି ଅମଡ଼ା ମାଡୁଥିଲେ ଏହି ନିର୍ଭୀକ ଛାତ୍ରନେତାଗଣ । ଗତ ତେଇଶ ବର୍ଷର ଅଧ୍ୟାପକ ଜୀବନ ଓ କଲେଜ ୟୁନିୟନ୍‌ର ସହଉପଦେଷ୍ଟା ଓ ଉପଦେଷ୍ଟା ଭାବେ ମୋର ତିକ୍ତ ଅନୁଭୂତି ହେଉଛି ସେ ସମୟରେ ଆମର ଚିନ୍ତାଧାରା ଓ କାର୍ଯ୍ୟଧାରାର ଠିକ୍ ଓଲଟା ହେଉଛି ଆଜିକାଲିର ଛାତ୍ର ସଙ୍ଗଠନମାନଙ୍କର ଚିନ୍ତା ଓ କାର୍ଯ୍ୟଧାରା ।

୧୯୭୭ ସସିହାରେ ଅଗଷ୍ଟ ପ୍ରଥମ ସପ୍ତାହରେ ନୂତନ ଛାତ୍ରଛାତ୍ରୀମାନଙ୍କର ନାମଲେଖା ସରିଯାଇ ଥାଏ ଏବଂ ଆଠ ତାରିଖ ବେଳକୁ ସବୁଶ୍ରେଣୀର ପାଠ୍ୟଦାନ କାର୍ଯ୍ୟକ୍ରମ ଆରମ୍ଭ ହୋଇ ଯାଇଥାଏ । ଇଣ୍ଟରମିଡିଏଟ୍ ଓ ଡିଗ୍ରୀ ଶ୍ରେଣୀର ବରିଷ୍ଠ ଛାତ୍ରମାନେ ।.ସେତେବେଳକୁ କଲେଜର ବିଭିନ୍ନ ସମସ୍ୟା ଓ ଦାବୀ ସମ୍ପର୍କରେ ନୂତନ ଛାତ୍ରଛାତ୍ରୀମାନଙ୍କୁ ଅନୌପଚାରିକ ଭାବେ ବିଭିନ୍ନ ଉପାୟରେ ସଚେତନ କରିବା ଲାଗି ପ୍ରଚେଷ୍ଟା ଜାରି ରଖିଥାନ୍ତି । କଲେଜର ଅଧକ୍ଷ ଓ ଜିଲ୍ଲାପାଳଙ୍କ ଜରିଆରେ ସେତେବେଳକୁ ସରକାର ଛାତ୍ରଛାତ୍ରୀମାନଙ୍କର ପ୍ରଥମ ପର୍ଯ୍ୟାୟର ଦାବୀପତ୍ର ପାଇ ସାରିଥାନ୍ତି । ଦାବୀ ଗୁଡ଼ିକ ସମ୍ପର୍କରେ ଅଧକ୍ଷ ଓ ଜିଲ୍ଲାପାଳ  ଆଲୋଚନା କରି ସାରିଥାନ୍ତି ଛାତ୍ରନେତାମାନଙ୍କ ସହିତ ।

ଅଗଷ୍ଟ ପନ୍ଦର ତାରିଖରେ ଓଡ଼ିଶାର ତତ୍‌କାଳୀନ କୃଷିମନ୍ତ୍ରୀ ପ୍ରହ୍ଲାଦ ମଲ୍ଲିକ ପୋଲିସ ଲାଇନ ପ୍ୟାରେଡ୍ ପଡ଼ିଆରେ ଭାଷଣ ଦେବାକୁ ଆସିଥିବାରୁ ଫକୀରମୋହନ କଲେଜର ଛାତ୍ରପ୍ରତିନିଧିମାନେ ସର୍କିଟ ହାଉସ୍‌ରେ ତାଙ୍କ ସହିତ ସାକ୍ଷାତ ଆଲୋଚନା କରିବା ସଙ୍ଗେସଙ୍ଗେ ଏକ ଦାବୀପତ୍ର ମଧ ପ୍ରଦାନ କରିଥିଲେ । କୃଷିମନ୍ତ୍ରୀ ଯାଥର୍ଥ ଦାବୀଗୁଡ଼ିକର ପୂରଣ ନିମନ୍ତେ ମୁଖ୍ୟମନ୍ତ୍ରୀ ଓ ଶିକ୍ଷାମନ୍ତ୍ରୀଙ୍କ ସହ ଆଲୋଚନା କରିବେ ବୋଲି ନିର୍ଭର ପ୍ରତିଶ୍ରୁତି ଦେଇଥିଲେ ।

ଇମ୍‌ରଜେନ୍‌ସି ପରେପରେ ଓଡ଼ିଶାର ତାତ୍‌କାଳୀନ ମୁଖ୍ୟମନ୍ତ୍ରୀ ଶ୍ରୀଯୁକ୍ତ ନୀଳମଣି ରାଉତରାୟଙ୍କ ନେତୃତ୍ୱରେ ନୂତନ ସରକାର ଗଠିତ ହୋଇଥାଏ । ଶିକ୍ଷାମନ୍ତ୍ରୀ ଥାଆନ୍ତି ଶ୍ରୀଯୁକ୍ତ ପ୍ରଦୀପ୍ତ କିଶୋର ଦାସ । ଆଶାଥାଏ ନ୍ୟାଯ୍ୟ ଦାବୀଗୁଡ଼ିକୁ ସରକାର ମାନିନେବେ । କିନ୍ତୁ ଆନ୍ଦୋଳନକୁ ଅଧିକ ପ୍ରଭାବଶାଳୀ କରିବାପାଇଁ ଅନ୍ଧାରରେ ବାଡ଼ି ବୁଲେଇବା ଅପେକ୍ଷା କେତେକ ନିର୍ଦ୍ଦିଷ୍ଟ କାର୍ଯ୍ୟକ୍ରମକୁ ଗ୍ରହଣ କରାଗଲା ଓ କର୍ତ୍ତୃପକ୍ଷଙ୍କୁ ଏ ବାବଦରେ ଜଣାଇ ଦିଆଗଲା ।

ଅଗଷ୍ଟ ପଚିଶ ତାରିଖରେ ଆନ୍ଦୋଳନ ପାଇଁ ଛାତ୍ର କ୍ରିୟାନୁଷ୍ଠାନ କମିଟିର ଏକ ଗୁରୁତ୍ୱପୂର୍ଣ୍ଣ ବୈଠକ ଅନୁଷ୍ଠିତ ହେଲା ଓ ଏହାର ନିଷ୍ପତ୍ତି ଅନୁଯାୟୀ ଛବିଶ ତାରିଖରେ ଶ୍ରେଣୀ ବର୍ଜନ କରାଗଲା । କଲେଜର ପ୍ରାୟ ସମସ୍ତ ଛାତ୍ରଛାତ୍ରୀ ଏଥିରେ ପୂର୍ଣ୍ଣ ସହଯୋଗ କଲେ । ଏକ ବିରାଟ ପଟୁଆରରେ ଛାତ୍ରଛାତ୍ରୀମାନେ ସ୍ଲୋଗାନ୍‌ଦେଇ ଫକୀରମୋହନ କଲେଜରୁ ବାହାରି ସହର ପରିକ୍ରମା ପୂର୍ବକ କଲେକ୍ଟରେଟ୍‌ରେ ପହଞ୍ଚିଲେ । କଲେକ୍ଟରଙ୍କ ମାଧମରେ ସରକାରଙ୍କୁ ଦାବୀପତ୍ର ପ୍ରଦାନ କରିବା ଲାଗି । କଲେକ୍ଟରଙ୍କ ଅନୁପସ୍ଥିତି ହେତୁ ତାଙ୍କ ତରଫରୁ ଅତିରିକ୍ତ ଜିଲ୍ଲାପାଳ ଦାବୀପତ୍ର ଗ୍ରହଣ କଲେ ଓ ଛାତ୍ରନେତା ମାନଙ୍କର ସହିତ ଏକ ସୌହାର୍ଦ୍ଦ୍ୟ ପୂର୍ଣ୍ଣ ଆଲୋଚନା କଲେ ।

ଏହି ଆନ୍ଦୋଳନାତ୍ମକ କାର୍ଯ୍ୟକ୍ରମ ଖୁବ୍ ପ୍ରଭାବ ବିସ୍ତାରିଥିଲା । ତେଣୁ ଅଗଷ୍ଟ ଅଠେଇଶ ତାରିଖ ରବିବାର ପୂର୍ବାହ୍ନରେ ଦେଶପ୍ରିୟ ଦାସ, ହୃଷିରଥ, ସତ୍ୟପ୍ରିୟ ଦାସ ଓ ତପନ ଚକ୍ରବର୍ତ୍ତୀଙ୍କ ସହିତ କେତେଜଦଣ ଫକୀରମୋହନ କଲେଜର ପ୍ରାକ୍ତନ ଛାତ୍ର କଲେଜ ସଂଲଗ୍ନ ବୁଢ଼ା ମହାଦେବ ମନ୍ଦିର ପ୍ରାଙ୍ଗଣରେ ଚାଲିଥିବା ଆଲୋଚନା ସଭାରେ ସ୍ୱତଃପ୍ରବୃତ୍ତ ଭାବେ ପହଞ୍ଚିଥିଲେ ଓ ଛାତ୍ର ସମସ୍ୟାର ସମାଧାନ ତଥା କଲେଜର ବିକାଶପାଇଁ ତୀବ୍ର ଆନ୍ଦୋଳନ ଅପରିହାର୍ଯ୍ୟବୋଲି ମତ ପ୍ରଦାନ କରିବା ସହିତ ଛାତ୍ରମାନଙ୍କୁ ଉତ୍ସାହିତ କରିଥିଲେ ।

ଓଡ଼ିଶାରେ ଉଚ୍ଚଶିକ୍ଷାର ବିକାଶ ପାଇଁ ଏକ ସମୟରେ ଅବସ୍ଥାପିତ ବ୍ରହ୍ମପୁରର ଖଲ୍ଲିକୋଟ କଲେଜ, ସମ୍ବଲପୁରର ଗଙ୍ଗାଧର ମେହେର କଲେଜ ଅପେକ୍ଷା ତୁଳନାତ୍ମକଭାବେ ଅବହେଳିତ ଫକୀରମୋହନ କଲେଜର ଅଭାବ ଅସୁବିଧାକୁ ଦୂର କରିବାପାଇଁ ହେଲେ ଅନ୍ଦୋଳନକୁ ଏକ ଚୂଡ଼ାନ୍ତ ପର୍ଯ୍ୟାୟକୁ ନେବା ଏକାନ୍ତ ଜରୁରୀ ବୋଲି ଏହି ବୈଠକର ଅନୁଭବ ସାକାର ରୂପ ଗ୍ରହଣ କଲା ଅଗଷ୍ଟ ତିରିଶ ତାରିଖରେ । ଅଣତିରିଶ ତାରିଖରେ ଆନ୍ଦୋଳନ ପରିଚାଳନା ସମିତିର ଏକ ଗୁରୁତ୍ୱପୂର୍ଣ୍ଣ ବୈଠକ

ପରେ ଛାତ୍ରନେତାମାନେ କଲେଜର ଅଧକ୍ଷ ଏସ୍.ଏ.ମନାନଙ୍କ ସହ ସାକ୍ଷାତ ଆଲୋଚନା କଲେ । ଅଧକ୍ଷ ମନାନ୍ ଥିଲେ ଅତ୍ୟନ୍ତ ସରଳ, ଭଦ୍ର, ନମ୍ର ଓ ଛାତ୍ରବତ୍ସଳ । ସେ ଅନ୍ତରରେ ଅନୁଭବ କରିଥିଲେ ଛାତ୍ରମାନଙ୍କ ଦାବି ଯୁକ୍ତି ସଙ୍ଗତ ଓ ନ୍ୟାଯ୍ୟ । ତାଙ୍କର ପରୋକ୍ଷ ସମର୍ଥନ ଛାତ୍ରମାନଙ୍କୁ ବହୁଭାବେ ଉତ୍ସାହିତ କରିଥିଲା । ବିଭିନ୍ନ ଦାବି ମଧ୍ୟରୁ ସେ ଯେଉଁ କେତୋଟି ଦାବୀକୁ ପୂର୍ଣ୍ଣ ସମର୍ଥ ଜଣାଇଥିଲେ ସେଗୁଡ଼ିକ ହେଲା ୧-ଶ୍ରେଣୀକକ୍ଷ ପାଇଁ ନୂତନ ଗୃହ ନିର୍ମାଣ, ୨-ନୂତନ ପାଠାଗାର ନିର୍ମାଣ, ୩-ନୂତନ ଛାତ୍ରାବାସ ଓ ଛାତ୍ରୀନିବାସ ନିର୍ମାଣ, ୪-କମର୍ସବ୍ଲକ ନବୀକରଣ ନିର୍ମାଣ, ୫-ପୋଷ୍ଟଗ୍ରାଜୁଏଟ୍ ଶ୍ରେଣୀ ଖୋଲିବା ଓ ୬-ପୂର୍ବ ବନ୍ୟା କାରଣରୁ ପରୀକ୍ଷା ଫି ଛାଡ଼ କରିବା । ଅମୃତ ବଜାର ଖବରକାଗଜରେ 'Letter to the Editor' ଶିରୋନାମାରେ ପରୀକ୍ଷା ଫି ଛାଡ଼ କରିବାପାଇଁ ଫକୀରମୋହନ କଲେଜର ଛାତ୍ର ଶ୍ରୀ ଲିଙ୍ଗରାଜ ପଣ୍ଡାଙ୍କର ଦାବୀପତ୍ର ମଧ୍ୟ ଏହି ସମୟରେ ପ୍ରକାଶ ପାଇଥିଲା ।

ବାଲେଶ୍ୱରର ତତ୍‌କାଳୀନ ଜିଲ୍ଲାପାଳ ସମରବଲ୍ଲଭ ମହାପାତ୍ରଙ୍କ ସହିତ ଛାତ୍ରମାନଙ୍କ ଉପସ୍ଥିତିରେ ସମସ୍ୟାର ସାମାଧାନପାଇଁ ପଥ ପ୍ରସ୍ତୁତ କରିବା ଲାଗି ଯେଉଁ ଆଲୋଚନା କାର୍ଯ୍ୟକ୍ରମଟି ଗ୍ରହଣ କରାଯାଇଥିଲା ସେଥିରେ କଲେଜର ଅଧକ୍ଷ ଏସ୍.ଏ.ମନାନ, ଉପାଧକ୍ଷ ଅନନ୍ତ ଚରଣ ସାହୁ, ଅଧ୍ୟାପକ ମୁରଲିଧର ପଟ୍ଟନାୟକ ଓ ଡକ୍ଟର ଭାଗୀରଥି ନାୟକଙ୍କ ଉଦ୍ୟମ ଖୁବ୍ ପ୍ରଶଂସନୀୟ । କଲେଜର ସମସ୍ତ ଅଧ୍ୟାପକ-ଅଧ୍ୟାପିକା ଓ ଅଣଶିକ୍ଷା କର୍ମଚାରୀମାନେ ଏହି ଆନ୍ଦୋଳନକୁ ପୂର୍ଣ୍ଣ ପ୍ରାଣରେ ସମର୍ଥନ ପୂର୍ବକ ଆନ୍ଦୋଳନରତ ଛାତ୍ରଛାତ୍ରୀମାନଙ୍କୁ ଉତ୍ସାହିତ କରିଥିଲେ ଓ ଆବଶ୍ୟକ ସହଯୋଗ ମଧ୍ୟ ପ୍ରଦାନ କରିଥିଲେ ।

ଅଗଷ୍ଟ ତିରିଶ ସକାଳ । ଆତ୍ମୋତ୍ସର୍ଗ ଯଜ୍ଞର ଅୟମାରମ୍ଭ । ପୂର୍ବାଶା କପୋଳେ ଉଦୟଭାନୁ ଅଜାଡ଼ି ଦେଉଥାନ୍ତି ଦୀପ୍ତ ଆଶୀର୍ବାଦ । ଚରୈବେତିର ଉଦ୍‌ଘୋଷଣା । ମନରେ ଲେଶମାତ୍ର ଦ୍ୱନ୍ଦ ନାହିଁ । ନାହିଁ ଭୟ ବା ଆଶଙ୍କା । ଅଦମ୍ୟ ଉତ୍ସାହ ଓ ଉତ୍‌ଫୁଲ୍ଲତାର ସହ ବୁଢ଼ା ମହାଦେବଙ୍କ ମନ୍ଦିର ପ୍ରାଙ୍ଗଣରୁ ଆମେ ଆଗେଇ ଆସିଥିଲୁ କଲେଜ ହତା ଭିତରକୁ । ଅଫିସ ସାମ୍ନା ବାରଣ୍ଡାରେ ଦରି ପଡ଼ିଲା । କଲେଜ ଆରମ୍ଭ ହେବା ପୂର୍ବରୁ ଆମେମାନେ ଏକତ୍ର ବସିଗଲୁଁ । ଆରମ୍ଭ ହେଲା ଅନଶନ । ଆମରଣ ଅନଶନ । ଦୃଢ଼ ସଂକଳ୍ପର ମନ୍ତ୍ରଧ୍ୱନି -''ଆମର ଦାବୀ ପୂରଣ ହେଉ-ନୋହିଲେ ଆମ ପ୍ରାଣଯାଉ ।''

କ୍ରମେ ଆମ ପାଖରେ ଛାତ୍ରଛାତ୍ରୀଙ୍କର ସଂଖ୍ୟା ବଢ଼ିଲା । ଦଳମତ ନିର୍ବିଶେଷରେ ସମସ୍ତ ଛାତ୍ର ସଙ୍ଗଠନ ଏହି ଆନ୍ଦୋଳନକୁ ସ୍ୱାଗତ ଜଣାଇଲେ । ବିଭିନ୍ନ ସ୍ଲୋଗାନ୍ ମଧ୍ୟରେ ଆନ୍ଦୋଳନକାରୀଙ୍କୁ ଫୁଲମାଳ ଓ ଫୁଲତୋଡ଼ା ପିଲାମାନେ ପ୍ରଦାନ କରି ଉତ୍ସାହିତ କରୁଥାନ୍ତି । ଏହି ଆନ୍ଦୋଳନକୁ ସମର୍ଥନ କରି ଫକୀରମୋହନ ସାନ୍ଧ୍ୟ ମହାବିଦ୍ୟାଳୟ, କୁନ୍ତଳା କୁମାରୀ ସାବତ ମହାବିଦ୍ୟାଳ ଓ ସୋର ଉପେନ୍ଦ୍ର ନାଥ ମହାବିଦ୍ୟାଳୟର ଛାତ୍ରଛାତ୍ରୀମାନେ ପୁଷ୍ପଗୁଚ୍ଛ ପ୍ରଦାନ କରି ଆମମାନଙ୍କୁ ଶୁଭେଚ୍ଛା ଜଣାଇଥିଲେ । ସାମ୍ବାଦିକମାନେ ମଧ୍ୟ ଆସିଯାଇଥାନ୍ତି । କିନ୍ତୁ ଆମ ପାଖକୁ କେବଳ ଆସି ନଥିଲେ ରାଜନୈତିକ ଦଳର ନେତାମାନେ । ଅବଶ୍ୟ ବହୁ ପ୍ରାକ୍ତନ ଛାତ୍ର ଅନଶନକାରୀଙ୍କୁ ସମର୍ଥନ ଜଣାଇ ଉତ୍ସାହିତ କରି ଯାଉଥିଲେ । ତାତ୍‌କାଳୀନ ଜିଲ୍ଲାପାଳ, ଆରକ୍ଷୀ ଅଧିକ୍ଷକ ଓ ଜିଲ୍ଲା ମୁଖ୍ୟ ଚିକିତ୍ସାଧିକାରୀ କଲେଜ ଅଧକ୍ଷଙ୍କ ସହ ଅନଶନ ସମ୍ପର୍କରେ ଆଲୋଚନା ଜାରି ରଖିଥାନ୍ତି । ଅନଶନକାରୀଙ୍କ ଜିଦ୍ ଅଟଳ । ଅପରାହ୍ନରେ ଅତିରିକ୍ତ ଜିଲ୍ଲା ଚିକିତ୍ସାଧିକାରୀଙ୍କ ସହ କେତେଜଣ ଡାକ୍ତର ଆସି ଅନଶନକାରୀଙ୍କୁ ପରୀକ୍ଷା କରିଗଲେ । ସଂଧ୍ୟା ବେଳକୁ ଅଧକ୍ଷ ଅନଶନକାରୀମାନଙ୍କୁ କଲେଜର ତତ୍‌କାଳୀନ ଦୁଇ ନମ୍ବର କୋଠରୀକୁ ସ୍ଥାନାନ୍ତରିତ କଲେ । ରାତିରେ ମଧ୍ୟ ଜଣେଡାକ୍ତର ଆସିଲେ ସ୍ୱାସ୍ଥ୍ୟ ଅବସ୍ଥା ପରୀକ୍ଷା କରିବା ପାଇଁ । ସାରାରାତି ଅନେକ ଛାତ୍ର ସେଠାରେ ଉପସ୍ଥିତ ରହି ଅନଶନକାରୀଙ୍କୁ ପ୍ରେରଣା ଦେଉଥାନ୍ତି ।

ଅନ୍ୟପକ୍ଷରେ ପ୍ରଶାସନିକ ତତ୍ପରତା ଅବିଶ୍ୱାସ୍ୟ ଭାବରେ ବୃଦ୍ଧି ପାଇଥାଏ । ଅନଶନ ସମ୍ପର୍କରେ

ବାଲେଶ୍ୱର ଓ ଭୁବନେଶ୍ୱର ମଧ୍ୟରେ ଯୋଗଯୋଗ ଅବ୍ୟାହତ ଥାଏ । ଜିଲ୍ଲାପାଳ ତତ୍‌କାଳୀନ ମୁଖ୍ୟମନ୍ତ୍ରୀ, ଶିକ୍ଷାମନ୍ତ୍ରୀ, ମୁଖ୍ୟସଚିବ ଓ ଶିକ୍ଷା ସଚିବଙ୍କ ସହ ଆନ୍ଦୋଳନର ପରିସ୍ଥିତି ସମ୍ପର୍କରେ ବାରମ୍ବାର ଆଲୋଚନା କରୁଥିବାର ତଥ୍ୟ ଅନଶନକାରୀଙ୍କ ନିକଟରେ ପହଞ୍ଚୁଥାଏ । ଏଥିପାଇଁ ବାଲେଶ୍ୱରର ଅନେକ ସାମ୍ବାଦିକ ବନ୍ଧୁ ଆମକୁ ସାହାଯ୍ୟ କରୁଥାନ୍ତି ।

ଆନ୍ଦୋଳନକୁ ଉଚିତ ମାର୍ଗରେ ପରିଚାଳିତ କରିବା ଓ ଅନଶନକାରୀଙ୍କୁ ଉତ୍ସାହିତ କରିବାରେ ଯେଉଁ ବଂଧୁମାନେ ଆତ୍ମିୟତା ପ୍ରଦର୍ଶ କରିଥିଲେ ସେମାନଙ୍କ ମଧ୍ୟରୁ ସର୍ବଶ୍ରୀ ଲିଙ୍ଗରାଜ ପଣ୍ଡା, ପଶୁପତି ଚାଟାର୍ଜୀ, ରାଧାରଞ୍ଜନ ପଟ୍ଟନାୟକ, ଅନ୍ତର୍ଯ୍ୟାମୀ ପଣ୍ଡା, ଚନ୍ଦନକୁମାର ଶତପଥୀ, ଉମାକାନ୍ତ ଦାଶ, ସରୋଜ ଦାସ, ଭାଗବତ ଦଳେଇ, ରାଜକିଶୋର ଜେନା, କାମଦେବ କାନୁନ୍‌ଗୋ, ପ୍ରଶାନ୍ତ ମହାନ୍ତି, ପ୍ରସନ୍ନ ପାତ୍ର, ତନ୍ମୟ ମିଶ୍ର, ବିଶ୍ୱଜିତ ଦାସ, ବିନୋଦ ପାଣି, ଗୌରୀରାଉତ, ଦେବେନ୍ଦ୍ର ଚୌଧୁରୀ, ଅମର ପଟ୍ଟନାୟକ, ଅଜୟ ମହାପାତ୍ର, ରାଧାକୃଷ୍ଣ ସାହୁ, ନଳିନୀ ଆଚାର୍ଯ୍ୟ ଓ ସୁଜାତା ଷଡଙ୍ଗୀ ଆଦି ଅନ୍ୟତମ । ଏମାନଙ୍କ ସହିତ ଆହୁରି ଅନେକ ବଂଧୁ ସମପରିମାଣରେ ସହଯୋଗ ପ୍ରଦାନ କରିଥିଲେ ମଧ୍ୟ ଏଠାରେ ସମସ୍ତଙ୍କର ନାମ ଉଲ୍ଲେଖ କରିବା ସମ୍ଭବ ହେଉନାହିଁ ବୋଲି ଦୁଃଖିତ ।

ଅଗଷ୍ଟ ଏକତିରିଶ ସକାଳ । କଲେଜର ଦୁଇନମ୍ବର କୋଠରୀରୁ ଅନଶନକାରୀମାନେ ପୁଣି ପୂର୍ବସ୍ଥାନ କଲେଜ ଅଫିସ ବାରଣ୍ଡାକୁ ଉଠି ଆସିଲେ । ପ୍ରଥମରୁ ଆମେ ଆଠଜଣ ଆମରଣ ଅନଶନରେ ବସିଥିଲୁ । କିନ୍ତୁ ସକାଳକୁ ଆମ ସହ ଆହୁରି ଛଅଜଣ ଛାତ୍ର ଯୋଗେଦେଲେ । ଆମେ ଅଧିକ ଉତ୍ସାହିତ ହେଲୁ । ଦିନ ଆଠଟା ବେଳକୁ ଡାକ୍ତର ଆସି ଆମକୁ ପରୀକ୍ଷା କଲେ । କେତେଜଣ ଖୁବ୍ ଦୁର୍ବଳ ହୋଇ ପଡ଼ିଥାନ୍ତି । ପୋଲିସ୍ ଉପସ୍ଥିତିରେ ଡାକ୍ତର ସେମାନଙ୍କୁ ଜିଲ୍ଲା ମୁଖ୍ୟ ଚିକିତ୍ସାଳୟକୁ ପଠାଇ ଦେଲେ । ପରେପରେ ଆହୁରି କେତେଜଣଙ୍କ ଅବସ୍ଥା ଗୁରୁତର ହେଲା । ସେମାନେ ମଧ୍ୟ ଡାକ୍ତରଖାନା ଧରିଲେ । ଡାକ୍ତରଙ୍କ ପରାମର୍ଶରେ ପ୍ରଶାସନିକ ଅଧିକାରୀମାନେ ଛାତ୍ରମାନଙ୍କୁ ଅନଶନରୁ ଓହରି ଯିବାପାଇଁ ଜିଦ୍ ଧରିଲେ । କିନ୍ତୁ ଆମମାନଙ୍କର ଦୃଢ଼ ସଂକଳ୍ପ ନିକଟରେ ସେମାନେ ହାର ମାନିଲେ । ସେତେବେଳକୁ ପ୍ରଥମରୁ ବସିଥିବା ଆଠଜଣଙ୍କ ମଧ୍ୟରୁ ଚାରିଜଣ ଡାକ୍ତରଖାନାକୁ ସ୍ଥାନାନ୍ତରିତ ହୋଇଥିଲେ କିନ୍ତୁ ମୋ ସହିତ ଲେଙ୍କା ଭାଇ (ପୂର୍ଣ୍ଣଚନ୍ଦ୍ର ଲେଙ୍କା), ପ୍ରଣବ ନନ୍ଦୀ ଓ ବ୍ରଜକୁମାର ଦାସ ଉପସ୍ଥିତ ଥିଲେ କଲେଜ ବାରଣ୍ଡାରେ ।

ଅନଶନର ଗମ୍ଭୀର ପରିସ୍ଥିତି ଯୋଗୁଁ ପ୍ରଶାସନିକ ତତ୍ପରତା ଫଳରେ ଅପରାହ୍ଣ ପାଞ୍ଚଟା ବେଳକୁ ଭୁବନେଶ୍ୱରରୁ ଡେପୁଟୀ ଡି.ପି.ଆଇ. ଫକୀରମୋହନ କଲେଜରେ ପହଞ୍ଚିଲେ । କଲେଜର ଅଧ୍ୟକ୍ଷ, ଉପାଧ୍ୟକ୍ଷ, ଅଧ୍ୟାପକ, ଅଣଶିକ୍ଷା କର୍ମଚାରୀ ଓ ବହୁ ଛାତ୍ରଛାତ୍ରୀଙ୍କ ଗହଣରେ ସେ ସନ୍ତର୍ପଣରେ ଆସି ଅନଶନକାରୀଙ୍କ ନିକଟରେ ଉପସ୍ଥିତ ଥିବା ଛାତ୍ରନେତାମାନଙ୍କୁ ବିଶ୍ୱାସଯୋଗ୍ୟ ସରକାରୀ ଚିଠି ପ୍ରଦର୍ଶନ ପୂର୍ବକ ସୌହାର୍ଦ୍ଦ୍ୟପୂର୍ଣ୍ଣ ଆଲୋଚନା କଲେ । ଏହି ଆଲୋଚନା ସନ୍ତୋଷଜନକ ଥିବାରୁ ଅନଶନ ପ୍ରତ୍ୟାହାର କରିବାପାଇଁ ଆନ୍ଦୋଳନ ପରିଚାଳନା ସମିତି ନିଷ୍ପତ୍ତି ନେଲା । ବିଜୟର ବାତାବରଣ ମଧ୍ୟରେ ଡେପୁଟୀ ଡି.ପି.ଆଇ. ଅନଶନକାରୀମାନଙ୍କୁ ଅନଶନ ଭଙ୍ଗ କରିବା ପାଇଁ ଅନୁରୋଧ କରି ଫଳରସ ପ୍ରଦାନ କଲେ । ଏତେବେଳକୁ କେବଳ ଲେଂକାଭାଇ (ପୂର୍ଣ୍ଣଚନ୍ଦ୍ର ଲେଙ୍କା) ଓ ମୁଁ ସ୍ୱାଭାବିକ ଅବସ୍ଥାରେ ଥିଲୁ । ଆମେ ଦୁହେଁ ସେଠାରୁ ସିଧା ଡାକ୍ତରଖାନାକୁ ଗଲୁ ଆମର ସାଥୀମାନଙ୍କୁ ଭେଟିବା ପାଇଁ । ଏହି ଆମରଣ ଅନଶନରୁ ଆମେ ପାଇଲୁ ତିନିମହଲା ବିଶିଷ୍ଟ ନିଉ ହଷ୍ଟେଲ (୧୯୮ସିଟ୍ ସଂଖ୍ୟା), ନିଉ ଲେଡିଜ ହଷ୍ଟେଲ (୪୦ ସିଟ୍ ସଂଖ୍ୟା), କମର୍ସ ବ୍ଲକର ପୁନରୁଦ୍ଧାର, ପରୀକ୍ଷା ଫି ଛାଡ଼ ଓ ସି.ଏଲ୍.ଟି., ପି.ଏଲ୍.ଟି ପାଖରେ ନୂତନ ଗୃହ ନିର୍ମାଣ ହେବାର

ନିର୍ଦ୍ଦିଷ୍ଟ ପ୍ରତିଶ୍ରୁତି । ସରକାରୀ ସ୍ତରରେ ଏଥିପାଇଁ ଆବଶ୍ୟକ ବ୍ୟବସ୍ଥା ମଧ୍ୟ ଗ୍ରହଣ କରାଯାଇଥିଲା । ସେଦିନର ଆମ ସ୍ୱପ୍ନ ଓ ଆମରଣ ଅନଶନକାଳର ନିର୍ଦ୍ଦିଷ୍ଟ ପ୍ରତିଶ୍ରୁତି ଆଜି ବାସ୍ତବ ରୂପନେଇ ଆମ ଆଗରେ ଉପସ୍ଥିତ । ପ୍ରାକ୍ତନ ଛାତ୍ର ସଙ୍ଗଠନର ଉଦ୍ୟମ ଫଳରେ ଆଜି ଫକୀରମୋହନ କଲେଜରେ ବହୁ ଅଟ୍ଟାଳିକା ନିର୍ମିତ ହୋଇପାରିଛି । ସେଥିପାଇଁ କେତେ ବାଧାବିଘ୍ନକୁ ସାମ୍ନା କରିବାକୁ ହୋଇଛି । ତଥାପି ସେମାନେ ଅବିଚଳିତ ।

କେବେ କେମିତି ଏକ ନିରୋଳା ମୁହୂର୍ତ୍ତରେ ଏସବୁ ନିର୍ମାଣ ଗୁଡ଼ିକୁ ଦେଖିଲେ ସେହି ଅଫେରା ଦିନର କେତେ ଅଭୁଲା ସ୍ମୃତିରେ ଆନ୍ଦୋଳିତ ହୁଏ ହୃଦୟ, ଦୁଃଖସୁଖର ମିଶ୍ରରାଗ ଆଖିରୁ ଝରାଇ ଦିଏ ଲୁହ ।''

• ବରିଷ୍ଠ ଅଧ୍ୟାପକ
ଓଡ଼ିଆ ଭାଷା ଓ ସାହିତ୍ୟ ବିଭାଗ,
ନୀଳମଣି ମହାବିଦ୍ୟାଳୟ,
ରୂପ୍‌ସା, ବାଲେଶ୍ୱର

# ଅଭୁଲା ସ୍ମୃତିରୁ କିଛି

## ସୁଦର୍ଶନ ନାୟକ

୧୯୪୪ ମସିହା ଜାନୟାରୀ ମାସ । ବାଲେଶ୍ୱର ଜିଲ୍ଲା ସ୍କୁଲରେ ୪ର୍ଥ ଶ୍ରେଣୀରେ ନାମ ଲେଖାଇବା ପାଇଁ ପ୍ରବଳ ଭିଡ଼ । କାରଣ ଏହି ସ୍କୁଲଟି ଥିଲା ଜିଲ୍ଲାର ଏକମାତ୍ର ସରକାରୀ ସ୍କୁଲ । ବାଲେଶ୍ୱର ସହରରେ ଆଉ ଗୋଟିଏ ବେସରକାରୀ ଉଚ୍ଚ ଇଂରାଜୀ ବିଦ୍ୟାଳୟ ଥିଲା, ଆଉ ଦୁଇଟି ବେସରକାରୀ ମ.ଇ ସ୍କୁଲ ଥିଲା, ଯାହାକି କେବଳ ପୁଅ ପିଲାଙ୍କ ନିମିତ୍ତ ଉଦ୍ଦିଷ୍ଟ ଥିଲା । ସେଗୁଡ଼ିକ ହେଲା -ଖ୍ରୀଷ୍ଟିଆନ୍ ବାଳକ ହାଇ ସ୍କୁଲ, ଭିକ୍ଟୋରିଆ ଜୁବୁଲି ମଇ. ଓ ହାଜିନାସିରୁଦ୍ଦିନ ମ.ଇ. ସ୍କୁଲ । ଏହା ବ୍ୟତୀତ ଖ୍ରୀଷ୍ଟିଆନ୍ ମିଶନ ଦ୍ୱାରା ପରିଚାଳିତ ମିଶନ ବାଳିକା ବିଦ୍ୟାଳୟ ଓ ସରକାରଙ୍କ ଦ୍ୱାରା ପରିଚାଳିତ ସରକାରୀ ବାଳିକା ମ.ଇ.ବିଦ୍ୟାଳୟ ଝିଅ ପିଲାଙ୍କ ପାଇଁ ଉଦ୍ଦିଷ୍ଟ ଥିଲା । ମାତ୍ର ସେସବୁ ସ୍କୁଲ ମଧ୍ୟରେ ଜିଲ୍ଲା ସ୍କୁଲ କଥା ନିଆରା । ଲିଖିତ ଓ ମୌଖିକ ପରୀକ୍ଷାରେ ସଫଳତା ହାସଲ କରି ୪ର୍ଥ ଶ୍ରେଣୀରେ ନାମ ଲେଖାଇବାର ସୁଯୋଗ ପାଇଲି ।

ସେତେବେଳେ ଶିକ୍ଷାବର୍ଷ ଜାନୁୟାରୀ ମାସରୁ ଆରମ୍ଭ ହୋଇ ଡିସେମ୍ବର ମାସରେ ଶେଷ ହେଉଥାଏ । ମାତ୍ର କେଇଟା ଦିନପରେ ଜାଣିଲି ଯେ, ଛଅ ମାସ ପରେ ବାର୍ଷିକ ପରୀକ୍ଷା ହେବ ଓ ଆମ୍ଭେମାନେ ପଞ୍ଚମ ଶ୍ରେଣୀକୁ ଉତ୍ତୀର୍ଣ୍ଣ ହେବୁ । ବାଃ, ବେଶ ମଜା ତ । ଗୋଟିଏ ବର୍ଷରେ ଦୁଇଟି ଶ୍ରେଣୀ । କାରଣ ଜାଣିବାକୁ ମନରେ କୌତୁହଳ ହେଲା । ଅନୁସନ୍ଧାନରୁ ଜାଣିଲି ଯେ,ଏଠାରେ ଗୋଟିଏ କଲେଜ ହେବ । ସେ ପୁଣି କ'ଣ ? ସେ ନାଆଁ ଆଗରୁ ତ କେବେ ଶୁଣି ନଥିଲୁ ।

ସେ ବର୍ଷ ଜୁଲାଇ ମାସରେ ବଡ଼ବଡ଼ ପିଲାମାନେ ଆସି ଆମ ସ୍କୁଲରେ ପଢ଼ିଲେ । ଆମର ସ୍କୁଲ ସମୟ ସକାଳ ୧୦ଟା ୩୦ମି.ରୁ ଆରମ୍ଭ ନହୋଇ ୧୧ଟା ୨୦ମି.ରୁ ଆରମ୍ଭ ହେଲା ଓ ସକାଳ ୭ ଘଣ୍ଟା ଠାରୁ କଲେଜ ପାଠଦାନ ସେଇ ଆମ ଶ୍ରେଣୀ କୋଠରୀମାନଙ୍କରେ ଚାଲିଲା । ସକାଳ ୧୧ଟା ୨୦ମି. ବେଳକୁ ଆମେ ଆସି ଯେ ଯାହାର ଶ୍ରେଣୀ କୋଠରୀ ଆଗରେ ହାଜର । କଲେଜ କ୍ଲାସ ସରିଲେ ଆମେ ପଶିଲୁ ଆମ ଶ୍ରେଣୀରେ । ସେତେବେଳେ ଯାଏ ସେ କଠୋରୀ କଲେଜର ।

କଲେଜ ପାଠ, ସ୍କୁଲ ପାଠ ଠାରୁ ବହୁତ ବେଶି ବୋଲି ଆମେ ଶୁଣୁଥାଉ । ଆମେ ଗାଦିଏ ଖାତା ବହି ଧରି ସ୍କୁଲକୁ ଆସୁଛୁ । ମାତ୍ର କଲେଜ ପିଲାମାନେ ଖଣ୍ଡିଏ ଖାତା ବା ବହି, କେହି ଖାତାସହ ବହି ଖଣ୍ଡିଏ ଧରି ଆସିଥାନ୍ତି । ତେବେ ଏମାନଙ୍କ ପାଠ ବହୁତ ବେଶି ବୋଲି କିପରି କହୁଛନ୍ତି !

ବୁଝିବାର ସମୟ ଆସିଲା । ୧୯୫୧ ମସିହାରେ ମ୍ୟାଟ୍ରିକ୍ ପରୀକ୍ଷାରେ ପାଶ୍ କରିବା ପରେ ଫକୀରମୋହନ କଲେଜରେ ନାମ ଲେଖାଇବାର ସୁଯୋଗ ମିଳିଲା ।ତା ସହିତ ସୁଯୋଗ ମିଳିଲା, କଲେଜ ପାଠର ବ୍ୟାପକତା ବୁଝିବାକୁ । ଅଧ୍ୟକ୍ଷ ଥା'ନ୍ତି ମି. ପି.ଏସ.ସୁନ୍ଦରମ୍ । ଅତି ସୁନ୍ଦର ଲୋକ । ଇତିହାସ ପ୍ରଥମ କ୍ଲାସରେ ଡଃ ମନ୍ମଥ ଦାସ (ସେତେବେଳକୁ doctorate କରି ନଥାନ୍ତି) ଆମ୍ଭମାନଙ୍କୁ ଚେତାବନୀ ଦେଲେ ଓ କହିଲେ, "So far you were school boys. now you are college students" 'Boys'ଏବଂ 'Students'ର ତାତ୍ପର୍ଯ୍ୟ ମଧ୍ୟ ବୁଝାଇ ଦେଇଥିଲେ । ଆଜି ଯାଏ ସେ କଥା ମନେ ଅଛି । ଇଂରାଜୀ ଅଧ୍ୟାପକ ମି. କେ.ସି.ଦେବ । କଲେଜ ଲାଇବ୍ରେରୀରୁ ୨ଖଣ୍ଡ ଓଡ଼ିଆ ଉପନ୍ୟାସ ଧରି ବାହାରି ଆସୁଥିବା ବେଳେ ଦ୍ୱାର ପାଖରେ ତାଙ୍କ ସହ ଦେଖା ହେଲା । ପଚାରିଲେ "କି ବହି ନିଲେ ?" ଥତମତ ହୋଇ ବହି ୨ଖଣ୍ଡ ତାଙ୍କୁ ଦେଖାଇଲି । 'ଓଡ଼ିଆ ମାତୃଭାଷା', ସେ ଭାଷାର ବହି ଯେ କୌଣସି ସମୟରେ

ପଢ଼ିହେବ । ମାତ୍ର କଲେଜରେ ଆର୍ଟସ ନେଇ ପଢୁଥିବା ଛାତ୍ର ପାଇଁ ଇଂରାଜୀ ଭାଷାରେ ଗଭୀର ନିବେଶ ଦରକାର ।'' ଉପଦେଶ ଦେଲେ ସେ ମହାଶୟ, ଲାଇବ୍ରେରୀ ମଧ୍ୟକୁ ଡାକିନେଇ କେଟ୍‌ଲଗ୍‌ର ବ୍ୟବହାର ଶିଖାଇଲେ । ଭଲ ଇଂରାଜୀ ଲେଖକଙ୍କ ନାମ ଖଣ୍ଡିଏ କାଗଜରେ ଲେଖିଦେଲେ । ସେମାନଙ୍କ ରଚିତ ଉପନ୍ୟାସ ପଢ଼ିବା ପାଇଁ ଏବଂ କହିଲେ ସେମାନଙ୍କର ଭଲଭଲ ବାକ୍ୟକୁ ମୁଖସ୍ଥ କରି ଲେଖାରେ ବ୍ୟବହାର କରିବା ପାଇଁ । ଇଂରାଜୀ ଭାଷାପ୍ରତି ମମତା ବଢ଼ିଲା । ଜୀବନରେ ସେଇ ଶିକ୍ଷକଙ୍କ ଉପଦେଶ ପାଳନ କରି ମୁଁ କୌଣସି ପରୀକ୍ଷାରେ ଇଂରାଜୀରେ ଅକୃତକାର୍ଯ୍ୟ ହୋଇନାହିଁ ।

ଶାରୀରିକ ଅସୁସ୍ଥତା ଯୋଗୁଁ ସେ ବର୍ଷ ମୋତେ ପ୍ରଥମ ବର୍ଷର ମଧ୍ୟଭାଗରୁ କଲେଜ ଛାଡ଼ିବାକୁ ହେଲା । କଲେଜରେ ପଢ଼ିବାର ନିଶା । ପୁଣି ୧୯୫୨ରେ ଯୋଗଦେଲି । ୧୯୫୪ରେ ଆଇ.ଏ. ପାଶ୍ କଲି । ବି.ଏ.ରେ ନାମ ଲେଖାଇଲି ଇତିହାସରେ 'ସମ୍ମାନ' (Honours) ରଖି । ୧୯୫୬ ମସିହାରେ ବି.ଏ. ଫେଲ୍ ହୋଇ ତା ପରବର୍ଷ ଇତିହାସରେ 'ସମ୍ମାନ'ର ସହ ପାଶ୍‌କଲି । ଫକୀରମୋହନ ଛାଡ଼ିଲି ୧୯୫୭ ମସିହାରେ ।

୧୯୫୨ଠାରୁ ୧୯୫୬ । ଏଇ ଚାରିବର୍ଷ କଲେଜରେ ବହୁ ଘଟଣା ବହୁଳ ଜୀବନ । ପ୍ରଥମ ବର୍ଷଠାରୁ ୪ର୍ଥ ବର୍ଷ ଯାଏଁ ସବୁ ବର୍ଷ ମୁଁ ଛାତ୍ର ସଂସଦକୁ ଛାତ୍ର ପ୍ରତିନିଧି ଭାବେ ନିର୍ବାଚିତ ହେଉଥିଲି । ଶେଷ ବର୍ଷ ୧୯୫୫-୫୬ରେ ଛାତ୍ର ସଂସଦର ସଭାପତି ପଦପାଇଁ ମୋତେ ବାଧ୍ୟ କରାଗଲା । ମୁଁ ଥିଲି Students Unionର ସମର୍ଥକ । ପ୍ରତିଦ୍ୱନ୍ଦିତା କରି ସଭାପତି ଭାବେ ନିର୍ବାଚିତ ହେଲି ମଧ୍ୟ ।

ଛାତ୍ର ସଂସଦ ଆନୁକୂଲ୍ୟରେ ପ୍ରତିବର୍ଷ କେତେ ଗୁଡ଼ିଏ କାର୍ଯ୍ୟକ୍ରମ ହେଉଥିଲା । ୧୫ ଅଗଷ୍ଟରେ, ସ୍ୱାଧୀନତା ଦିବସ, ୨୬ ଜାନୁଆରୀ ପାଳନ, ନାଟକ, କ୍ରୀଡ଼ା ପ୍ରତିଯୋଗିତା, ସାତଦିନ ବ୍ୟାପୀ ସାଂସ୍କୃତିକ ସପ୍ତାହ ଇତ୍ୟାଦି ସେଥି ମଧ୍ୟରୁ ପ୍ରଧାନ । ବହୁ ଗଣ୍ୟମାନ୍ୟ ବିଦ୍ୱାନ୍ ବ୍ୟକ୍ତି ରାଜ୍ୟ ମଧ୍ୟରୁ ଓ ରାଜ୍ୟ ବାହାରୁ ନିମନ୍ତ୍ରିତ ହୋଇ ଏଇ ସାଂସ୍କୃତିକ ସପ୍ତାହ କାର୍ଯ୍ୟକ୍ରମରେ ଯୋଗଦେଇ ପିଲାମାନଙ୍କୁ ତଥା ସହରର ଶିକ୍ଷିତ ସମାଜକୁ ସେମାନଙ୍କର ମୂଲ୍ୟବାନ ଭାଷଣ ଶୁଣାଉ ଥିଲେ ।

୧୯୫୫ ମସିହା ସେପ୍‌ଟେମ୍ବର ମାସ । କଟକ ଜିଲ୍ଲା ଦଳେଇଘାଇ ଭାଙ୍ଗିଲା । ଆଳି ଓ କନିକା ଅଞ୍ଚଳ ବନ୍ୟାଗ୍ରସ୍ତ ହେଲା । କଲେଜରୁ ଆମେ ୧୫ ଜଣ ଛାତ୍ର କିଛି ଚୂଡ଼ା, ଚାଉଳ, କିରୋସିନୀ, ଲୁଗା ଆଦି ଧରି ଚାଲିଲୁ ବନ୍ୟାଗ୍ରସ୍ଥ ଅଞ୍ଚଳରେ ରିଲିଫ ବାଣ୍ଟିବା ପାଇଁ । ସେ ଏକ ଅନନ୍ୟ ଅନୁଭୂତି । କନିକାକୁ State ବା Estate ମର୍ଯ୍ୟଦା ଦିଆଯିବ । ସେ ନେଇ ବାଦାନୁବାଦ ଚାଲିଥାଏ । କନିକାରେ ପହଞ୍ଚିବା ପରେ ହାଇସ୍କୁଲରେ ରହିଲୁ । ରାଜାଙ୍କ ତରଫରୁ ମେନେଜର ଓ ସରକାରଙ୍କ ତରଫରୁ ତହସିଲଦାର ଆମକୁ ଦେଖା କଲେ । ଉଭୟେ ଆମ୍ଭମାନଙ୍କ ପାଇଁ ଡଙ୍ଗାର ବ୍ୟବସ୍ଥା କରିଦେଲେ । ରାଜନଗର ଯାଏ ନଦୀରେ ଗଲୁ । ଚାରିଆଡ଼େ ପାଣି । ଡଙ୍ଗାରେ ରନ୍ଧା ଓ ପଠାରେ ଖିଆ, ନଡ଼ିଆ ଗଛରୁ ଡାବ (ପଇଡ଼) ତୋଳି ପିଇବା ପାଣି ଯୋଗାଡ଼ । ଯୁଆଡ଼େ ଚାହିଁଲେ ନଡ଼ିଆ ଗଛ, ହାତ ପାହାନ୍ତାରେ ପଇଡ଼ । କି ମଜା ।

ବ୍ରାହ୍ମଣୀ, ବୈତରଣୀ ଓ ଖରସ୍ରୋତାର ମିଳନ ପରେ ନଦୀର ଓସାର ଆଖି ପାଉ ନଥାଏ । ତାପରେ ପୁଣି ବନ୍ୟାଜଳ । ଭୟ ମଧ୍ୟ ଲାଗୁଥାଏ । ଦିନ ଦ୍ୱିପ୍ରହର ସମୟ । ହଠାତ୍ କଳାହାଣ୍ଡିଆ ମେଘ ମାଡ଼ି ଆସିଲା । ପବନର ଗତି ମଧ୍ୟ ହଠାତ୍ ଖୁବ୍ ବଢ଼ିଗଲା । ଆମ ଡଙ୍ଗା ସେତେବେଳେ ତିନି ନଦୀର ସଂଗମ ସ୍ଥଳିର ମଝାମଝିରେ । କୂଳକୁ ଲଗାଇବାକୁ ନାଉରୀ ସାହସ କରୁନଥାନ୍ତି । ବନ୍ୟଯୋଗୁଁ ବିଷାକ୍ତ ସାପ ସବୁ କୂଳରେ ଥିବା ଗଛ ଡାଳ ବା ଗାତମାନଙ୍କରେ ଆଶ୍ରୟ ନେଇଥାନ୍ତି । ପୁଣି କୂଳକୁ ଲଗାଇଲେ ଗାଁ ଲୋକେ ସବୁ ରିଲିଫ୍ ସରଞ୍ଜାମ ତାଙ୍କ ଗାଁ ଲୋକଙ୍କୁ ଦେବାକୁ ବାଧ୍ୟ କରୁଥାନ୍ତି । ନହେଲେ ଢେଲା ଫୋପାଡ଼ି ମାରୁଥାନ୍ତି । ଡଙ୍ଗା ସମ୍ଭାଳିବାକୁ ମୁସ୍କିଲ ହେବାରୁ ନାଉରୀମାନେ ଠାକୁରଙ୍କୁ ଡାକିଲେ । ଆମ୍ଭେମାନେ ଲୁଗାପଟା ଭିଡ଼ି ଡଙ୍ଗା ଓଲଟିଲେ ପହଁରିବା ଲାଗି ପ୍ରସ୍ତୁତ ହୋଇ ବସି ରହିଲୁ । ଯାହାହେଉ,

ନାଉରୀମାନେ ମଝି ନଈରୁ ଡଙ୍ଗା କୂଳକୁ ଲଗାଇ ଅପେକ୍ଷା କରି ବସି ରହିଲେ । ଘଣ୍ଟେ ଦୁଇଘଣ୍ଟା ପରେ ମେଘ ପବନ କମିଲା ଓ ଆମେ ଗନ୍ତବ୍ୟ ସ୍ଥଳକୁ ଫେରିଲୁ । ପ୍ରାୟ ଏକ ସପ୍ତାହ ପରେ ଆମେ ବାଲେଶ୍ୱର ଫେରିଲୁ ।

ପାଟନାର ଛାତ୍ରମାନେ କୌଣସି କାରଣରୁ ଜାତୀୟ ପତାକାକୁ ପୋଡ଼ିଦେଲେ । ସେଠାରେ ଛାତ୍ରମାନେଙ୍କର ଷ୍ଟ୍ରାଇକ୍ ଚାଲୁଥାଏ । ଆମ କଲେଜର ଦଳେ ଛାତ୍ର ଏଠାରେ ପ୍ରତୀକ ଭାବେ ଷ୍ଟ୍ରାଇକ୍ କରିବା ପାଇଁ ମୋତେ ବାଧ୍ୟକଲେ । କଲେଜ ଟେନିସ୍ ଫିଲ୍ଡରେ ସଭା ଡକାଗଲା । ବହୁ ତର୍କ ବିତର୍କ ହେଲା । ଜାତୀୟ ପତାକାକୁ ଅବମାନନା କରିଥିବା ଛାତ୍ରମାନଙ୍କ ପାଇଁ ମୋର ଦରଦ ନାହିଁ ବୋଲି ପ୍ରକାଶ କଲି । କେତେକ ମୋତେ Coward ବୋଲି କହିଲେ । ମୁଁ ସଭାପତି ପଦରୁ ଇସ୍ତଫା ଦେଇ ଟେବୁଲ ଉପରେ ରଖିଦେଲି ଏବଂ ସଭାସ୍ଥଳ ଛାଡ଼ି ଚାଲିଆସିଲି । ସେଇ ପିଲାମାନେ ପୁଣି ଆସି ମୋତେ ଅନୁରୋଧ କଲେ ଇସ୍ତଫା ପତ୍ର ଫେରାଇ ନେବାପାଇଁ । ମୋର ଯୁକ୍ତିକୁ ସମସ୍ତେ ସ୍ୱୀକାର କଲେ ।

ଭାଷା ସୂତ୍ରେ ପ୍ରଦେଶ ଗଠନ ପାଇଁ କେନ୍ଦ୍ର ସରକାର ରାଜ୍ୟ ପୁର୍ନଗଠନ କମିଶନ ବସାଇଲେ । ରିପୋର୍ଟ ପ୍ରକାଶ ପାଇଲା ୧୯୫୫ ମସିହା ଅକ୍ଟୋବର ମାସରେ । ପୂର୍ବରୁ ଷଢ଼େଇକଳା ଓ ଖରସୁଆଁ ଦୁଇଟି ଗଡ଼ଜାତ ରାଜ୍ୟକୁ ଅସ୍ଥାୟୀ ଭାବେ ବିହାର ସହ ରଖା ଯାଇଥିଲା । କାରଣ ସମସ୍ତ ଗଡ଼ଜାତ ରାଜ୍ୟ ଓଡ଼ିଶା ପ୍ରଦେଶରେ ମିଶିବା ପାଇଁ ସର୍ଦ୍ଦାର ପଟେଲଙ୍କଠାରେ ସ୍ୱୀକୃତି ପତ୍ରରେ ସ୍ୱାକ୍ଷର କରିନେଲେ, କେବଳ ମୟୂରଭଞ୍ଜ ମହାରାଜାଙ୍କୁ ଛାଡ଼ି । ମୟୂରଭଞ୍ଜ ମହରାଜ ନିଜ ରାଜ୍ୟର ପ୍ରତିନିଧି ଶାସନର ଆଳ ଦେଖାଇ ସ୍ୱୀକୃତି ପତ୍ରରେ ସ୍ୱାକ୍ଷର କଲେନାହିଁ । ଓଡ଼ିଶା ପ୍ରଦେଶ ସହ ମୟୂରଭଞ୍ଜ ନ ମିଶିବାରୁ ଷଢ଼େଇକଳା ଓ ଖରସୁଆଁ ସହ ଓଡ଼ିଶାର ଏକମାତ୍ର ଯୋଗାଯୋଗ ପଥ ବିଚ୍ଛିନ୍ନ ହୋଇଗଲା । ବିହାରୀମାନେ ଚକ୍ରାନ୍ତ କରି ସେ ଦୁଇଟି ଗଡ଼ଜାତ ରାଜ୍ୟ ବିହାର ସହ ସ୍ଥାୟୀଭାବେ ମିଶାଇନେଲେ । ସେଥିପାଇଁ ଆନ୍ଦୋଳନ ଆରମ୍ଭ ହେଲା । କିନ୍ତୁ ଭାଗ୍ୟର ବିଡ଼ମ୍ବନା, ଠିକ ଗୋଟିଏ ବର୍ଷ ପରେ ମୟୂରଭଞ୍ଜ ଓଡ଼ିଶାରେ ପ୍ରଦେଶରେ ମିଶିଲା । ସେତେବେଳକୁ ଆମେ ଷଢ଼େଇକଳା ଓ ଖରସୁଆଁ ରାଜ୍ୟ ଦୁଇଟି ହରାଇ ସାରିଥିଲୁ । ଓଡ଼ିଶାର ଦୁର୍ବଳ ନେତୃତ୍ୱ ମଧ୍ୟ ଏଥିପାଇଁ ବହୁଳ ଭାବରେ ଦାୟୀ ।

ଏସ.ଆର୍.ସି. ରିପୋର୍ଟ ପ୍ରକାଶ ପାଇବା ପରେ ଛାତ୍ର ଆନ୍ଦୋଳନ କରାଯାଇଥିଲା ଜନସାଧାରଣଙ୍କ ପୂର୍ଣ୍ଣ ସହଯୋଗରେ । ତତ୍କାଳୀନ ବିଧାୟକ ସର୍ଦ୍ଦାର ସୁରେନ୍ଦ୍ର ନାଥ ଦାସ, କରୁଣାକର ପାଣିଗ୍ରାହୀ ଆଦି ଆମକୁ ଆଶ୍ୱାସନା ଦେଇ କହିଲେ, କେନ୍ଦ୍ର ସରକାରଙ୍କ ଅନୁମୋଦନ ଓ ରାଷ୍ଟ୍ରପତିଙ୍କ ସ୍ୱୀକୃତି ପାଇବା ପରେ ରିପୋର୍ଟ କାର୍ଯ୍ୟକାରୀ ହେବ ଏବଂ ଏକଥା ମଧ୍ୟ କହିଲେ ଯେ ଓଡ଼ିଶା ସରକାର ଏ ପକ୍ଷପାତ ରିପୋର୍ଟ ବିରୁଦ୍ଧରେ କେନ୍ଦ୍ର ସରକାରଙ୍କ ଠାରେ ପ୍ରତିବାଦ ଜଣାଇବେ । ଆମେ ଆନ୍ଦୋଳନରୁ ଓହରି ଆସିଲୁ । ମାତ୍ର ୧୯୫୫ ମସିହା ଡିସେମ୍ବର ମାସରେ ଉକ୍ତ ରିପୋର୍ଟ ଭାରତର ରାଷ୍ଟ୍ରପତିଙ୍କ ସ୍ୱୀକୃତି ଲାଭ କଲା ଓ ଆମ ଷଢ଼େଇକଳ ଓ ଖରସୁଆଁ ହରାଇଲୁ । ଏ ଦୁଇଟି ଓଡ଼ିଆ ଗଡ଼ଜାତର ସଂଖ୍ୟାଧିକ ଓଡ଼ିଆ ଭାଷାଭାଷୀର ଲୋକଙ୍କୁ ନେଇ ସ୍ୱଳ୍ପ ସଂଖ୍ୟକ ହିନ୍ଦୀ ଭାଷୀ ବିହାରୀଙ୍କ ତଳେ ସଂଖ୍ୟା ଲଘୁ ଭାଷାଭାଷୀ ଲୋକଂକରି ରଖି ଦିଆଗଲା । ଆରମ୍ଭ ହେଲା ଦ୍ୱିତୀୟ ପର୍ଯ୍ୟାୟ ଆନ୍ଦୋଳନ ୧୯୫୬ ମସିହା ଜାନୁୟାରୀ ମାସରେ ।

ଏ ଆନ୍ଦୋଳନ ଜନ ଆନ୍ଦୋଳନ ଅପେକ୍ଷା ଛାତ୍ର ଆନ୍ଦୋଳନ ବେଶିଥିଲା । ଅବଶ୍ୟ ଜନ ସହଯୋଗ ଥିଲା ପୂର୍ଣ୍ଣମାତ୍ରାରେ । ୧୧ ବା ୧୨ ତାରିଖ ଜାନୁୟାରୀ ଠାରୁ ଆନ୍ଦୋଳନ ଚାଲିଲା ସାରା ଓଡ଼ିଶାରେ । ୧୬ କିମ୍ବା ୧୭ ତାରିଖରେ ପୁରୀ ରେଳ ଷ୍ଟେସନରେ ଆନ୍ଦୋଳନରତ ଛାତ୍ର ବେଙ୍ଗ ପଣିଆ ଓ ସୁନିଲ ଦେ ପୁଲିସ୍ ଗୁଳିରେ ପ୍ରାଣ ଦେଲେ । ସେତେବେଳେ ଆନ୍ଦୋଳନ ଆହୁରି ତୀବ୍ରତର ହେଲା । ତା ୧୯.୧.୫୬ ରିଖ ଦିନ ଆମେ କଚେରୀ ଘେରାଉ କଲୁ । କଲେକଟର ଥା'ନ୍ତି ବି.ସି. ମାଥୁର ଓ

ଏ.ଡି.ଏମ୍ ଥାନ୍ତି ଦୁର୍ଗା ପ୍ରସାଦ ତ୍ରିପାଠୀ । ବାଲେଶ୍ୱର କଚେରୀ ରାସ୍ତା ଓ ଝାଡ଼େଶ୍ୱର ମନ୍ଦିର ରାସ୍ତାର ଛକରେ ଛାତ୍ରମାନଙ୍କର ସମାବେଶ ହୋଇଥାଏ । ଦଶଫୁଟ ବ୍ୟବଧାନରେ ଓଡ଼ିଶା ମିଲିଟାରୀ ପୋଲିସ କାନ୍ଧରେ ରାଇଫଲ୍ ରଖି ନିଲିଙ୍ଗ୍ ପୋଜିସନରେ ଫାୟାରିଂ ଅର୍ଡର ପାଇଁ ଅପେକ୍ଷା କରିଥାନ୍ତି ।

ଓ.ଏମ୍.ପି. ଓ ପିଲାଙ୍କ ମଧ୍ୟରେ ମୁଁ ଏକୁଟିଆ । ପିଲାମାନେ ସଂଘବଦ୍ଧ ଭାବବେ ଆଗେଇବାକୁ ଚାହୁଁଥାନ୍ତି । ମୁଁ ସେମାନଙ୍କୁ ଆଗେଇବାକୁ ଛାଡୁ ନଥାଏଁ । ଗୁଳି ନିଶ୍ଚିତ ହେବ ଓ ମୋର ବଂଧୁମାନେ ଆହତ ହେବେ -ମରି ଯାଇପାରନ୍ତି ମଧ୍ୟ । ବାରମ୍ବାର ସରକାରୀ ମାଇକରୁ ସମାବେଶ ଭାଙ୍ଗିବା ପାଇଁ ଏବଂ ଆଗକୁ ନଯିବା ପାଇଁ ଆଦେଶ ଦିଆଯାଉଥାଏ । ଅନ୍ୟ ଉପାୟ ନ ପାଇ ସରକାର ୧୪୪ ଧାରା ଜାରି କଲେ । ଆମେ ୪ ଜଣିଆ ଦଳ ଗଠନ କରି ଠିଆହେଲୁ । ସେହି ସମୟରେ ପ୍ୟାରୀମୋହନ ଦାସ ୧୪୪ ଧାରା ଭଙ୍ଗକରି ମାଇକ୍‌ରେ ସ୍ଲୋଗାନ ଦେଲେ । ମୁଁ ସେଠାକୁ ଦଉଡ଼ି ଗଲି । ଆମ ମାଇକ ସରକାର ଛଡ଼ାଇ ନେଲେ । ପ୍ୟାରୀବାବୁଙ୍କୁ ଓ ମୋତେ ଗିରଫ କରି ଜେଲକୁ ପଠାଇ ଦେଲେ । ଦିନ ୧୦ଟା ଠାରୁ ସରକାରୀ କଳ ମୋତେ ଗିରଫ କରିବାକୁ ଚେଷ୍ଟା କରି ଦିନ ଗୋଟାଏ ବେଳେ ସଫଳ ହେଲେ ।

ତା ୧୮.୧.୫୬ରିଖ ଦିନ ବାଲେଶ୍ୱର ଷ୍ଟେସନଠାରେ କିଛି ପିଲା ଗିରଫ ହୋଇଥିଲେ । ଭଦ୍ରକ କଲେଜ ଛାତ୍ର ସଂସଦର ସଭାପତି ଶ୍ରୀ ଦଶରଥ ସାମଲଙ୍କ ଅନୁରୋଧ କ୍ରମେ ମୁଁ ସେତେବେଳେ ଭଦ୍ରକ ଯାଇଥିଲି । ଭଦ୍ରକ ପୋଲିସ୍ କେତେକ ପିଲାଙ୍କୁ ଗରିଫ କରି ଜେଲକୁ ନେଉଥିବାବେଳେ, ଜନସାଧାରଣ ଓ ଛାତ୍ରମାନେ ଜୋରକରି ପୋଲିସ ଭ୍ୟାନ୍‌ରୁ ଛାତ୍ରମାନଙ୍କୁ ଉଦ୍ଧାର କରିଥିଲେ । ଆମେ ବାଲେଶ୍ୱରରେ ଅହିଂସା ଆନ୍ଦୋଳନ କରୁଥିଲୁଁ । କଲେକ୍‌ଟର ସେଥିପାଇଁ ମୋତେ ତାଙ୍କ ଗାଡ଼ିରେ ଭଦ୍ରକ ନେଇ ଯାଇଥିଲେ ସେଠାକାର ଛାତ୍ରମାନଙ୍କୁ ବୁଝାଇବା ନିମନ୍ତେ । ସେଇ ଗାଡ଼ିରେ ଫେରିବାର ଥିଲା । ମାତ୍ର ସେ ମୋତେ ସେଠାରେ ଛାଡ଼ି ତୁରନ୍ତ ବାଲେଶ୍ୱର ଚାଲି ଆସିଲେ ଓ ମୁଁ ରହିଗଲି ଭଦ୍ରକରେ । ଆସିବାର ଉପାୟ ନାହିଁ ବାଲେଶ୍ୱରକୁ । ରେଳଗାଡ଼ି ଓ ବସ ବନ୍ଦ । ପ୍ରାଇଭେଟ ଗାଡ଼ିମାନଙ୍କୁ ପେଟ୍ରୋଲ ବିକ୍ରି ମଧ୍ୟ ବନ୍ଦ । ବହୁ ଅନୁରୋଧ ପରେ ଚରମ୍ପାର ଜଣେ ରାଇସ ମିଲ ମାଲିକ ରାତି ୨ଟାରେ ତାଙ୍କ ଟ୍ରକରେ ଆଣି ମୋତେ କୁରୁଡ଼ାଠାରେ ଓହ୍ଲାଇ ଦେଇ ଫେରିଗଲେ । ମୁଁ ଚାଲିଚାଲି ହଷ୍ଟେଲରେ ପହଞ୍ଚିଲି । ଶୁଣିଲି, ଅକ୍ଷୟ ପାଣି, କମଳ ଲୋଚନ ନାୟକ ଓ ଆଉ କେଇଜଣ ଛାତ୍ର ଷ୍ଟେସନରେ ଗଣ୍ଡଗୋଳ କରି ସେଇ ସଂଧ୍ୟାରେ ଗିରଫ ହୋଇଛନ୍ତି । ସେମାନେ ଥାନ୍ତି ଜେଲର ତଳ ମହଲାସ୍ଥ ଡର୍ମିଟରୀରେ । ମୋତେ ଏବଂ ପ୍ୟାରୀ ବାବୁଙ୍କୁ ଆଣି ତାରି ଉପର ମହଲା ଡର୍ମିଟରୀରେ ରଖାଗଲା । ପ୍ରାୟ ୨ ଘଣ୍ଟା ପରେ ଆହୁରି ବହୁ ଛାତ୍ର ଗିରଫ ହୋଇ ଆସିଲେ । ସେମାନଙ୍କ ମଧ୍ୟରୁ ଅଧିକାଂଶ ପ୍ରାୟ ଓଦା । ବୁଝିଲି, କେହି ଜଣେ ଏମ୍.ଏଲ୍.ଏଙ୍କ ସୁପାରିଶରେ (ନାମ ଉଲ୍ଲେଖ କରୁନାହିଁ) ଦମକଳରେ କଚେରୀର ପୋଖରୀ ପାଣି ଆନ୍ଦୋଳନରତ ଛାତ୍ରମାନଙ୍କ ଉପରକୁ ଛଡ଼ା ଯାଇଥିଲା । ଉଦ୍ଦେଶ୍ୟ ଭିଡ଼ ଭାଙ୍ଗିବା ପାଇଁ ଓ କେଚରୀ ଆଡ଼କୁ ସେମାନଙ୍କ ଆଗ୍ରଗତିକୁ ବନ୍ଦ କରିବା ପାଇଁ । ଗୋଟିଏ ମଜା କଥା ମନେ ପଡ଼େ । ଏଇ ଆନ୍ଦୋଳନ ସମୟରେ ପ୍ରଶାସନ ଦଳଦଳ ପୁଅଝିଅଙ୍କୁ ପୋଲିସ୍ ଭ୍ୟାନ୍‌ରେ ପୂରାଇ ଚାନ୍ଦିପୁର, କୁରୁଡ଼ା, ରେମୁଣା, ଫୁଲାଡ଼ି ଆଦି ସ୍ଥାନରେ ନେଇ ଛାଡ଼ି ଆସନ୍ତି । ସରକାରୀ ଗାଡ଼ି ପିଲାମାନଙ୍କୁ ନେଇ କୋଉଁଠି ଛାଡ଼ିଲା, ସେ ଖବର ଆମକୁ ଡି.ପି.ଆର.ଓ ମହୋଦୟ ଗୁପ୍ତରେ ଜଣାଇ ଦିଅନ୍ତି । ମୁଁ ଏ ଖବର ସଙ୍ଗେ ସଙ୍ଗେ ଜନସାଧାରଣଙ୍କୁ ଜଣାଇ ଦିଏ । ସେମାନେ ଗାଡ଼ି ପଠାଇ ସେମାନଙ୍କୁ ସେ ସ୍ଥାନରୁ ଘେନି ଆଣନ୍ତି ଏବଂ ସେମାନେ ପୁଣି ଆମ ସହ ଅନ୍ଦୋଳନରେ ଯୋଗ ଦିଅନ୍ତି । ତା ୧୯.୧.୫୬ରିଖ ସଂଧ୍ୟା ସୁଦ୍ଧା ପ୍ରାୟ ୮୦/୮୨ ଜଣ ଛାତ୍ର ସରକାରୀ ଅତିଥିଶାଳାରେ ପହଞ୍ଚି ଯାଇଥିଲେ । ଜନସାଧାରଣଙ୍କ ତରଫରୁ ସଂଧ୍ୟା ପୂର୍ବରୁ ପୁରୀ ଓ ବୁନ୍ଦିଆ ଆମ୍ଭମାନଙ୍କ ପାଇଁ ଜେଲ ଭିତରକୁ ପଠାଗଲା । ରାତିରେ ମୋଟା ମୋଟା ଜେଲ୍ ରୁଟି ଓ ଅବଘରା ଡାଲି ଖାଇବାକୁ

ଦିଆଗଲା । କିଏ ଖାଇଲେ ତି କିଏ ଖାଇଲେ ନାହିଁ । ଜେଲ ସୁପରିନ୍‌ଟେଣ୍ଡେଣ୍ଟଙ୍କ ଅଫିସରେ କେବଳ ଲୁଗାପଟା ଛାଡ଼ି ଅନ୍ୟ ସମସ୍ତ ଜିନିଷ ଆମ୍ଭମାନଙ୍କଠାରୁ କାଢ଼ି ନେଇଥିଲେ । ଯଥା-ଘଣ୍ଟା, ପଇସା, ଚାବି ଇତ୍ୟାଦି । ଜଣକା ଖଣ୍ଡେ ଖଣ୍ଡେ କମ୍ବଳ ମିଳିଲା । କୌଣସି ମତେ ରାତି କଟିଲା । ସକାଳେ ଜେଲ୍ ସୁପରିନ୍‌ଟେଣ୍ଡେଣ୍ଟ୍ ଶ୍ରୀ ଯୁଧିଷ୍ଠିର ମହାନ୍ତି ମୋତେ ଡକାଇ ପଠାଇଲେ । ସାଧାରଣ ଜନତାଙ୍କ ତରଫରୁ ଜଳଖିଆ ଆସିଥାଏ ଆମ ପିଲାମାନଙ୍କ ପାଇଁ । କେତେଜଣ ଓକିଲ ମଧ୍ୟ ସେମାନଙ୍କ ସାଙ୍ଗରେ ଥା'ନ୍ତି - କାଳେ ଆମର କିଛି ଆଇନଗତ ପରାମର୍ଶ ଆବଶ୍ୟକ ପଡ଼ିପାରେ । ଜଳଖିଆ ଟୋକେଇ ଦେଇ ସେମାନେ ଗଲେ ଓ ପୁଣି ୧୦ଟା ସୁଦ୍ଧା ଦ୍ୱିପ୍ରହର ଭୋଜନ ପଠାଇବା ପାଇଁ ପ୍ରତିଶ୍ରୁତି ମଧ୍ୟ ଦେଇଗଲେ । ଏକବସ୍ତ୍ର ହୋଇ ସମସ୍ତେ ରହିଥାଉଁ । ପ୍ରାୟ ସମସ୍ତଙ୍କ ଘରୁ କିଛି କିଛି ଅଧିକ ଲୁଗାପଟା ଓ ନିତ୍ୟ ବ୍ୟବହାର୍ଯ୍ୟ ପଦାର୍ଥ ଆସିଲା । ଆମେ ଖାଇପିଇ ବେଶ୍ ରହିଲୁ ଜେଲ୍ ମଧ୍ୟରେ । ଜେଲ ଅନ୍ତେବାସୀମାନେ ଆମ ପାଇଁ ରନ୍ଧାରନ୍ଧି କରି ଦିଅନ୍ତି । ଆମେ ତାଙ୍କୁ ଆମ ସହ ଖାଇବାକୁ କହୁଁ । ସେମାନେ ଏପରି ଖାଦ୍ୟ ଜେଲ ଭିତରେ ବା ପାଆନ୍ତେ କୁଆଡ଼ୁ ? ତେଣୁ ଆମ୍ଭମାନଙ୍କର ସେମାନେ ଅତ୍ୟନ୍ତ ବିଶ୍ୱସ୍ତ ହୋଇଥାନ୍ତି ।

ତଳ ମହଲାରେ ଥିବା ପିଲାମାନେ କ'ଣ ଗୋଟିଏ ଗଣ୍ଡଗୋଳ କଲେ । ସେମାନଙ୍କ ମଧ୍ୟରୁ ଅକ୍ଷୟ ପାଣି, କମଳ ଲୋଚନ ନାୟକ ଓ ଆଉ ଜଣେ ପିଲା-ନାମ ମନେ ପଡୁନାହିଁ, ଏ ତିନିଜଣଙ୍କୁ ନୀଳଗିରି ଜେଲକୁ ସ୍ଥାନାନ୍ତର କରି ଦିଆଗଲା । ଆମ୍ଭମାନଙ୍କୁ ମଧ୍ୟରୁ ଅନେକ ପିଲାଙ୍କ ଅଭିଭାବକମାନେ ଆସି ପି.ଆର.ବଣ୍ଡ ଦେଇ ସେମାନଙ୍କ ପିଲାମାନଙ୍କୁ ନେଇଗଲେ । ୮୦/୮୨ ଜଣ ପିଲାଙ୍କ ମଧ୍ୟରୁ ଆମେ ମାତ୍ର ୨୨ଜଣ ରହିଗଲୁ ଶେଷଯାଏ । ବି.ଏ ପରୀକ୍ଷା ଫିସ୍ ଦାଖଲ ସରିଥିଲା । ଆମେ ବଣ୍ଡ ଦେଇ ମୁକ୍ତ ହେବାକୁ ଇଚ୍ଛା ନକରି ରହିଲୁ ଜେଲ୍‌ରେ । ଆମେ କିଛି ବାହାର ଦୁନିଆ କଥା ଜାଣିପାରିଲୁ ନାହିଁ ।

ଜାନୁୟାରୀ ପ୍ରାୟ ୨୮ତାରିଖ ଦିନ କଲେକ୍ଟର ଆମ ପାଖକୁ ଆସିଲେ । ପିଲାମାନେ ତାଙ୍କ ସହ ଖରାପ ବ୍ୟବହାର କରିବାକୁ ଆରମ୍ଭ କଲେ । ମୁଁ ସେମାନଙ୍କୁ ବନ୍ଦ କଲି ଓ ସେ କ'ଣ କହୁଛନ୍ତି ତାହା ଶୁଣିବାକୁ ଅନୁରୋଧ କଲି । ସମସ୍ତେ ନୀରବ ହେଲେ । କଲେକ୍ଟର କହିଲେ ଯେ, ଆମ୍ଭେମାନେ ଛାତ୍ର । ଆମର ସଂପର୍କ ବହି ସହ । ଯଦି ଆମ୍ଭେମାନେ ବହି ପାଖକୁ ଫେରିଯିବୁ, ସେ ଆମ୍ଭମାନଙ୍କୁ ବିନା ସର୍ତ୍ତରେ ଛାଡ଼ିଦେବେ ଓ ସମସ୍ତ କେଶ୍ ଉଠାଇ ନେବେ । ଆମେ ଛାଡ଼ ପାଇବା ପରେ ଯଦି ରାସ୍ତାକୁ ଯିବୁ, ତାହେଲେ ସେ ଆମକୁ ଛାଡ଼ିବେ ନାହିଁ । ଆମ୍ଭମାନଙ୍କୁ ଚିନ୍ତା ଓ ଆଲୋଚନା କରିବାକୁ ଛାଡ଼ିଦେଇ ସେ ଜେଲ ସୁପରିନ୍‌ଟେଣ୍ଡେଣ୍ଟଙ୍କ ଅଫିସକୁ ଚାଲିଗଲେ । ଆମେ ବହୁ ଆଲୋଚନା ପରେ ତାଙ୍କ କଥାରେ ରାଜି ହୋଇ ଖବର ପଠାଇଲୁ । ଆମକୁ ଡକରା ହେଲା । କଲେକ୍ଟରଙ୍କ ଉପସ୍ଥିତିରେ ଆମର ଜିନିଷମାନ ଫେରାଇ ଦିଆଗଲା ଓ ଆମ କେଶ୍‌ର କାଗଜ ପତ୍ର ସବୁ ଆମରି ଆଗରେ ଛିଡ଼ାଇ ଦିଆଗଲା । ସମୟ ପ୍ରାୟ ରାତି ୮ଟା ୩୦ମି.,ଆମେ ଜେଲ୍‌ରୁ ମୁକ୍ତ ହେଲୁ । ନୀଳଗିରି ଜେଲରୁ ମୋର ବଂଧୁମାନଙ୍କୁ ସେଇଦିନ ରାତିରେ ମୁକ୍ତି ଦେବାପାଇଁ ମୁଁ ଜିଦ୍ କରିଥିଲି । କେତେକ ପ୍ରଶାସନିକ ଅସୁବିଧା ଦର୍ଶାଇ ତା ପରଦିନ କଲେକ୍ଟର ସେମାନଙ୍କୁ ଛାଡ଼ିଦେବା ପାଇଁ ପ୍ରତିଶ୍ରୁତି ଦେଇଥିଲେ ।

ଜେଲ ବାହାରକୁ ଆସିଲୁ । ବହୁଲୋକ ରୁଣ୍ଡ ହୋଇ ଅପେକ୍ଷା କରିଥିଲେ । ସ୍ଲୋଗାନ୍ ଚାଲିଲା, ପଟୁଆର ଚାଲିଲା । ଆମେ ଆସି ସିନେମା ଛକ ପାଖରେ ପହଞ୍ଚିଲୁ । ସିନେମା ହଲବାଲା ଆମ ପାଇଁ ନାଇଟ ସୋ ଛାଡ଼ କରିଦେଲେ ।

ତା'ପରଦିନ ସକାଳେ କଲେକ୍ଟରଙ୍କ ଅର୍ଡର୍‌ଲି ଆସି ମୋତେ ଖଣ୍ଡିଏ ଚିଠି ଦେଲା । କଲେକ୍ଟର ତାଙ୍କ ସହ ପ୍ରାତଃ ଭୋଜନ ପାଇଁ ଅନୁରୋଧ ଜଣାଇଥାନ୍ତି । ଆହୁରି ମଧ୍ୟ ଜଣାଇଥାନ୍ତି ଯେ, ପ୍ରାତଃ ଭୋଜନ ପରେ ନୀଳଗିରି ଯାଇ ମୋ ବଂଧୁମାନଙ୍କୁ ସଙ୍ଗରେ ଆଣିବା ପାଇଁ । ବାହାରି ପଡ଼ିଲି । କଲେକ୍ଟରଙ୍କ ରେସ ଅଫିସରେ ବହୁ ଅଫିସର ଉପସ୍ଥିତ ଥିଲେ । ପ୍ରାତଃ ଭୋଜନ ସମୟରେ ଖୁବ୍ ଗୋଟିଏ

ଉପାଦେୟ କଥା କହିଥିଲେ ଯାହାକୁ ମୁଁ ଆଜି ପର୍ଯ୍ୟନ୍ତ ଭୁଲିନାହିଁ । ସେ କହିଥିଲେ ଯେ, ଯାହାର ଯେଉଁ କାମ, ସେ ତାହା ବିଶ୍ୱସ୍ତ ଭାବରେ କରିବା ଦରକାର । ନହେଲେ କାମ୍ ଠିକ୍ ଭାବରେ ହେବ ନାହିଁ । ଆମେ ଛାତ୍ର । ପାଠ ପଢ଼ି ବଡ଼ହେବା ଆମର ଲକ୍ଷ୍ୟ ଓ କାର୍ଯ୍ୟ । ଆମେ ସେଥିରୁ ଓହରି ଆସି ଆନ୍ଦୋଳନରେ ମାତିଲେ କ୍ଷତି ଆମରି ହେବ ଓ ଆଉ କ୍ଷତି ହେବ ଆମ ବାପାମାଆଙ୍କର, ଆଉ କାହାରି କିଛି ହେବନାହିଁ । ଆନ୍ଦୋଳନ ଧିମେଇ ଯିବ ଓ ଦିନେ ଲୋକେ ଆନ୍ଦୋଳନ କଥା ଭୁଲିଯିବେ । କିନ୍ତୁ ଆମର ଯେଉଁ କ୍ଷତି ହେବ, ତାହା ଜୀବନସାରା ପୂରଣ ହୋଇପାରିବ ନାହିଁ । ସେ ମଧ ଜଣେ ଛାତ୍ରନେତା ଥିଲେ ଏହ୍ଲାବାଦ ବିଶ୍ୱବିଦ୍ୟାଳୟରେ । ଆହୁରି ମଧ ବହୁ ଉପଦେଶ ସେ ଦେଇଥିଲେ ।

କଲେକ୍ଟରଙ୍କ ଚେତାବନୀ ସତ୍ୟରେ ପରିଣତ ହେଲା । ମୁଁ ସେ ବର୍ଷ ବି.ଏ. ପରୀକ୍ଷାରେ ଫେଲ ହୋଇଗଲି । ଯଦି ମୁଁ ୧୯୫୬ରେ ବି.ଏ. ପାଶ୍ କରିଥାନ୍ତି । ମୋ ଭାଗ୍ୟର ମୋଡ଼ ଅନ୍ୟ ପ୍ରକାର ହୋଇଥାନ୍ତା । ପାଶ୍ କଲି ୧୯୫୭ରେ ।

ଏନ୍.ସି.ସି. ଥିଲା ମୋର ଅତ୍ୟନ୍ତ ପ୍ରିୟ । ସ୍କୁଲରେ ୨ ବର୍ଷ ଜୁନିୟର ଏନ୍.ସି.ସି.ରେ ଥିବାରୁ କଲେଜରେ ଏନ୍.ସି.ସି.ରେ ଖୁବ୍ ଭଲ କଲି । ସେତେବେଳେ ଆମ ଓଡ଼ିଶା, ବେଙ୍ଗଲ ଡିଭିଜନ ସହ ସଂଯୁକ୍ତ ଥିଲା । କଟକ, ବାଲେଶ୍ୱର, ବାରିପଦା ଓ ସମ୍ବଲପୁରରେ ସରକାରୀ ଓ ବେସରକାରୀ କଲେଜମାନଙ୍କୁ ନେଇ 1st Orissa BN ଓ ପୁରୀ, ଖଲ୍ଲିକୋଟ ଓ ଜୟପୁରକୁ ନେଇ 2nd Orissa BN ଗଠିତ ହୋଇଥଲା । Annual Training Camp ଡିସେମ୍ବର ଜାନୁୟାରୀ ମାସରେ ପଡ଼େ ଏବଂ Service Camp Summer Vacationରେ ପଡ଼େ । ମୁଁ ତୁଳସୀପୁର, ଭୁବନେଶ୍ୱର, ଖୋର୍ଦ୍ଧା, ବାରଙ୍ଗ, ରଙ୍ଗେଇଲୁଣ୍ଡା, ଚାରବାଟିଆ, ବ୍ରହ୍ମପୁର ଇତ୍ୟାଦି Camp ମାନଙ୍କରେ ଯୋଗଦାନ କରିଥିଲି । 'C' Certificate ପାଶ୍ ନକଲେ under officer rankକୁ ପ୍ରମୋଶନ ଦିଆଯାଉ ନଥିଲା । ଓଡ଼ିଶାରେ ୨ଟି ବାଟାଲିୟନ୍‌ରେ ଜଣେ ହେଲେ 'C' certificate ଧାରୀ ଛାତ୍ର ନଥିଲେ । ୪ଟି camp attend ନକଲେ C' Certificate ପରୀକ୍ଷା ଦେବାର ସୁଯୋଗ ନଥିଲା । ଥରେ ଗୋଟିଏ campରେ ତାତ୍କାଳୀନ N.C.C. Director Col. Cama ତାଚ୍ଛଲ୍ୟ କରି କହିଲେ ଯେ, ଓଡ଼ିଶାରେ ଯୋଗ୍ୟ cadet ନାହାନ୍ତି । କାରଣ ୨ଟି ବାଟାଲିୟନ୍‌ରେ ଜଣେ ହେଲେ under officer ଦେଖିବାକୁ ମିଳୁ ନାହାନ୍ତି । ମୋ ମନରେ ଜିଦ୍ ଜନ୍ମିଲା । ଅରୁଣ ପଟ୍ଟନାୟକ ଓ ମୁଁ ତା ପରବର୍ଷ campରେ C' certificate ପରୀକ୍ଷା ଦେଇ ପାଶ୍ କଲୁ । under officer rankକୁ ପ୍ରମୋଶନ ପାଇଲୁ ମଧ । କିନ୍ତୁ Col. Camaଙ୍କ ସହ ଆଉ ଦେଖା ହୋଇପାରିଲା ନାହିଁ । ସେ ଅନ୍ୟତ୍ର ବଦଳି ହୋଇ ଯାଇଥିଲେ । କଲେଜରେ ଆମର ଏନ୍.ସି.ସି. ଅଫିସର ସେତେବେଳେ ଥିଲେ କ୍ୟାପ୍‌ଟାନ୍ ଗୋପାଳ ଚନ୍ଦ୍ର ପଟ୍ଟନାୟକ, କ୍ୟାପ୍‌ଟେନ ଭୂବନାନନ୍ଦ ରାୟ ଓ କ୍ୟାପଟେନ୍ ଜୟକୃଷ୍ଣ ମିଶ୍ର ।

ମନେପଡ଼େ, ସେ ସମୟରେ ଆଉ କେତେ ମଜା କଥା । ଅଧକ୍ଷ ପି.ଏସ. ସୁନ୍ଦରମ୍‌ଙ୍କ ସହ କଲେଜ ପଢ଼ିଆରୁ ଘୁଗୁର୍ଚ୍ଚିଆ ଘାସ ଉପାଡ଼ିଲା ବେଳେ-ତାଙ୍କଠାରୁ ଜାଣିଲୁ ଏହାକୁ ଇଂରାଜୀରେ କହନ୍ତି 'Love Thorn' । ଛାତ୍ରଛାତ୍ରୀଙ୍କର ମନଖୋଲା ହସ ଏକଥା ଶୁଣି । ଅଧକ୍ଷ ବୋଲି ଭୟ ନଥିଲା । ସେ ଥିଲେ ଆମ୍ଭମାନଙ୍କର ଏତେ ନିକର । ହକି ଷ୍ଟିକ ଧରି ଅଧକ୍ଷ ଗୁରୁଦୟାଲ ସିଂ ଆମ ସହ ପଡ଼ିଆଲେ । ଚାନ୍ଦିପୁର P.W.D. ଡାକବଙ୍ଗଳାରେ ଭାଙ୍ଗ ଖାଇବାପରେ ଅଧାପକ ଶ୍ରୀ ମହାନ୍ତିଙ୍କର କି ସାହିତ୍ୟ ଚର୍ଚ୍ଚା । ହିଷ୍ଟ୍ରି ସୋସାଇଟି ତରଫରୁ ନୀଳଗିରିର ପଞ୍ଚଲିଙ୍ଗେଶ୍ୱର ପାହଡ଼ ଉପରେ ପିକ୍‌ନିକ୍ । ଅଧାପକ ଶ୍ରୀ ନବକୁମାର ମିଶ୍ରଙ୍କର କଡ଼ା ନିର୍ଦ୍ଦେଶ । ସଂଧ୍ୟା ପୂର୍ବରୁ ଫେରିବାକୁ ହେବ । କାରଣ ପୁଅଝିଅ ସବୁ ସାଙ୍ଗହୋଇ ଯାଇଥାନ୍ତି । ଆମେ ଅବଶ୍ୟ ତଳକୁ ଓହ୍ଲେଇବା ବେଳକୁ ଅନ୍ଧାର ହୋଇ ଯାଇଥିଲା । ସେତେବେଳକୁ ସେ ଝିଅମାନଙ୍କୁ ଧରି ଆସି ବସ୍‌ରେ ବସି ସାରିଥିଲେ । ଏହିପରି ବହୁ ସ୍ମୃତି ମନକୁ ଆନ୍ଦୋଳିତ କରେ । ଏଠାରେ ସେ ସବୁକୁ ରୂପ ଦେବା ସମ୍ଭବ ନୁହେଁ ।

• ଓ. ଟି. ରୋଡ଼, ବାଲେଶ୍ୱର

# ଫକୀରମୋହନ କଲେଜରେ ମୋର ଛାତ୍ର ଓ ଅଧ୍ୟାପକ ଜୀବନ

## ଡଃ ପ୍ରହ୍ଲାଦ ଚରଣ ମହାନ୍ତି

ବାଲେଶ୍ୱର ଜିଲ୍ଲା ସ୍କୁଲରୁ ୧୯୫୩ରେ ମେଟ୍ରିକ ପାଶ୍ କରିବା ପରେ ସେହି ବର୍ଷ ପୁରୁଣା ଜିଲ୍ଲା-ସ୍କୁଲ ଘରେ ହେଉଥିବା ଫକୀରମୋହନ କଲେଜରେ ଆଇ.ଏସ୍.ସି. ପ୍ରଥମ ବର୍ଷରେ ନାମ ଲେଖାଇଥିଲି । ୧୯୫୫ ପର୍ଯ୍ୟନ୍ତ ଦୁଇବର୍ଷ ଆଇ.ଏସ୍.ସି ଶ୍ରେଣୀର ଏବଂ ୧୯୫୫ରୁ୧୯୫୭ ପର୍ଯ୍ୟନ୍ତ ବି.ଏ ଶ୍ରେଣୀର ପାଠ ଶେଷ କରି ମୁଁ ଯେତେବେଳେ ଫକୀରମୋହନ କଲେଜରୁ ବିଦାୟ ନିଏ, ସେତେବେଳେ ମୁଁ ଜିଲ୍ଲା-ସ୍କୁଲ ଓ ଫକୀରମୋହନ କଲେଜ ମଧ୍ୟରେ କିଛି ପାର୍ଥକ୍ୟ ଅନୁଭବ କରି ନଥିଲି ।

ଜିଲ୍ଲାସ୍କୁଲରୁ ମେଟ୍ରିକ୍ ପାଶ୍ କରିଥିବା ପିଲାମାନେ ଫକୀରମୋହନ କଲେଜର ବିଜ୍ଞାନ ଶ୍ରେଣୀରେ ବେଶୀ ସଂଖ୍ୟାରେ ସ୍ଥାନ ପାଉଥିଲେ ଏବଂ ଶ୍ରେଣୀରେ ସେମାନଙ୍କର ସ୍ୱତନ୍ତ୍ର ସମ୍ମାନ ଥିଲା । ସେତେବେଳେ ଆଇ.ଏସ୍.ସି. ଶ୍ରେଣୀରେ ସ୍ଥାନସଂଖ୍ୟା ଥିଲା ମାତ୍ର ୮୦ । ସ୍ଥାନଭାବ ଯୋଗୁଁ ବହୁ ମେଧାବୀ ଓ ଇଚ୍ଛୁକ ଛାତ୍ର ଏହି ବିଜ୍ଞାନ ଶିକ୍ଷାରୁ ବଞ୍ଚିତ ହୋଇଥିଲେ ।

ଆମ ସମୟରେ ପ୍ରାକ୍ଟିକାଲ ଓ ଟ୍ୟୁଟୋରିଆଲ କ୍ଲାସ ବ୍ୟତୀତ ଅନ୍ୟ ସମସ୍ତ କ୍ଲାସ, ସାଇନ୍ସ ଗେଲେରୀ (ସି.ଏସ୍.ଜି) ରେ ହେଉଥିଲା । ଆଗ ଧାଡ଼ଟି ଝିଅଙ୍କ ପାଇଁ ଉଦ୍ଦିଷ୍ଟ ଥିଲା । ସେମାନଙ୍କର ପଛ ଧାଡ଼ିଗୁଡ଼ିକୁ ଜିଲ୍ଲା ସ୍କୁଲରୁ ପାଶ୍ କରି ଆସିଥିବା ପିଲାମାନେ ଅଧିକାର କରୁଥିଲେ । ଅନ୍ୟ ସ୍କୁଲରୁ ଆସିଥିବା ପିଲାମାନେ ସ୍ୱଭାବତଃ ରକ୍ଷଣଶୀଳ, ଲଜ୍ଜାଶୀଳ ଥିଲେ; ଏଣୁ ସେମାନେ ପଛ ସିଟ୍‌କୁ ଆଦିର ନେଉଥିଲେ ।

ସାର୍‌ମାନଙ୍କର ଅଧ୍ୟପନା ଏବେ ବି ମୋ ସ୍ମୃତିପଟରେ ଉଜ୍ଜୀବିତ ହୋଇ ରହିଛି । ଫିଜିକ୍ସର ମୁଖ୍ୟ ଅଧ୍ୟାପକ ଅଜୟ ବୀର କେବଳ ଜଣେ ଦକ୍ଷ ତଥା ଛାତ୍ରବତ୍ସଳ ଅଧ୍ୟାପକ ନଥିଲେ, ନିୟମିତ ଖଦଡ଼ ଧୋତି, ଖଦଡ଼ ଯୋଧପୁରୀ କୋଟ୍ ପିନ୍ଧୁଥିବା ସଦା ମିଷ୍ଟଭାଷୀ, ରାଗ-ଅହଂକାର-ବିବର୍ଜିତ ଜଣେ ଆଦର୍ଶ ମଣିଷ ମଧ୍ୟ ଥିଲେ । ଫିଜିକ୍ସର ସୂତ୍ର ଓ ତତ୍ତ୍ୱଗୁଡ଼ିକୁ ସେ ବ୍ଲାକ୍‌ବୋର୍ଡ଼ରେ ଡାଏଗ୍ରାମ କାଟି ଏପରି ସରଳ ଓ ପ୍ରାଞ୍ଜଳଭାବେ ବୁଝାଇ ଦିଅନ୍ତି ଯେ ଗରିବ ତଥା ମେଧାବୀ ପିଲାଙ୍କ ପାଇଁ ଟେକ୍ସ୍ଟ ବହି କିଣିବା ଆବଶ୍ୟକ ପଡ଼େ ନାହିଁ । କେବଳ ସେତିକି ନୁହେଁ ବିଜ୍ଞାନ ବିଭାଗରେ ଯଦି ଦୈବାତ୍ ଛାତ୍ର ଅଶାନ୍ତି ବା ସମସ୍ୟା ଦେଖାଦିଏ କଥାଟା ପ୍ରିନ୍‌ସପାଲଙ୍କ ପାଖକୁ ନଯାଇ ତାଙ୍କରି ବ୍ୟକ୍ତିତ୍ୱ ଯୋଗୁଁ ତାଙ୍କରି ନିକଟରେ ସମାଧାନ ହୋଇଯାଏ । ଥରେ ଆମ ସେକେଣ୍ଡ ଇୟର୍ ଆଇ.ଏସ୍.ସି. ଶ୍ରେଣୀରେ ଏକ ଛୋଟ ଘଟଣା ଅବାଞ୍ଛିତ ରୂପ ଗ୍ରହଣ କରିଥିଲା । ପ୍ରାୟ ଦୁଇବର୍ଷ ହେବ ଫିଜିକ୍ସ ଅଧ୍ୟାପକ ରୂପେ ଜୟେନ୍ କରିଥିବା ଶ୍ରୀ ରାମଚନ୍ଦ୍ର ମହାନ୍ତି ପିଲାଙ୍କର ଟିକିଏ ଅବାଗିଆ ଗୁଣ ଦେଖିଲେ ଭୟଙ୍କର ବିରକ୍ତ ହୁଅନ୍ତି । ଅନାକର୍ଷଣୀୟ ତଥା ଅବୋଧ ଅଧ୍ୟାପନା ସହିତ ଶିକ୍ଷକର ଅସହିଷ୍ଣୁ ଗୁଣ, କ୍ଷଣକୋପୀ ସ୍ୱଭାବ ଓ ଆତ୍ମବଡ଼ିମା କିପରି ରହସିଆ ଛାତ୍ରଙ୍କୁ ଖୋରାକ ଯୋଗାଇଥାଏ କ୍ଲାସରେ ଗଣ୍ଡଗୋଳ କରିବା ପାଇଁ, ଅଧ୍ୟାପକ ମହାନ୍ତି ଥିଲେ ତାହାର ଉଜ୍ଜ୍ୱଳ ଦୃଷ୍ଟାନ୍ତ । ତାଙ୍କ ପେପର୍‌ର ପଢ଼ା ଅବୋଧ ଓ ଅଗ୍ରଗତି ମନ୍ଥର ହେବାରୁ ଥରେ ଦ୍ୱିତୀୟ ବର୍ଷର ପିଲାମାନେ ଏଚ୍.ଓ.ଡି (ବିଭାଗୀୟ ମୁଖ୍ୟ) ଅଜୟ ବୀରଙ୍କ ପାଖରେ ଅଭିଯୋଗ ବାଢ଼ିଲେ । ଅଧ୍ୟାପକ ବୀର ଆଶ୍ୱାସନା ଦେଇ କହିଲେ ଯେ ସେ ଏକ୍ସ୍ଟ୍ରା କ୍ଲାସ ନେଇ ଅଧ୍ୟାପକ ମହାନ୍ତିଙ୍କ କୋର୍ସ ସାରିଦେବେ । ତା'ପରେ ଅବସ୍ଥା ଶାନ୍ତ ପଡ଼ିଲା । ପରେ ମୁଁ ଶୁଣିଲି ଶ୍ରୀରାମଚନ୍ଦ୍ର ମହାନ୍ତି ଅଧ୍ୟାପକ ଚାକିରୀ ଛାଡ଼ିଦେଇ ଉଚ୍ଚ ଅଧ୍ୟୟନ ପାଇଁ ଆମେରିକା ଚାଲି ଯାଇଥିଲେ ।

ମ୍ୟାଥ୍‌ମେଟିକସ୍‌ରେ ଦୁଇଜଣ ସାର୍ ଥିଲେ ଦେବପ୍ରତିମ ଲୋକ । ଅଧ୍ୟାପକ ଶିବକୁମାର ପଣ୍ଡା ଯେପରି ଥିଲେ ଗୁରୁ ଗମ୍ଭୀର, ଛାତ୍ରବତ୍ସଳ ଗଣିତ ବିଷୟରେ ସେହିପରି ଥିଲେ ଅସାଧାରଣ ପଣ୍ଡିତ । ତାଙ୍କ ପଢ଼ା ଏତେ ପ୍ରାଞ୍ଜଳ ଓ ବୋଧଗମ୍ୟ ଥିଲା ଯେ ତାହାକୁ ଦ୍ୱିତୀୟ ଥର ବୁଝିବାର ଆବଶ୍ୟକ ନଥିଲା । ପରବର୍ତ୍ତୀ କାଳରେ ଭୂଦାନ କର୍ମୀଭାବେ ଓଡ଼ିଶା ତଥା ଭାରତରେ ଖ୍ୟାତି ଅର୍ଜନ କରିଥିବା ଅଧ୍ୟାପକ ଭୁବନାନନ୍ଦ ରାୟ ଆମ ମଧ୍ୟରେ ମିଷ୍ଟଭାଷୀ, ଛାତ୍ରବତ୍ସଳ, ଦକ୍ଷ ଅଧ୍ୟାପକ ଭାବେ ପରିଚିତ ଥିଲେ । କଲେଜ ଏନ୍.ସି.ସି. ଅଫିସର ଭାବେ ଅଧ୍ୟାପକ ପଣ୍ଡା ଓ ଅଧ୍ୟାପକ ରାୟ କ୍ୟାଡେଟ୍‌ମାନଙ୍କୁ ଯେଉଁ ଶୃଙ୍ଖଳା ଜ୍ଞାନ ଓ ସମୟାନୁବର୍ତ୍ତିତା ଶିଖାଇଥିଲେ ତାହା ମୁଁ ଜୀବନରେ ଭୁଲି ପାରିବି ନାହିଁ ।

ରୋମାଣ୍ଟିକ ଭଙ୍ଗୀରେ ଇଂରାଜୀ କବିତା ଓ ଅଧ୍ୟାପକ କ୍ଷିତୀଶ ଦେବଙ୍କର ନାଟକୀୟ ଭଙ୍ଗୀରେ ସେକ୍‌ସପୀୟରଙ୍କ ମେକ୍‌ବେଥ, କିଙ୍ଗଲିୟର, ନାଟକ ପଢ଼ାଇବାର ମାଦକତା ଆମ୍ଭେମାନେ ଉପଭୋଗ କରୁଥିଲୁଁ । ଛାତ୍ରବତ୍ସଳ, ସ୍ଥିତପ୍ରଜ୍ଞ ଓଡ଼ିଆ ଓ ସଂସ୍କୃତ ଅଧ୍ୟାପକ ଡମ୍ବରୁଧର ଦାଶ (ପିଲାଙ୍କ ମଧ୍ୟରେ ଡି.ଡି.ଡି.ରୂପେ ପରିଚିତ )ଙ୍କ ବାରମ୍ବାର 'ଅତଏବ' ଉଚ୍ଚାରଣ ପିଲାଙ୍କ ମଧ୍ୟରେ ମୃଦୁ ହାସ୍ୟ ସୃଷ୍ଟି କରୁଥିଲେ ମଧ୍ୟ ତାଙ୍କ ପ୍ରତି ସମସ୍ତଙ୍କର ଅତୁଟ ଭକ୍ତି ରହିଥିଲା ।

ରେଭେନ୍‌ସା କଲେଜରୁ ୧୯୫୯ରେ ଓଡ଼ିଆରେ ଏମ୍.ଏ. ପାଶ୍ କରି ସେହି ବର୍ଷ ଢେଙ୍କାନାଳ କଲେଜରେ ଅଧ୍ୟାପକ ଭାବେ ଯୋଗଦେଲି । ବିଧିର ବିଧାନ ଏପରି ଥିଲା ଯେ ୧୯୬୭ ମସିହାରେ ମୋ ସ୍ମୃତିର ପବିତ୍ର ପୀଠ ଫକୀରମୋହନ କଲେଜକୁ ବଦଳି ହୋଇ ଆସିଲି । କେ.ପି.ଏ. ପିଲାଇ ଥାନ୍ତି ପ୍ରିନ୍‌ସିପାଲ । ମୁଁ ନବାଗତ ହୋଇଥିଲେ ମଧ୍ୟ ସେ କେଜାଣି କାହିଁକି ମୋ ଉପରେ ବହୁତ ଦାୟିତ୍ୱ ନ୍ୟସ୍ତ କଲେ । ପରୀକ୍ଷା ବିଭାଗ, କଲେଜ କୋପରେଟିଭ୍ ଷ୍ଟୋରର ସେକ୍ରେଟାରୀ, ଡ୍ରାମାଟିକ ଏସୋସିଏସନର ଭାଇସ ପ୍ରେସିଡେଣ୍ଟ, କଲେଜ ରିକୋଗ୍ନାଇଜଡ ମେସଗୁଡ଼ିକର ସୁପରିନ୍‌ଟେଣ୍ଡେଣ୍ଟ ପ୍ରଭୃତି ଦାୟିତ୍ୱ ମୋତେ ତୁଲାଇବାକୁ ପଡ଼ିଥିଲା । ସମ୍ଭବତଃ ୧୯୭୧ ମସିହାରେ ପିଲାଇ ସାହେବଙ୍କର ରେଭେନ୍‌ସା କଲେଜର ଇଂରାଜୀ ପ୍ରଫେସର ଭାବେ ପ୍ରମୋଶନ ହୋଇ ପୋଷ୍ଟିଂ ଆସିଲା । ସେତେବେଳେ ସିନିୟର୍ ମୋଷ୍ଟ ରିଡର ନବକିଶୋର ମିଶ୍ରଙ୍କ ନିର୍ଦ୍ଦେଶକ୍ରମେ ପିଲାଇ ସାହେବ ମୋତେ ଅଧକ୍ଷ ଦାୟିତ୍ୱ ଅର୍ପଣ କରିଥିଲେ ଓ ମୁଁ ତାଙ୍କୁ ରିଲିଭ କରିଥିଲି ।

ମୋର ଏହି ରହଣି ସମୟରେ ଏକ ସ୍ମରଣୀୟ ଘଟଣା ଘଟିଥିଲା । ରାଜ୍ୟ ସରକାର ଘୋଷଣା କଲେ ଯେ ସମ୍ବଲପୁର, ବ୍ରହ୍ମପୁରରେ ସରକାର ଗୋଟିଏ ଗୋଟିଏ ବିଶ୍ୱବିଦ୍ୟାଳୟ ସ୍ଥାପନ କରିବେ । ବାଲେଶ୍ୱର ପ୍ରତି ଅବଜ୍ଞା ପ୍ରଦର୍ଶନ କରାଯାଇଥିବାରୁ ଆମେ କେତେଜଣ ଅଧ୍ୟାପକଙ୍କ ମନରେ ତୀବ୍ର ପ୍ରତିକ୍ରିୟା ସୃଷ୍ଟି ହୋଇଥିଲା । ଇତିହାସ ବିଭାଗର ରିଡର ରାଜେନ୍ଦ୍ର ପ୍ରସାଦ ଦାସ, ରାଜନୀତି ବିଭାଗର ଅଧ୍ୟାପକ ସ୍ୱର୍ଗତ ପ୍ରଫୁଲ୍ଲ କୁମାର ରଥ ଓ ମୁଁ ତିନିଜଣ ମିଶି ଉତ୍ତର ଓଡ଼ିଶା ବିଶେଷତଃ ବାଲେଶ୍ୱରରେ ବିଶ୍ୱବିଦ୍ୟାଳୟ ସ୍ଥାପନ ଓ ଉଚ୍ଚଶିକ୍ଷାର ପ୍ରସାର ପାଇଁ ଯୁକ୍ତରାଷ୍ଟ୍ର ଆମେରିକା ଫୋର୍ଡ଼ ଫାଉଣ୍ଡେସନ୍ ନାମକରଣ ଅନୁସାରେ ଏଡୁକେଶନ ଫାଉଣ୍ଡେସନ ସ୍ଥାପନ କରିବା ପାଇଁ ମନସ୍ଥ କଲୁଁ । ମୋ ଆବାହାକତ୍ୱରେ ପ୍ରଥମ ପ୍ରସ୍ତୁତି କମିଟି ମିଟିଂ ବସିଥିଲା । ବାଲେଶ୍ୱର ସହରର ପ୍ରବୀଣ ଶିକ୍ଷାବିତ୍, ଡାକ୍ତର ଆଇନ୍‌ଜୀବୀ, ପ୍ରଧାନଶିକ୍ଷକ, ସାମ୍ବାଦିକ ଓ ବରିଷ୍ଠ ନାଗରିକମାନେ ମିଟିଂରେ ଯୋଗ ଦେଇଥିଲେ । ମୋତେ ଆବାହକ ପରେ ସଂପାଦକ ଭାବେ ନିର୍ବାଚିତ କରାଯାଇଥିଲା । ଗାନ୍ଧୀ ଶାନ୍ତି ପ୍ରତିଷ୍ଠାନ ସମେତ ବିଭିନ୍ନ ସ୍ଥାନରେ ବହୁବାର ସଭା କରାଯାଇ ବିଶ୍ୱବିଦ୍ୟାଳୟ ସ୍ଥାପନ, ଫକୀରମୋହନ କଲେଜର ଉନ୍ନତି ବିଧାନ ପ୍ରଭୃତି ପ୍ରସ୍ତାବ ଗ୍ରହଣ କରାଯାଇଥିଲା । ୧୯୭୨ ମସିହାରେ ଏହି ଫାଉଣ୍ଡେସନକୁ ବିଧିବଦ୍ଧ ଭାବେ ରେଜେଷ୍ଟ୍ରିଭୁକ୍ତ କରାଯାଇ ସଭାପତି ଓ ସମ୍ପାଦକ ଭାବେ ଯଥାକ୍ରମେ ବରିଷ୍ଠ ଆଡ୍‌ଭୋକେଟ ସ୍ୱର୍ଗତ

କୃଷ୍ଣପ୍ରସାଦ ମହାନ୍ତି ଓ ତତ୍କାଳୀନ ସଦର ବିଧାୟକ ତଥା ଖ୍ୟାତନାମା ସ୍ୱାଧୀନତା ସଂଗ୍ରାମୀ ରବୀନ୍ଦ୍ରମୋହନ ଦାସ ନିର୍ବାଚିତ ହୋଇଥିଲେ । ସମ୍ପାଦକ ଶ୍ରୀଯୁକ୍ତ ଦାସଙ୍କ କାର୍ଯ୍ୟକାଳ ମଧ୍ୟରେ ତାଙ୍କର ପ୍ରଗାଢ଼ ଯତ୍ନରେ ଏଡୁକେଶନ ଫାଉଣ୍ଡେସନର ଅଭୂତପୂର୍ବ ବିକାଶ ସାଧିତ ହୋଇଥିଲା । ଏଡୁକେସନ୍ ଫାଉଣ୍ଡେସନର ଉଦ୍ୟମ, ବିଶ୍ୱବିଦ୍ୟାଳୟ କ୍ରିୟାନୁଷ୍ଠାନ କମିଟିର ଆନ୍ଦୋଳନ ଯୋଗୁଁ ଫାଉଣ୍ଡେସନ୍ ପ୍ରଦତ୍ତ ଛ'ଏକର ଜମି ଓ ତା' ଉପରେ ନର୍ମିତ ବିଶାଳ ଚତୁର୍ସ୍ତଳ ପ୍ରାସାଦର ୧୯୯୯ ମସିହାରେ ରାଜ୍ୟ ସରକାର 'ଫକୀରମୋହନ ବିଶ୍ୱବିଦ୍ୟାଳୟ' ସ୍ଥାପନ କଲେ । ପ୍ରାୟ ତିରିଶ ବର୍ଷ ପୂର୍ବେ ଫକୀରମୋହନ କଲେଜର କେତେଜଣ ଅଧ୍ୟାପକ ଯେଉଁ ସ୍ୱପ୍ନ ଦେଖି ଉଦ୍ୟମ ଆରମ୍ଭ କରିଥିଲେ ଅବିଭକ୍ତ ବାଲେଶ୍ୱର ଜିଲ୍ଲାର ଅଧିବାସୀଙ୍କ ସାମୂହିତ ସହଯୋଗ ଫଳରେ ତାହା ୧୯୯୯ ମସିହାରେ ସଫଳ ହୋଇଥିଲା ।

୧୯୭୨ ମସିହାରେ ଫକୀରମୋହନ କଲେଜରୁ ବ୍ରହ୍ମପୁରର ଖଲ୍ଲିକୋଟ କଲେଜ ଏବଂ ତା'ପରେ ଭଦ୍ରକ କଲେଜକୁ ମୁଁ ବଦଳି ହୋଇଥିଲି । ପୁନର୍ବାର ୧୯୮୨ ମସିହାରେ ଭଦ୍ରକ କଲେଜରୁ ବଦଳି ହୋଇ ଫକୀରମୋହନ କଲେଜରେ ଅବସ୍ଥାପିତ ହେଲି । ଏହି ରହଣି ସମୟରେ ମୁଁ ପି.ଏଚ୍.ଡି. ଡିଗ୍ରୀ ଲାଭ କଲି । ଛାତ୍ର ସଂସଦର ଉପଦେଷ୍ଟା ଦାୟିତ୍ୱରୁ ଅବ୍ୟାହତି ପାଇବା ପାଇଁ ମୁଁ ଭଦ୍ରକ କଲେଜ ଛାଡ଼ିଥିଲି, ଯଦିଓ ଛାତ୍ର ସଂସଦର ନିର୍ବାଚିତ କର୍ମକର୍ତ୍ତାଙ୍କର ଓ ଛାତ୍ରସମାଜର ଅକୁଣ୍ଠିତ ଶ୍ରଦ୍ଧା ଓ ସମ୍ମାନ ମୋତେ ବିମୁଗ୍ଧ କରିଥିଲା । ମାତ୍ର ଫକୀରମୋହନ କଲେଜକୁ ଆସିବା ପରେ ଅଧ୍ୟକ୍ଷ ମେନନ୍ ସାହେବଙ୍କ ଅମ୍ଳାନ ବ୍ୟକ୍ତିତ୍ୱ ଓ ଅନୁରୋଧ ମୋତେ ଛାତ୍ରସଂସଦର ଉପଦେଷ୍ଟା ଦାୟିତ୍ୱ ଗ୍ରହଣ କରିବାକୁ ବାଧ କରିଥିଲା । ଦଶବର୍ଷ କାଳ ଏହି ଦାୟିତ୍ୱରେ ରହି ମୁଁ ନିର୍ବାଚିତ ଛାତ୍ର ପ୍ରତିନିଧିଙ୍କ ଠାରୁ ଅକୁଣ୍ଠିତ ସାହାଯ୍ୟ ଓ ସମର୍ଥନ ଲାଭ କରିଛି ।

ଛାତ୍ର ଓ ଅଧ୍ୟାପକ ଭାବେ ଫକୀରମୋହନ କଲେଜରେ ମୁଁ ଯେଉଁ ଅମୂଲ୍ୟ ଅଭିଜ୍ଞତା ପାଇଛି ତାହା ମୋ ଜୀବନରେ ଅଭୁଲା ସ୍ମୃତି ହୋଇ ରହିବ । ୧୯୯୪ ମସିହା ଫେବୃୟାରୀ ୨୮ରେ ଅବସର ଗ୍ରହଣ କରିବା ପରେ ଫକୀରମୋହନ କଲେଜ ଷ୍ଟାଫ କ୍ଲବର ତତ୍କାଳୀନ ସମ୍ପାଦକ ତଥା ବରିଷ୍ଠ ଇଂରାଜୀ ଅଧ୍ୟାପକ ରବିନାରାୟଣ ଦାଶ ଏବଂ ତାଙ୍କ ସହଯୋଗୀ ବରିଷ୍ଠ ଇଂରାଜୀ ଅଧ୍ୟାପକ ସୁବାସ ପାତ୍ରଙ୍କ ନିଷ୍ଠାପର ଉଦ୍ୟମରେ କଲେଜର ଅଧ୍ୟକ୍ଷ ପ୍ରଫେସର ଗୋପାଳ ଚନ୍ଦ୍ର ଘୋଷଙ୍କ ସଭାପତିତ୍ୱରେ ଅନୁଷ୍ଠିତ ସଭାରେ ଫକୀରମୋହନ କଲେଜର ଅଧ୍ୟାପିକା ଓ ଅଧ୍ୟାପକମାନେ ମୋତେ ପ୍ରଶଂସାପତ୍ର ଓ ରୌପ୍ୟନିର୍ମିତ ଉପଢୌକନ ଏବଂ ଉପହାର ଦେଇ ଯେପରି ବିଦାୟ ସମ୍ବର୍ଦ୍ଧନା ଜଣାଇଥିଲେ ତାହା ଚିରଦିନ ମୋ ମାନସ-ପଟରେ ଦେଦୀପ୍ୟମାନ ହୋଇ ରହିବ ।

ମୁଁ ନିଜକୁ ସବୁଠାରୁ ବେଶି କୃତକୃତ୍ୟ ବୋଲି ମନେ କରିଥିଲି ଯେଉଁଦିନ ଫକୀରମୋହନ କଲେଜର ଅଧ୍ୟକ୍ଷ ପ୍ରଫେସର ଗୋପାଳ ଘୋଷ ମୋ ଦ୍ୱାରା କଲେଜର ପ୍ରଥମ କରି ଆରମ୍ଭ ହେଉଥିବା ଓଡ଼ିଆ ଏମ୍.ଏ. ଶ୍ରେଣୀ ଉନ୍ମୋଚନ କରାଇଥିଲେ, କାରଣ ମୋ ଉଦ୍ୟମରେ ଫକୀରମୋହନ କଲେଜରେ ଓଡ଼ିଆ ଏମ୍.ଏ. ଶ୍ରେଣୀ ଖୋଲିଥିଲା । ଏକଥା ସତ୍ୟ ଯେ ମୁଁ କଲେଜ ୟୁନିୟନର ଏଡ୍‌ଭାଆଇଜର ଥିବା ପର୍ଯ୍ୟନ୍ତ ଏ ସଂକ୍ରାନ୍ତରେ ଓଡ଼ିଆ ଅନର୍ସ ପିଲାଙ୍କ ସମେତ ଅନ୍ୟ ପିଲାଙ୍କୁ ଧାରଣାରେ ବସିବାକୁ ବା ଆନ୍ଦୋଳନ କରିବାକୁ ବାରଣ କରୁଥିଲି; ମାତ୍ର ମୁଁ ଏଡଭାଇଜର ଦାୟିତ୍ୱରୁ ଅବ୍ୟାହତି ପାଇବା ପରେ ଓ ମୋର ଅବସର ଗ୍ରହଣ ପୂର୍ବରୁ ପିଲାମାନଙ୍କୁ ଉତ୍ସାହିତ କରିଥିଲି । ପିଲାମାନେ ଧାରଣାରେ ବସିଥିଲେ । ରାଜ୍ୟ ସରକାର ଦୟା ପରବଶ ହୋଇ ଓଡ଼ିଆ ଏମ୍.ଏ. ଖୋଲିବା ପାଇ ଅନୁମତି ଦେଲେ । ସେଦିନ ଓଡ଼ିଆ ଏମ୍.ଏ. ପାଠ୍ୟକ୍ରମକୁ ଆନୁଷ୍ଠାନିକ ଭାବେ ଉନ୍ମୋଚନ କରି ଯେଉଁ ଆନନ୍ଦ, ଗୌରବ ଓ ଆଶ୍ୱସ୍ତି ଅନୁଭବ କରିଛି ତାହା ଭାଷାରେ ପ୍ରକାଶ କରିହେବ ନାହିଁ ।

ଅଧକ୍ଷ ପ୍ରଫେସର ଗୋପାଳ ଘୋଷଙ୍କ ପ୍ରେରଣା ଫଳରେ ଆମେ କେତେଜଣ ପୁରାତନ ଛାତ୍ର 'ଫକୀରମୋହନ ପୁରାଚନ ଛାତ୍ର ସଂସଦ' ସ୍ଥାପନ କଲୁଁ । ଏହି ସଂସ୍ଥାକୁ ରେଜେଷ୍ଟ୍ରିଭୁକ୍ତ କରାଗଲା । ଆମ ଉଦ୍ୟମରେ ବିଶ୍ୱବିଦ୍ୟାଳୟ ପରୀକ୍ଷା ଓ +୨ କାଉନ୍‌ସିଲ ପରୀକ୍ଷାରେ ବିଭିନ୍ନ ବିଷୟରେ ସର୍ବୋଚ୍ଚ ନମ୍ବର ରଖି ପ୍ରତିବର୍ଷ ଯେଉଁ ପିଲାମାନେ ଉତ୍ତୀର୍ଣ୍ଣ ହେଉଛନ୍ତି ସେମାନଙ୍କୁ କ୍ୟାସ୍ ପ୍ରାଇଜ ଦେବାପାଇଁ ବଦାନ୍ୟ ବ୍ୟକ୍ତିଙ୍କ ଠାରୁ ପାଣ୍ଠି ସଂଗ୍ରହ କରି ବ୍ୟାଙ୍କରେ ସ୍ଥାୟୀ ଜମା ରଖିଛୁଁ ଏବଂ ପ୍ରତ୍ୟେକ ବର୍ଷ ବାର୍ଷିକୋତ୍ସବରେ ପୁରସ୍କାର ଦେଉଛୁ । କେବଳ ସେତିକି ନୁହେଁ, କଲେଜର ସ୍ଥାନାଭାବ ଦୂର କରିବା ପାଇଁ ପୁରାତନ ଛାତ୍ର, ଅଧ୍ୟୟନରତ ଛାତ୍ର, ପ୍ରାଇଭେଟ ଉପାଧ୍ୟୁତ୍ତର ପରୀକ୍ଷାର୍ଥୀ, କଲେଜ ଅଧ୍ୟାପକ, କର୍ମଚାରୀ, ବଦାନ୍ୟ ବ୍ୟକ୍ତି, ଅଧକ୍ଷ ସମୂହ ଏବଂ ସାଂସଦଙ୍କ ଅନୁଦାନ ପାଣ୍ଠିରୁ ଅର୍ଥ ସଂଗ୍ରହ କରି କଲେଜ ମୁଖ୍ୟ ପ୍ରାସାଦ ସମ୍ମୁଖରେ ଦଣ୍ଡାୟମାନ ତ୍ରିତଳ ପ୍ରାସାଦ ନିର୍ମାଣ କରିଛୁଁ । ପୂର୍ବତନ ଅଧକ୍ଷ ଡଃ ଦେବେନ୍ଦ୍ର ନାଥ ରାଉତଙ୍କ ଅକ୍ଲାନ୍ତ ଉଦ୍ୟମ ଓ ବାଲେଶ୍ୱର ସାଂସଦ ଶ୍ରଦ୍ଧେୟ ଖାରବେଳ ବାବୁଙ୍କ ପୁନର୍ବାର ସହାୟତା ଯୋଗୁଁ 'ବିଜ୍ଞାନ ଭବନ', 'ଉତତ୍ତରାୟଣ ମଞ୍ଚ' ନାମକ ସ୍ଥାୟୀ ପେଣ୍ଡାଲ ନିର୍ମାଣ ସମ୍ଭବ ହୋଇପାରିଛି । ପୁରାତନ ଛାତ୍ରଭାବେ ଫକୀରମୋହନ କଲେଜର ସାମୂହିକ ବିକାଶରେ ସେତୁବନ୍ଧ ନିର୍ମାଣରେ ଗୁଣ୍ଡୁଚି, ମୂଷା ସାହାଯ୍ୟ କଲାପରି ମୁଁ ଯତ୍ କିଞ୍ଚିତ ସାହାଯ୍ୟ କରି ନିଜକୁ ଗୌରବାନ୍ୱିତ ମନେ କରୁଛି ।

• ଅବସରପ୍ରାପ୍ତ ପ୍ରାଧ୍ୟାପକ ଓ ବିଭାଗୀୟ ମୁଖ୍ୟ
ଫକୀରମୋହନ କଲେଜ,
ଗୋପାଳ ଗାଁ, ବାଲେଶ୍ୱର-୧

# ନିଚ୍ଛକ ଅନୁଭବର କଥା କେତୋଟି

## ଡକ୍ଟର ରମାକାନ୍ତ ନାୟକ

ଇତିହାସ ଲେଖିବାପାଇଁ ଗୋଟିଏ ଶତାବ୍ଦୀ ମାପକାଠି ଥିଲା । କ୍ରମେ ତାହା ଗୋଟିଏ ଦଶନ୍ଧି, ଦଶନ୍ଧିରୁ ଗୋଟିଏ ବର୍ଷ । ଅଧୁନା ପ୍ରତିଦିନର ଇତିହାସ । ଭବିଷ୍ୟତ ଆଡ଼କୁ ଆମର ଯାତ୍ରା ଏତେ ଦ୍ରୁତ ହୋଇଯାଉଛି ଯେ, ବର୍ତ୍ତମାନ ସେହି ପରିମାଣରେ ସୀମିତ ହୋଇଯାଉଛି । ଅତୀତ ହେଉଛି କାଳାତୀତ । ଯେତେ ଅଳଂକୃତ ହେଲେବି ଜୀବନର ବାହ୍ୟ-ବିଭବ, ସମୟର ଏହି ଦୁରନ୍ତ ଯାତ୍ରା ଭିତରେ ବୈଚିତ୍ର୍ୟ ହରେଇ ବସୁଛି । ଘଟଣା ଯେତେ ସରଳ ହୋଇ ଘଟିଥିଲେ ବି ଅନୁଭବ ବେଳକୁ ବେଳ ଜଟିଳ ହୋଇ ଯାଉଛି । ଗୋଟିଏ ଦିଗ କାହିଁକି ଦଶଦିଗ ରଙ୍ଗହୀନ ହୋଇ ଯାଉଛି । ଇତିହାସ ପାଇଁ ସତ୍ୟପାଠ ଆବଶ୍ୟକ ପଡୁଛି । ବ୍ୟାପାରିକତାର ମୋହଗ୍ରସ୍ତ ଜୀବନ ପାଇଁ ଏହାହିଁ ସବୁଠୁଁ ବଳି ଦୁଃସମ୍ବାଦ ।

'ସୁବର୍ଣ୍ଣଜୟନ୍ତୀ' ପାଳିବାର ଦଶ ବର୍ଷ ସରିନାହିଁ, ଫକୀରମୋହନ କଲେଜର 'ହୀରକ ଜୟନ୍ତୀ' । ୧୯୯୫ ଜାନୁୟାରୀ ୧୫ରୁ ୨୦୦୪ ମାର୍ଚ୍ଚ ୨୧ କେତେବାଟ ? ଭୌତିକ ବିକାଶର ଲମ୍ବା ତାଲିକା ଭିତରେ ଯେମିତି ସଂପର୍କ, ଶ୍ରଦ୍ଧା, ଭଲ ପାଇବାର ଶରଧାବାଲି ଆମର ଶ୍ରୀହୀନ ହୋଇ ପଡ଼ିଛି । ତଥାପି ବାଟ- ଚଲାତ ସରୁନାହିଁ ! ସମୟକୁ ସ୍ୱୀକାର କରିବାକୁ ପଡୁଛି । ସ୍ୱହାତରେ ସମ୍ପାଦି ଥିବା ଅନୁଷ୍ଠାନର କଥା କେତୋଟି ମୋର ପୂଜ୍ୟ, ଅଗ୍ରଜ, କନିଷ୍ଠ ସମସ୍ତ ଭାଇଭଉଣୀଙ୍କ ହାତକୁ ବଢ଼େଇ ଦେଉଛି; ଅବିଶ୍ୱସ୍ତ ସମୟରେ ସତ୍ୟପାଠ ସଦୃଶ ।

### ଅତିଥି :

ତା ୧୬.୧.୧୯୯୫ ରିଖ । ରାତି ନଅଟା । ଫକୀରମୋହନ କଲେଜ 'ଉତ୍ତରାୟଣ' ରେ ସଭା ଶେଷ ହେଲା । କଲେଜର ସୁବର୍ଣ୍ଣ ଜୟନ୍ତୀ ଉତ୍ସବ ଶେଷ ହେବାକୁ ଆଉ ଗୋଟିଏ ଦିନ ବାକି । କଲେଜ ଆଲମ୍‌ନି ଆସୋସିଏସନ (ପୁରାତନ ଛାତ୍ର ସଂସଦ)ର ଦ୍ୱିତୀୟ ଦିନର ଉତ୍ସବ ଥିଲା ସେଦିନ । ଇସ୍ରାଏଲର ରାଷ୍ଟ୍ରଦୂତ ଏଫ୍ରାଏମ୍ ଡୋବ୍, ଡଃ ମନ୍ମଥ ନାଥ ଦାସ, ପ୍ରାକ୍ତନ ସାଂସଦ ଶ୍ୟାମସୁନ୍ଦର ମହାପାତ୍ର ଆଦି ସେଦିନର ଅତିଥି । ସେମାନଙ୍କ ସହିତ ଦର୍ଶକ ମଞ୍ଚରୁ ଫେରୁଥିଲେ ଏଭୂଇଁର ବରପୁତ୍ର, ପ୍ରଖ୍ୟାତ କଥାକାର, ସାଧକ ମନୋଜ ଦାସ । ସମବେତ ଶ୍ରୋତା ଧୀରେଧୀରେ ସ୍ଥାନ ତ୍ୟାଗ କରୁଥାନ୍ତି । ରାଉରକେଲା, ବ୍ରହ୍ମପୁର, ଭୁବନେଶ୍ୱର, କଟକ, ସମ୍ବଲପୁର ଆଦିରୁ ଆସିଥିବା ବ୍ୟକ୍ତିମାନେ ମନୋଜ ଦାସଙ୍କ ପ୍ରଥମ ଦିନର ସଭାରେ ଯୋଗ ଦେଇ ତଥାପି ରହିଯାଇଥିଲେ ଦ୍ୱିତୀୟ ଦିନକୁ । ଗେଟ୍ ଆଡ଼କୁ ଧୀରେଧୀରେ ମନୋଜ ଦାସ ଅତିଥିମାନଙ୍କ ଗହଣରେ ଅଗ୍ରସର ହେଉଥିଲେ । ପଛେପଛେ ଅନ୍ୟମାନେ । ଚାଟାର୍ଡ଼ ଆକାଉଣ୍ଟାଣ୍ଟ ମାଧବାନନ୍ଦ ଦାସଙ୍କ ଗାଡ଼ି ଠିଆ ହୋଇଛି; ଭୁବନେଶ୍ୱରରୁ ଶ୍ରୀଯୁକ୍ତ ଦାସଙ୍କୁ ଘେନି ଆସିଥିଲା; ତାଙ୍କୁ ଓ ତାଙ୍କର ବଡ଼ଭାଇ ଡଃ ମନ୍ମଥନାଥ ଦାସଙ୍କୁ ନେଇ ଫେରିଯିବ । ସେ ପାଖରେ ରାଷ୍ଟ୍ରଦୂତଙ୍କୁ ଧରି ଶ୍ୟାମବାବୁ ଫେରିବେ ଭୁବନେଶ୍ୱର । ସଂସଦର ସଭାପତି ସ୍ୱର୍ଗତଃ ପ୍ରଫେସର ପ୍ରଫୁଲ୍ଲ କୁମାର ରଥ, ଅଧକ୍ଷ ପ୍ରଫେସର ଗୋପାଳ ଘୋଷ, ବ୍ରଜବାବୁ ଓ ଅନ୍ୟମାନଙ୍କ ସହିତ ମନୋଜବାବୁଙ୍କୁ ବିଦାୟ ଦେବାପାଇଁ ଏକତ୍ର ହୋଇଥିଲେ । ମନୋଜ ବାବୁ ଗାଡ଼ି ଭିତରକୁ ଯିବା ପୂର୍ବରୁ ତାଙ୍କର ପାଦଧୂଳି ନେଲି । ନିଜ ଆଡ଼କୁ ଟାଣିନେଇ ମୁଣ୍ଡରେ ହାତ ବୁଲେଇ ଆଣି ହସିହସି କହିଲେ-''ସଂପାଦକ, ଚମତ୍କାର ଉତ୍ସବ କଲ ।''

ବିନୟାବନତ ହୋଇ କହିଲି - ''ଆପଣମାନଙ୍କର ଆଶୀର୍ବାଦ;'' ହସି ହସି ଶ୍ରୀଯୁକ୍ତ ଦାସ ପୁଣି କହିଲେ -'ପ୍ରତ୍ୟେକ ଭଲକାମ ଏମିତି ହୁଏ । ନୋହିଲେ ଗୋଟିଏ ଦିନ ପାଇଁ ଆସି ଦୁଇଦିନ କେମିତି ରହିହେଲା ? ପ୍ରତି କାମରେ ଆପଣମାନଙ୍କର ତତ୍‌ପରତା ଆଉ ଆତିଥ୍ୟ, ଚମତ୍କାର ।'

ପଣ୍ଡିଚେରୀରୁ ବିମାନ ଭଡ଼ା ନିଜ ହାତରୁ ଦେଇ ମନୋଜ ବାବୁ ଭୁବନେଶ୍ୱର ଯାଏ ଆସିଥିଲେ । ସେଠାରୁ ତାଙ୍କର ପ୍ରଶଂସକ, ବନ୍ଧୁ ମାଧବାନନ୍ଦ ବାବୁ ସ୍ୱଯାନରେ ବାଲେଶ୍ୱର ଘେନି ଆସିଥିଲେ । ତାଙ୍କ ରହିବା ପାଇଁ ବାଲେଶ୍ୱର ଜନମଙ୍ଗଳ ବିଭାଗ (P.W.D.) ଅତିଥି ଭବନ ଠିକ୍ ହୋଇଥିଲା ଗୋଟିଏ ଦିନ ପାଇଁ । ସେ ଶୁଣିଲେ ଦ୍ୱିତୀୟ ଦିନର ଅତିଥି ତାଙ୍କର ବଡ଼ଭାଇ ଡଃ ମନ୍ମଥନାଥ ଦାସ । ମୋତେ ପାଖକୁ ଡାକି ପ୍ରଥମ ଦିନ ସଭା ଶେଷରେ କହିଲେ ''ଡଃ ନାୟକ, କାଲିର ଅତିଥି ମୋର ବଡ଼ଭାଇ । ପୁଣି ଏତେ ମାନ୍ୟଗଣ୍ୟ ବ୍ୟକ୍ତି ଆସୁଛନ୍ତି । ମୁଁ କେମିତି ଛାଡ଼ି ଚାଲିଯାଇ ପାରିବି ?'' ଉତ୍ତର ଦେଲି-''ସେ ଆମର ଭାଗ୍ୟ,ସାର୍ ! ଦ୍ୱିତୀୟ ଦିନ ଉତ୍ସବକୁ ଆପଣ ପୁଣି ଆମ ଗହଣରେ ରହିବେ !''

ଡଃ ମନ୍ମଥନାଥ ଦାସ ।ସୁବର୍ଣ୍ଣ ସ୍ମାରକୀ ପାଇଁ ଅନୁଭବୀ ଲେଖାଟିଏ ଦେବାକୁ ଓ ଦ୍ୱିତୀୟ ଦିନର ସମ୍ମାନିତ ଅତିଥି ହେବାପାଇଁ ପ୍ରସ୍ତାବଦେବାକୁ ୧୯୯୪ ନଭେମ୍ବରର ଏକ ଶୀତଳ ଅପରାହ୍ନରେ ଆମେ (ବ୍ରଜବାବୁ, ଡଃ ପ୍ରହ୍ଲାଦ ଚରଣ ମହାନ୍ତି ଓ ମୁଁ ) ତାଙ୍କ ସତ୍ୟନଗର (ଭୁବନେଶ୍ୱର) ବାସ ଭବନକୁ ଉଠିଥିଲୁ । ବହୁ ବଡ଼ ବ୍ୟକ୍ତିତ୍ୱ । ବ୍ରଜବାବୁ ବି ସଂକୁଚିତ, ଅନୁଭବ କଲି । କିନ୍ତୁ ଦେଖିଲି ଅଧ୍ୟାପକ ଭାବେ ତାଙ୍କ ପ୍ରଥମ ଅନୁଭୂତିର ଦିନଗୁଡ଼ିକୁ ସେ ଯେମିତି ପ୍ରାଣଭରି ଭଲ ପା'ନ୍ତି । ତଥାପି ସତେଜ କରି ରଖିଛନ୍ତି ସ୍ମୃତିଗୁଡ଼ିକୁ, ଆଉ ସେଥିପାଇଁ ପ୍ରସ୍ତାବ ମାତ୍ରେ ସ୍ୱୀକାର କରିନେଲେ । ବାଲେଶ୍ୱର ଯାତ୍ରାର ବ୍ୟବସ୍ଥା ପାଇଁ ପଚାରିଲି । ଏକ ସଳଖ ଉତ୍ତର 'ମୁଁ ବସ୍‌ରେ ଯିବି । ବସ୍ ପାଖକୁ ଜଣକୁ ପଠେଇ ଦେଇଥିବ ।' ସେ ଯେଉଁ ବିଶାଳ ବ୍ୟକ୍ତିତ୍ୱ ସେଠି ଏପାଖ ସେପାଖ ହେବନାହିଁ । ଉତ୍ସବ ଦିନ ଷ୍ଟେସନ ଛକରେ ନିର୍ଦ୍ଦିଷ୍ଟ ବସ୍‌କୁ ଅପେକ୍ଷା କରିଥିଲି । ବାର୍ଦ୍ଧକ୍ୟ ଆନତ, ଚାଲିବାରେ, ବସିବାରେ କଷ୍ଟ ଅନୁଭବ କରୁଥିବା, ଆମ ଅଧ୍ୟାପକମାନଙ୍କର କୁଳବୃଦ୍ଧ, କୁଳପତି, ସୁପ୍ରସିଦ୍ଧ ଐତିହାସିକ ଡଃ ମନ୍ମଥ ନାଥ ଦାସ ବସ୍‌ରୁ ଓହ୍ଲେଇଲେ, ତା ୧୬.୧.୯୫ରିଖ ଅପରାହ୍ନ ପ୍ରାୟ ଚାରିଟା ସମୟରେ । ନମସ୍କାର କଲି, ହାତ ବେଗଟା ନେଇଯିବାପାଇଁ ମାଗିଲି । ସିଧା 'ନା'ଟେ ଶୁଣିଲି । ବସ୍‌ଠାରୁ ଗାଡ଼ିରେ ନଯାଇ ଚାଲିଚାଲି ଜନମଙ୍ଗଳ ଡାକବଙ୍ଗଳା, ଯେଉଁଠି ଅପେକ୍ଷା କରିଛନ୍ତି ତାଙ୍କର କନିଷ୍ଠ ଶ୍ରୀଯୁକ୍ତ ମନୋଜ ଦାସ । ମୋ ଛାତିରୁ ଉଠି ଆସୁଥିବା ଆନନ୍ଦର ଉଚ୍ଛ୍ୱାସଟି ସେଇଠାରେ ଅଶ୍ରୁରୂପେ ଝରିଗଲା, ମୋ' ସାମ୍ନାରେ ଦୀର୍ଘ ଦିନ ପରେ ମହାନ୍ ସେ ଦୁଇଭାଇ ଯେତେବେଳେ ପରସ୍ପରକୁ ଶଂଖୋଳିନେଲେ । ଅପୂର୍ବ ସେ ଦୃଶ୍ୟ । ମୋ ଭାଗ୍ୟକୁ ତାରିଫ୍ କଲି ।

ଇସ୍ରାଏଲ ରାଷ୍ଟ୍ରଦୂତ ଦ୍ୱିତୀୟ ଦିନ ସଭାରେ ଆମର ମୁଖ୍ୟ ଅତିଥି । ଏକାର୍ଯ୍ୟ ଯେ କେମିତି ସମ୍ଭବ ହେଲା ମୁଁ କହି ପାରିବି ନାହିଁ । ପାରିବାରିକ ସଂପର୍କ ସୂତ୍ରରେ ପ୍ରଫେସର ରଥ ସାଂସଦ ଶ୍ୟାମସୁନ୍ଦର ମହାପାତ୍ରଙ୍କ ସହ ପରିଚୟ କରାଇ ଦେଇଥିଲେ । ନୂଆଦିଲ୍ଲୀ ଫୋନ୍‌ରେ ଯୋଗାଯୋଗ କଲାବେଳେ ଆପଣାଛାଏଁ ସେ ପ୍ରସ୍ତାବ ରଖିଲେ, ତାଙ୍କୁ ମୁଖ୍ୟ ଅତିଥି କରିବାପାଇଁ । ସେ ଦିଗରେ ଖର୍ଚ୍ଚଭାର ସମ୍ଭାଳିବାକୁ ଆମେ ଯେ ଅକ୍ଷମ, କହିଲି । ଶ୍ୟାମବାବୁ କହିଲେ -ରାଷ୍ଟ୍ରଦୂତ ତାଙ୍କ ଖର୍ଚ୍ଚରେ ବିମାନରେ ଆସିବେ । ଶୀତତାପନିୟନ୍ତ୍ରିତ ଯାନରେ ଭୁବନେଶ୍ୱର ନେଇଆଣିବା ଦାୟିତ୍ୱ ତାଙ୍କର ।'' ସେ ହେବେ ଶ୍ୟାମସୁନ୍ଦର ବାବୁଙ୍କର ବ୍ୟକ୍ତିଗତ ଅତିଥି । କି ଚମତ୍କାର ସଦିଚ୍ଛା । ଭଗବାନଙ୍କ ଠାରେ ଅନ୍ତରରୁ କୃତଜ୍ଞତା ଜଣେଇଲି । ସବୁ ତାଙ୍କରି ଇଚ୍ଛା । ମୁଁ ନିମିତ୍ତ ମାତ୍ର ।

ମୁଁ ଦେଖୁଛି, ସେ ଦୁଇଦିନ ଯାକ ବାଲେଶ୍ୱର ସହରରେ ଯେମିତି କିଏ ନବ ଉନ୍ମାଦନା ଖେଳେଇ ଦେଇଛି । ବାଲେଶ୍ୱରବାସୀଙ୍କର ଅତି ପ୍ରିୟ ମନୋଜ ବାବୁ ବାଲେଶ୍ୱରରେ ଦୁଇଦିନ ଧରି ଅଛନ୍ତି । ପୁଣି

ଅଦିନେ ବସନ୍ତ ପରି ଇସ୍ରାଏଲର ରାଷ୍ଟ୍ରଦୂତଙ୍କୁ ନେଇ ଏକ ଉନ୍ମାଦକର ଉତ୍ସବ ପୁରାତନ ଛାତ୍ରମାନଙ୍କର । ଉତ୍ତରାୟଣରେ ପାଞ୍ଚହଜାର ଦର୍ଶକଙ୍କ ଭିଡ଼ । ଏ ଧରଣର ଅପୂର୍ବ ସମାବେଶରେ ଯେଉଁମାନେ ଯୋଗ ଦେଇଛନ୍ତି ସମସ୍ତେ ଅନୁଭବ କରିଛନ୍ତି ଫକୀରମୋହନ କଲେଜର ଗୌରବୋଜ୍ଜ୍ୱଳ ଇତିହାସ । ତାର ତୁଳନା ନାହିଁ ।

## ପୁରାତନ ଛାତ୍ର-ସଂସଦ :

୨୦୦୧, ଡିସେମ୍ବର କୌଣସି ଏକ ସଂଧ୍ୟା, ମନେନାହିଁ । ଶ୍ରୀମତୀଙ୍କ ସହ ମୋତିଗଞ୍ଜ ବଜାର ଭିତରେ ସ୍କୁଟରରେ ଗଲାବେଳେ ପ୍ରଫେସର ଗୋପାଳ ଘୋଷଙ୍କୁ ଭେଟିଥିଲି । ଉଚ୍ଚଶିକ୍ଷା ନିର୍ଦ୍ଦେଶକ ହୋଇ ଅବସର ନେଲେଣି । ଶାରୀରିକ ଅବସ୍ଥା ପାଇଁ ଔଷଧ ଖାଇଖାଇ ନାନା ପ୍ରତିକ୍ରିୟା ଭୋଗୁଛନ୍ତି । ସେ ସୌମ୍ୟ ଚେହେରା ନାହିଁ । ଆଳାପରେ ଏକାକିତ୍ୱ ବେଶି ପ୍ରକାଶ ପାଇଛି । ଆସିଛନ୍ତି ବାଲେଶ୍ୱରରେ ସ୍ଥାନିତ ଡଃ ମୀରା ପତିଙ୍କ ଘରକୁ । ସମ୍ପର୍କୀୟା । ସାର୍‌ଙ୍କୁ ଦେଖି ଯେତେ ଆନନ୍ଦ ନ ଲାଗିଲା, ଲାଗିଲା ସେତେ ଦୁଃଖ, ତାଙ୍କ ଶାରୀରିକ ଅବସ୍ଥା ଦେଖି । ଏଇ ସେ ବ୍ୟକ୍ତି । ଅଧକ୍ଷ ଥିଲାବେଳେ ଫକୀରମୋହନ କଲେଜର ପୁରାତନ ଛାତ୍ର ସଂସଦ ଗଠନ କରିବାର ପରିକଳ୍ପନା କରିଥିଲେ ସୂବର୍ଣ୍ଣ ଜୟନ୍ତୀ ଆନୁକୂଲ୍ୟରେ । ତାଙ୍କର ପ୍ରେମ, ସଦିଚ୍ଛା ଓ ଭଲ ପାଇବା ମୋ ଅନ୍ତରରେ ତଥାପି ସତେଜ ଅଛି । କାରଣ ଯେଉଁ ଦୁରୁହ କାର୍ଯ୍ୟଭାର ସେ ଅର୍ପଣ କରିଥିଲେ ତାକୁ ନିଷ୍ଠାର ସହିତ ସଂପନ୍ନ କରିଛି । ଏକ ବିରାଟ ସଫଳତାର ମୂଳ ଉତ୍ସକୁ ଭୁଲି ହେବ କେମିତି ? ଆବାହକ ଭାବେ ଅନୁଷ୍ଠାନ ଗଢ଼ିବାକୁ ପୁରାତନ ଛାତ୍ରମାନଙ୍କ ଠିକଣା ଠାବ କରି ପତ୍ରାଳାପ କେମିତି କରିବି ଧନ୍ଦି ହେଉଥିବା ବେଳେ ସମ୍ବାଦପତ୍ର ଓ ପ୍ରଚାରପତ୍ର ବାଟରେ ସୁବର୍ଣ୍ଣ ଜୟନ୍ତୀ ବିଷୟରେ ପୁରାତନ ଛାତ୍ରମାନଙ୍କ ପାଖରେ ସମ୍ବାଦ ପହଞ୍ଚେଇ ଦେବାପାଇଁ ସେ ହିଁ ପ୍ରସ୍ତାବ ଦେଇଥିଲେ । ମାତ୍ର ସଇଁତ୍ରିଶ ଜଣ ସମଭାବାପନ୍ନ ପୁରାତନ ଛାତ୍ରଙ୍କୁ ଏକତ୍ର କରି ସଂସଦ ଗଠନ କରିଥିଲି, ଜୁଲାଇ ସତର ତାରିଖ ୧୯୯୪ ମସିହାରେ । ସ୍ଥାନୀୟ, ସମସ୍ତଙ୍କର ପ୍ରିୟ ପ୍ରଫେସର ପ୍ରଫୁଲ୍ଲ କୁମାର ରଥଙ୍କୁ ସଭାପତି କରାଗଲା, ଉଦଯୋଗୀ ହିମାଂଶୁ ଦାସ, ଓରିପ୍ଲାଷ୍ଟର ପରିଚାଳକ, ଉପସଭାପତି, ଆବାହକ ସଂପାଦକ ସ୍ୱଂୟ ଡଃ ରମାକାନ୍ତ ନାୟକ, ସହ-ସଂପାଦକ ନିରଂଜନ ରାଉତ (ପୋଷ୍ଟ ମାଷ୍ଟର) ଓ ଅଧ୍ୟାପକ ପ୍ରଦୀପ କୁମାର ନାୟକ; କୋଷାଧକ୍ଷ ଅଧ୍ୟାପକ ସୁବାସ ଚନ୍ଦ୍ର ପାତ୍ର । ନଭେମ୍ବର ପର୍ଯ୍ୟନ୍ତ କାର୍ଯ୍ୟକ୍ରମର ଅସ୍ପଷ୍ଟ ଚିତ୍ର ମୋ ଆଖି ଆଗରେ । କେହି କାର୍ଯ୍ୟରେ ସେପରି କୌଣସି ସହଯୋଗ କଲାପରି ଲାଗୁନାହାନ୍ତି । ଦେଶ, ବିଦେଶ, ଭୁବନେଶ୍ୱର, ବ୍ରହ୍ମପୁର ଇତ୍ୟାଦି ନାନା ଦିଗକୁ ଚିଠି ଯାଉଛି । ଉତ୍ତର ଆସିବ । ଅର୍ଥର ବ୍ୟବସ୍ଥା ହେବ । ପ୍ରାୟ ତିନି ଲକ୍ଷ ଟଙ୍କାର ଯୋଜନା । ମୁଁ ଅସହାୟ । ରାତିଦିନ ଖାଲି ମୁଁ ଘୂରି ହେଉଛି । ସ୍ୱପ୍ନ ଦେଖୁଛି, ସଭାପତିଙ୍କୁ ଗାଳି କରୁଛି, 'ଆପଣ କିଛି ବୁଝୁନାହାନ୍ତି' କହି ।

କବି ବ୍ରଜନାଥ ରଥ ବୟସକୁ ଖାତିର ନ କରି ସହଯୋଗ କରୁଥାନ୍ତି । 'ସୁବର୍ଣ୍ଣ ସ୍ମାରକୀ' ପ୍ରକାଶନର ଦାୟିତ୍ୱ ତାଙ୍କ ଉପରେ ନ୍ୟସ୍ତ । କିନ୍ତୁ ଅର୍ଥବ୍ୟବସ୍ଥା ନ ହୋଇ ପାରିଲେ ପ୍ରାୟ ତିନ ଶତ ପୃଷ୍ଠାର ସେ ପ୍ରକାଶନ କେମିତି ସମ୍ଭବ ହେବ ? ସେ ଦିଗରେ ବିଜ୍ଞାପନ ସଂଗ୍ରହ କରିବା କ'ଣ ସହଜ କଥା ? ଏ ଦିଗରେ ମୁଁ ଯେ ନୂଆ ! ଆଜିର ବ୍ୟାପାରିକ ଯୁଗରେ ବିଜ୍ଞାପନ କିପରି ସଂଗ୍ରହ ହୁଏ ସମସ୍ତେ ଜାଣନ୍ତି । ସଦିଚ୍ଛା ବାଟରେ ଏ କାର୍ଯ୍ୟ କ'ଣ ଏତେ ସହଜ ? ବ୍ରଜବାବୁ ଉତ୍ସାହ ଦିଅନ୍ତି । କଟକ ଭୁବନେଶ୍ୱର ବୁଲି ବୁଲି ସଭ୍ୟସଂଗ୍ରହ, ବିଜ୍ଞାପନ ସଂଗ୍ରହ ଓ ସଦିଚ୍ଛା ସଂଗ୍ରହ ଦିଗରେ ସେ କାର୍ପଣ୍ୟ କରି ନାହାନ୍ତି । ବୟସ ଭାରକୁ ଖାତିର ନ କରି ସେ ଓ ମୋର ଶିକ୍ଷକ ଡଃ ପ୍ରହ୍ଲାଦ ଚରଣ ମହାନ୍ତି ମୋ' ସହିତ ନାନା ଜାଗା ବୁଲିଛନ୍ତି । ଫକୀରମୋହନ କଲେଜର ପୁରାତନ ଛାତ୍ର ଭାବନାକୁ ସମସ୍ତଙ୍କ ଭିତରେ ଜାଗ୍ରତ କରିଛନ୍ତି ।

ମନ୍ତ୍ରୀ,ନେତା, ଆଇ.ଏ.ଏସ୍., ଓ.ଏ.ଏସ୍. ଅଫିସର, ଚିଫ ଇଞ୍ଜିନିୟର, ଡକ୍ଟର, ଅଧ୍ୟାପକ, ଶିକ୍ଷକ, କୃଷକ ସବୁ ସଂପ୍ରଦାୟର ଛାତ୍ରଛାତ୍ରୀଙ୍କ ଭିତରେ ସେହି ସ୍ମୃତି ଜାଗ୍ରତ କିରବା ପାଇଁ ଏକ ନିରବଚ୍ଛିନ୍ନ ଉଦ୍ୟମ ଦୀର୍ଘ ଏକ ବର୍ଷ ଧରି ହୋଇଛି । ପ୍ରାୟ ଏକ ହଜାର ସଭ୍ୟ ସଂଗ୍ରହ କରାଯାଇଛି । ପରିଚୟ ଗ୍ରନ୍ଥ ଛାପା ଯିବାର ବ୍ୟବସ୍ଥା କରାଯାଇଛି । କିନ୍ତୁ ମୂଳ ଲକ୍ଷ୍ୟ ସୁବର୍ଣ୍ଣ ଜୟନ୍ତୀ ସମାରୋହ । ଯୋଜନା ଅନେକ, ମାତ୍ର ଅର୍ଥ ? କୌଣସି ମହତ କାର୍ଯ୍ୟପାଇଁ ଅର୍ଥର ଅଭାବ ରହେନାହିଁ । ଭଗବାନଙ୍କର ଦୂତ ସାଜି ଯେ ଏ ମହା-ସମାରୋହର ସେଇ ଦିଗକୁ ସମ୍ଭାଳି ନେଇଥିଲେ ସେ ହେଲେ ଓରିପ୍ଲାଷ୍ଟର ପରିଚାଳକ ହିମାଂଶୁ ଦାସ । ସେଇଦିନ କଲେଜକୁ ଫୋନ କରି ଜଣାଇ ଦେଲେ ବିରଳା ପାଞ୍ଚ ହଜାର ଟଙ୍କାର, ଇମାମୀ କାଗଜ ବଦଳରେ ବିଜ୍ଞାପନ, ଓରିପ୍ଲାଷ୍ଟର କଭର (ବେକ୍) ବିଜ୍ଞାପନ ବ୍ୟବସ୍ଥା ହୋଇଯାଇଛି ।

ସୁବର୍ଣ୍ଣ ସ୍ମାରକୀର ସଂପାଦକ ବ୍ରଜନାଥ ରଥ ବେଶ ପ୍ରବୀଣ । ଭାବ ପ୍ରବଣତାରେ ଭାସିବା ଲୋକ ନୁହନ୍ତି । ସେ ଆଦୌ କୌଣସି କଥାକୁ କର୍ଣ୍ଣପାତ ନକରି 'ସୁବର୍ଣ୍ଣ ସ୍ମାରକୀ'ର ଏକ ସଂକ୍ଷିପ୍ତ ରୂପ ପ୍ରଥମ ଦିନ ଉତ୍ସବରେ ଉନ୍ମୋଚିତ ହେବ ବୋଲି କହିଲେ । କହିଲେ, ପରେ ସଂପୂର୍ଣ୍ଣ ବାହାରିବ । ସମସ୍ତେ ହଁ ଭରିଲେ । ପରେ ସଂପୂର୍ଣ୍ଣ ବାହାରିଲା ଓ ସମସ୍ତଙ୍କ ପାଖକୁ ପଠେଇ ଦିଆଗଲା । ସେତେବେଳେ ମୋର ସ୍ମରଣକୁ ଆସିଲା ଏପରି ହେଲା କାହିଁକି ? କାଳେ ଅର୍ଥ ବ୍ୟବସ୍ଥା ନହୋଇ ପାରିବ, ସେହି ସନ୍ଦେହରେ ବ୍ରଜବାବୁ ଅଟକି ଗଲେ କି ? ସନ୍ଦେହ ମୋଚନ ହେବାପରେ ସେ କାର୍ଯ୍ୟ ପୂର୍ଣ୍ଣ କଲେ ।

ନିଜ ଉଦ୍ୟମରେ ସ୍ୱବଂଧୁ ଓ ପୁରାତନ ଛାତ୍ରମାନଙ୍କୁ ବାଛିବାଛି ସେ କଲେଜ ଜୀବନର ଅନୁଭୂତି ସଂଗ୍ରହ କରି 'ସୁବର୍ଣ୍ଣ ସ୍ମାରକୀ'କୁ ମଣ୍ଡନ କରିଛନ୍ତି । ଏ କାର୍ଯ୍ୟରେ କେହି ତାଙ୍କୁ ସହଯୋଗ କରିଛନ୍ତି ବୋଲି ମନେ ହୁଏ ନାହିଁ । କଟକ 'ପ୍ରଜାତନ୍ତ୍ର ପ୍ରେସ'ରେ ମୁଦ୍ରଣ ଅସିତ୍ ମହାନ୍ତିଙ୍କ ଦ୍ୱାରା ସେ କରେଇ ଥିଲେ । ନିଜେ ଭ୍ରମ ସଂଶୋଧନ କରିଥିଲେ । ହାତରୁ ଯିବା ଆସିବାର ଖର୍ଚ୍ଚ ମୁଣ୍ଡେଇଥିଲେ ।

ଉତ୍ସବ ଆନନ୍ଦରେ ସରିଲା । ଦ୍ୱିତୀୟ ବର୍ଷ ବି ଜାକଜମକରେ ଆମେ ମିଳିତ ହେଲୁ । 'ପ୍ରାକ୍ତନିକା' ପ୍ରକାଶ ପାଇଲା, ପରିଚୟ ଗ୍ରନ୍ଥ ବି ବାହାରି ଆସିଥିଲା । ପାଞ୍ଚଜଣରୁ ତେତିଶ୍ ଜଣ ପର୍ଯ୍ୟନ୍ତ ଛାତ୍ରଛାତ୍ରୀ ପୁରାତନ ଛାତ୍ର ସଂସଦର ବାର୍ଷିକ ଉତ୍ସବରେ ପୁରସ୍କୃତ ହେଲେ । ସଂସଦ ପଞ୍ଜୀକୃତ ହେଲା । ଦୁଇବର୍ଷ ପରେ ସଂସଦର ନିୟମ ଅନୁଯାୟୀ ପୁଣି ନିର୍ବାଚନ ହେଲା । ପୁଣି ଜୋରକରି ଦାୟିତ୍ୱ ଦିଆଗଲା -ବର୍ଷବର୍ଷ କରି ପାଞ୍ଚ ବର୍ଷ । ସୁବର୍ଣ୍ଣ ଜୟନ୍ତୀ ଉତ୍ସବ ପରିପ୍ରେକ୍ଷୀରେ 'ଫକୀରମୋହନ ସ୍ମୃତି ସମ୍ମାନ' ପ୍ରତିଷ୍ଠା କରିବା ଲକ୍ଷ୍ୟ ସଫଳ ହେଲାନାହିଁ । ଏକ ସ୍ମୃତିସୌଧ କଲେଜକୁ ଭେଟି ଦେବାର ସ୍ୱପ୍ନ ଦେଖା ଯାଇଥିଲା । କିନ୍ତୁ ଉତ୍ସବ ପରେ ଆମ ହାତରେ ମାତ୍ର ପଚିଶ ହଜାର ଟଙ୍କା । ସେ ବିଷୟରେ ଆଉ କେହି କଥା ଉଠେଇଲେ ନାହିଁ ।

ମାତ୍ର ସମସ୍ତ ମହତ୍ କାମ ତା ବାଟରେ ହୁଏ । ବ୍ୟକ୍ତି ନିମିତ୍ତ ହୋଇଯାଏ । ଓଡ଼ିଆ ବିଭାଗର ମୁଖ୍ୟ ଡଃ ଭାଗୀରଥି ନାୟକ ବଦଳି ହୋଇ ଆସିଲେ । ଯୋଗାଯୋଗର ଅବହେଳା ଯୋଗୁଁ ତାଙ୍କୁ ସୁବର୍ଣ୍ଣ ଜୟନ୍ତୀର ମୁଖ୍ୟ ସ୍ରୋତରେ ମିଶାଇ ପାରିନଥିଲି । କିନ୍ତୁ ନିକଟକୁ ଆସିବା ପରେ ତାଙ୍କ ଆଖିରେ ଆମର ଉଦ୍ୟମ ସ୍ପଷ୍ଟ ହୋଇଯାଇଥିଲା । ଅଧ୍ୟକ୍ଷ ସେତେବେଳେ ପ୍ରଫେସର କୃଷ୍ଣକାନ୍ତ ଦାସ ଓ ତାଙ୍କର ବନ୍ଧୁ ଡଃ ନାୟକ ପୁରାତନ ଛାତ୍ର ସଂସଦର କାର୍ଯ୍ୟକାରୀ ସଭ୍ୟ ନହୋଇ ମଧ୍ୟ ସେମାନେ ସେଦିଗରେ ଉଦ୍ୟମ ଆରମ୍ଭ କଲେ । ତତ୍କାଳୀନ ବାଲେଶ୍ୱର ସାଂସଦ କାର୍ତ୍ତିକ ଚନ୍ଦ୍ର ମହାପାତ୍ରଙ୍କୁ ପ୍ରଭାବିତ କରି ଟଙ୍କାର ଯୋଜନା କରାଯାଇ ପାରିବ ବୋଲି ଦୁଇ ବଂଧୁ ସ୍ୱପ୍ନ ଦେଖିଲେ । କିନ୍ତୁ ଲୋକସଭା ଭାଙ୍ଗିଗଲା । ସେ ମହାଶୟ ଗଲେ । ଆସିଲେ ବର୍ତ୍ତମାନର ସାଂସଦ ମହାମେଘ ବାହନ ଐର ଖାରବେଳ ସ୍ୱାଇଁ । ତାଙ୍କୁ କଲେଜକୁ ଅତିଥି କରି ଆଣି 'ସୁବର୍ଣ୍ଣ ସ୍ମାରକୀ ଭବନ'ର ପ୍ରସ୍ତାବ ଦିଆଗଲା । ସେ ସ୍ୱୀକୃତି ଦେଲେ । ଚାରିଲକ୍ଷ ଟଙ୍କା ବ୍ୟବସ୍ଥା

କଲେ । ଇତି ପୂର୍ବରୁ କଲେଜ ଡେଭଲପମେଣ୍ଟ ଫଣ୍ଡରୁ ଅର୍ଥ ବ୍ୟବସ୍ଥା କରି ବୀରଦର୍ପରେ କର୍ମବ୍ୟବସ୍ଥା କରିଦେଲେ ଅଧକ୍ଷ କୃଷ୍ଣକାନ୍ତ ଦାସ । ଭାଗୀରଥି ବାବୁ ରହିଲେ ସାମ୍ନାରେ, ତାଙ୍କୁ ସାହାଯ୍ୟ କଲେ ଜୟନ୍ତ ମହାପାତ୍ର । ବାନରସେନା ହୋଇ ମୁଁ ଆଉ ସୁବାସ ଏବଂ କଲେଜ ସଂଚିତ ଧନକୁ ମୁଖ୍ୟସ୍ରୋତ ପାଇଁ ବ୍ୟବସ୍ଥା କରୁଥିବା ଏକାଉଣ୍ଟାଣ୍ଟ ଲେସଲି ବାବୁ । ପ୍ରଥମ ମହଲା କାର୍ଯ୍ୟ ସରିଗଲା ।

ଟଙ୍କା ଆସୁଚି ଆସୁଚି ଏହି ଉଦ୍ଦୀପନାରେ ଦ୍ୱିତୀୟ ମହଲାର କାର୍ଯ୍ୟ ସରିଗଲା କେବଳ ବାକିରେ । ତିନି ମହଲାର ସ୍ୱପ୍ନ ଆମର । ସାଂସଦଙ୍କ ଟଙ୍କାରୁ ସାମାନ୍ୟ ଉଦ୍‌ବୃତ୍ତ ରହିଲା । ଆମେରିକାରୁ ବାସନ୍ତୀ ଦେ ଚକ୍ରବର୍ତ୍ତୀ ପ୍ରାୟ ତିରିଶ ହଜାର ଟଙ୍କା ପଠେଇଲେ । ଜୟନ୍ତ ବାବୁ ହାତରୁ ଅବଶିଷ୍ଟାଂଶ ଦେଇ ଉପର ମହଲାର କାର୍ଯ୍ୟ ଆରମ୍ଭ କରିଦେଲେ ଏବଂ ତାହା କେମିତି ସାରିଲେ ସେ ହିଁ ଜାଣିଛନ୍ତି । ଶେଷରେ ଦେଖାଗଲା ଯେ ସେ ହାତରୁ ଏକ ଲକ୍ଷ ତିରିଶ ହଜାର ଟଙ୍କା ଦେଇଛନ୍ତି ଓ ତାହାକୁ ମାତୃ-ବନ୍ଦନାରେ ହିଁ ନିୟୋଜିତ କରିଛନ୍ତି ବୋଲି ସେ ଘୋଷଣା କରିଦେଲେ । ଭାଗୀରଥି ବାବୁ ଓ ଅଧକ୍ଷ ଶ୍ରୀଯୁକ୍ତ କୃଷ୍ଣକାନ୍ତ ଦାସ ଝିମିଟି ଖେଳୁଁ ଖେଳୁଁ ସତେ ଯେମିତି ମହାଭାରତ ପରି କୀର୍ତ୍ତି କରି ବସିଲେ ।

'ସୁବର୍ଣ୍ଣ ସ୍ମାରକୀ ଭବନ' ଉଦ୍‌ଘାଟନ ହେବ ସାଂସଦଙ୍କ ଦ୍ୱାରା, ସେଥିପାଇଁ ଆୟୋଜନ । ଅଟ୍ଟାଳିକାର ସବୁ କାର୍ଯ୍ୟ ସରିବ । ହାତରେ କପର୍ଦ୍ଦକ ନାସ୍ତି । ଭାଗୀରଥି ବାବୁଙ୍କ ଅନୁରୋଧ, ଯେମିତି ହେଲେ ଏକାର୍ଯ୍ୟ ସାରିବାକୁ ହେବ । ପୁଣି ଉଦ୍ୟମ । ଅଧକ୍ଷ, ସଂସଦର ସଭାପତି ଓ ଭାଗୀରଥି ବାବୁଙ୍କ ସହ ଓରିପ୍ଲାଷ୍ଟ ଯାତ୍ରା । ସଦୟ ହୋଇ ହିମାଂଶୁ ବାବୁ ଉପର ପାଣି ଟାଂକି, ସମସ୍ତ ପାଇପ୍ ବ୍ୟବସ୍ଥା କଲେ । ବଂଧୁ ଭଗବାନ ଦାସ କିଛି ରଙ୍ଗର ବ୍ୟବସ୍ଥା କଲେ । ଏହିପରି ପୁରାତନ ଛାତ୍ରମାନେ ନିର୍ମାଣ କାଳରେ ଦେଇଥିବା ଲକ୍ଷାଧିକ ଟଙ୍କା କଥା ଭୁଲିଯାଇ ଏ ବେଳରେ ମଧ ସହଯୋଗ କଲେ । ସୁଦୃଶ୍ୟ ସ୍ମାରକୀସୌଧ ଉଦ୍‌ଘାଟିତ ହେଲା । କାଳର କପାଳେ ଏକ ସ୍ମୃତିରେଖା, ଫକୀରମୋହନ କଲେଜର ପୁରାତନ ଛାତ୍ରମାନଙ୍କର ଅମ୍ଳାନ କୀର୍ତ୍ତି । ଆଜି ପୁଣି 'ବିଜ୍ଞାନ ଭବନ' । ତାର ଦୁଇଗୁଣ ଏକ ଚକ୍ଷୁଚମତ୍କାରୀ ଯୋଜନା । ପୁରାତନ ଛାତ୍ର ସଂସଦର କର୍ଣ୍ଣଧାର, ଅଧକ୍ଷ ଡଃ ଦେବେନ୍ଦ୍ର ନାଥ ରାଉତଙ୍କ ଉଦ୍‌ଯୋଗରେ ସେହି ମହାମାନ୍ୟ ସାଂସଦ ଶ୍ରୀଯୁକ୍ତ ଐର ଖାରବେଳ ସ୍ୱାଇଁଙ୍କ ଅନୁଦାନରେ ଉଦ୍‌ଘାଟିତ ହୋଇଛି । ପୁରାତନ ଛାତ୍ର ଭାବନାର ଏ ସବୁ ଅମୃତମୟ ଫଳ । ପୁରାତନ ଛାତ୍ର ସଂସଦର ନିର୍ମାଣାଦି ଯାବତୀୟ କାର୍ଯ୍ୟର ସୂତ୍ରଧାର ଡଃ ଭାଗୀରଥି ନାୟକ । ଅଦ୍‌ଶ୍ୟ ନଟ ଭଳି ସେ ଯାବତୀୟ ଯୋଜନାର ପରିଚାଳନା କରିଛନ୍ତି । କଲେଜର ଶିକ୍ଷକ, ଶିକ୍ଷା କର୍ମଚାରୀ, ପୁରାତନ ଛାତ୍ର ଆଦି ପ୍ରତ୍ୟେକ ବ୍ୟକ୍ତିଙ୍କୁ ସହଯୋଗ ଦେବାପାଇଁ ସେ ହିଁ ସବିନୟ ପ୍ରସ୍ତାବ ଦେଇଛନ୍ତି । ତାହାର ସୁଫଳ ମିଳିଛି । ଜୟନ୍ତ ବାବୁଙ୍କ ସହ ଖରା କାକର ନମାନି ଅକ୍ଳାନ୍ତ ପରିଶ୍ରମ କରି ସେ 'ସୁବର୍ଣ୍ଣ ସ୍ମାରକୀ ଭବନ' କେବଳ ଠିଆ କରାଇ ନାହାନ୍ତି, 'ବିଜ୍ଞାନ ଭବନ' ନିର୍ମାଣ ପାଇଁ ଆବଶ୍ୟକ ପ୍ରେରଣା ମଧ ଯୋଗେଇ ଦେଇଛନ୍ତି । ମାତୃବନ୍ଦନାର ଏହା ଅଦ୍ୱିତୀୟ ଦୃଷ୍ଟାନ୍ତ ।

## ସଭାପତି :

ପୁରାତନ ଛାତ୍ର ସଂସଦର ତୃତୀୟ ନିର୍ବାଚନରେ ସଭାପତି ରହିବା ପାଇଁ ସ୍ୱର୍ଗତଃ ପ୍ରଫୁଲ୍ଲ କୁମାର ରଥ ଇଚ୍ଛା ପ୍ରକାଶ କରିଥିଲେ । ସମସ୍ତେ ସାଦରେ ଏହାକୁ ସ୍ୱୀକାର କରିଗଲେ । ମୁଁ କିନ୍ତୁ ସଂପାଦକ ରହିବି ନାହିଁ ବୋଲି ତାଙ୍କୁ ଜଣାଇ ଦେଇଥିଲି । ତାହାହିଁ ହେଲା, ସାର୍‌ଙ୍କ ନେତୃତ୍ୱରେ ପୁଣି ସଂସଦ ତାର କାର୍ଯ୍ୟସୂଚୀ ପ୍ରସ୍ତତ କଲା । ହଠାତ୍ ଗ୍ରୀଷ୍ମଛୁଟିରେ ଭାଗୀରଥି ବାବୁଙ୍କ ଠାରୁ ତାଙ୍କ ସମ୍ବନ୍ଧରେ ଏକ ମର୍ମନ୍ତୁଦ ସମ୍ବାଦ ପାଇଲି । ତୁରନ୍ତ ଶେରଗଡ଼ ଧାଇଁଲି । ଘରେ ତାଲା, ତାଙ୍କ ଭଉଣୀଙ୍କ ଘରୁ ସମ୍ବାଦ ପାଇଲିଯେ ସେ କଟକରେ । କେମୋଥେରାପି ଚାଲିଛି । ମୋ' ପାଖରେ ଚିତ୍ର ସ୍ପଷ୍ଟ ହୋଇଗଲା । ସାର୍ ସେହି ଦୁରାରୋଗ୍ୟ

ରୋଗର ଶିକାର ହୋଇଛନ୍ତି । ଅନ୍ତନାଳିରେ କେନ୍‌ସର୍ । ଅଥଚ ମୋ ଆତ୍ମା କାନ୍ଦୁଥିଲା, ଏମିତି ସରଳ, ଅମାୟିକ, ସ୍ୱଚ୍ଛ, ନିରଳସ ଓ ଶତ୍ରୁହୀନ ବ୍ୟକ୍ତିଙ୍କ ଭାଗ୍ୟରେ ପୁଣି ଏହି ଦୁଃଖ ଥିଲା ! କେତେ ଯନ୍ତ୍ରଣା ଏ ରୋଗର ! ମୋ' ଦେହ ଶୀତେଇ ଉଠିଲା, ଭାବିଲି ସମସ୍ତଙ୍କ ସ୍ନେହ ଶ୍ରଦ୍ଧା ଧରି ଆରପୁରକୁ ଯିବା ପାଇଁ ସାର୍ ସଭାପତି ରହିବାକୁ ପୁଣି ମନ ବଳେଇଥିଲେ ପରା ।

ସେହି ଦିନ ଆସିଲା । ଶୁଣିଲି, ରାତିରେ ସାର୍ ଚାଲି ଯାଇଛନ୍ତି । ସକାଳେ, ପୁରାତନ ଛାତ୍ର ସଂଗଠନର ବରିଷ୍ଠ ସଦସ୍ୟମାନେ ରବୀନ୍ଦ୍ରମୋହନ ଦାସଙ୍କୁ ସାଥିରେ ଧରି ପହଞ୍ଚିଲେ । ସେମାନଙ୍କ ସହିତ ସାର୍‌ଙ୍କୁ ଶେଷଦର୍ଶନ କରିବାର ସୌଭାଗ୍ୟ ମିଳିଲା । ଛଅଫୁଟର ସେ ଲମ୍ବା ସୌମ୍ୟ ଶରୀର ଶୁଖିଶୁଖି ଯେମିତି ତିନିଫୁଟରେ ସୀମିତ ହୋଇଯାଇଛି । ଏକ ଛୋଟପିଲା ପରି ଦିଶୁଛନ୍ତି । ମୁଖମଣ୍ଡଳରେ ଯନ୍ତ୍ରଣାର ଚିହ୍ନ ନାହିଁ । ଶାନ୍ତିରେ ଆଖି ବୁଜି ଦେଇଛନ୍ତି । ମାଡାମ୍ କହୁଁକହୁଁ କାନ୍ଦି କହଲେ; 'ଆମେ ତାଙ୍କ ମୁଖରୁ କାତର ଯନ୍ତ୍ରଣା ସ୍ୱର କେବେ ଶୁଣିନାହୁଁ । ଅଥଚ କେନ୍‌ସର ରୋଗର ଲକ୍ଷଣ, ଦାରୁଣ ଯନ୍ତ୍ରଣା ।' ବାବା ସାର୍‌ଙ୍କୁ ଦେଇଥିବା ପ୍ରତିଶ୍ରୁତି ଏହି ସମୟରେ ପାଳନ କରିଛନ୍ତି । ଦୀର୍ଘ କେତେମାସ ଧରି ବାବାଙ୍କ ନାମ ଧରି ଶେଷ ନିଃଶ୍ୱାସ ତ୍ୟାଗ କଲେ ସାର୍ । ତାହାହିଁ ଇଷ୍ଟରଭ୍ୟୁ । ପ୍ରାରବ୍ଧ ତ ଭୋଗିବାକୁ ହେବ ! ଦୁଃଖ ଯନ୍ତ୍ରଣାତକ ଖାଲି ଭଗବାନଙ୍କର ! ମୋ' ପାଇଁ ସେତିକି ବାର୍ତ୍ତା ସାର୍ ଛାଡ଼ି ଦେଇଯାଇଛନ୍ତି ।

• ଟୋଲଙ୍କ ସାହି
ବାଲେଶ୍ୱର

# ଅନୁଷ୍ଠାନପ୍ରୀତି

## ସୁବାସ ଚନ୍ଦ୍ର ପାତ୍ର

**ଗ**ଛଟିଏ ହେଲେ ଫୁଲ ଫୁଟେ, ଫଳ ଧରେ; କିନ୍ତୁ ଗଛଟିଏ ଯେତେବେଳେ ଫୁଲ ବା ଫଳରେ ଭରିଉଠେ, ଦେଖଣାହାରୀ ବା ତା'ର ସ୍ରଷ୍ଟା ମନରେ ଭାବାନ୍ତର ସୃଷ୍ଟିହୁଏ । ଗୋଟିଏ ଛୋଟ ଚାରାଗଛ ଭଳି ୧୯୯୪-୯୫ରେ ଜନ୍ମ ନେଇଥିବା ଗଛଟିଏ ଆଜି ବେଶ୍ ଯଥେଷ୍ଟ ଶାଖାପ୍ରଶାଖା ମେଲି ଫୁଲଫଳରେ ଏତେ ଭରପୁର ହୋଇ ଉଠିଛି ଯେ ଏହାର ରୋପଣକାରୀଙ୍କ ମନରେ ଏହା ହୁଏତ ବିସ୍ମୟ ତଥା ଅବିଶ୍ୱାସ ଭରି ଦେଇପାରେ । ୧୯୯୪-୯୫ ମସିହାରେ ତଦାନୀନ୍ତନ ଅଧକ୍ଷ ପ୍ରଫେସର ଗୋପାଳ ଘୋଷଙ୍କ ପ୍ରେରଣାରେ ଫକୀରମୋହନ କଲେଜର ଶିକ୍ଷକ କମନ୍ ରୁମ୍‌ରୁ ମାତ୍ର ୪/୫ଜଣ ଅନୁଷ୍ଠାନ ପ୍ରେମୀ ବନ୍ଧୁ ପ୍ରାଧାପକ ଅଞ୍ଜନ କୁମାର ଦାସ, ଡକ୍ଟର ରମାକାନ୍ତ ନାୟକ, ଶ୍ରୀମତୀ କଲ୍ୟାଣୀ ଦାସ ...ଏବଂ ମୋତେ ନେଇ ପ୍ରାଥମିକ ଭାବରେ ଜନ୍ମ ନେଇଥିବା ପୁରାତନ ଛାତ୍ର ସଂସଦ ବିଧିବଦ୍ଧ ଭାବରେ ଗଠିତ ହୁଏ ୧୯୯୪ ଜୁଲାଇରେ । ପ୍ରଫେସର ପ୍ରଫୁଲ୍ଲ କୁମାର ରଥ ହୁଅନ୍ତି ଏହାର ପ୍ରଥମ ସଭାପତି ଏବଂ ଡକ୍ଟର ରମାକାନ୍ତ ନାୟକ ପ୍ରଥମ ସଂପାଦକ । ୧୯୯୫ରେ ସୁବର୍ଣ୍ଣ ଜୟନ୍ତୀ ପାଳନ ଏହାର ପ୍ରଥମ ଆଭିମୁଖ୍ୟ ହୁଏ । ଏହି ସୁବର୍ଣ୍ଣ ଜୟନ୍ତୀ ପାଳନର ଅଭିପ୍ସା, ଏକ ଐତିହାସିକ ନିଶା ହୋଇପଡ଼େ ଏବଂ ଖୁବ୍ କମ ସମୟ ମଧ୍ୟରେ ବହୁ ପୁରାତନ ଛାତ୍ରଚାତ୍ରୀ ଆଗେଇ ଆସନ୍ତି ଏହି ଇତିହାସରେ ଅଂଶୀଦାର ହେବାପାଇଁ । ୧୯୯୫ ଜାନୁୟାରୀରେ ସୁବର୍ଣ୍ଣ ଜୟନ୍ତୀ ପାଳନବେଳକୁ ଏହାର ସଦସ୍ୟ ସଂଖ୍ୟା ହୋଇପଡ଼େ ପାଖାପାଖି ୭୦୦ । ଏହି ସଂସଦ ଭଳି ସଂଗଠନଗୁଡ଼ିକ ସାଧାରଣତଃ ଉତ୍ସବ-ନିର୍ଦ୍ଦିଷ୍ଟ ହୋଇଥିଲାବେଳେ ଅନୁଷ୍ଠାନ ପ୍ରେମୀ ଅଧିକାଂଶ ସଦସ୍ୟ କିନ୍ତୁ ପୁରାତନ ଛାତ୍ର ସଂସଦର କାର୍ଯ୍ୟକ୍ରମର ଧାରାବାହିକତା ବଜାୟ ରଖିବାକୁ ଇଛା କରନ୍ତି ଏବଂ ତା'ର ଫଳଶ୍ରୁତି ଆଜି ଫକୀରମୋହନ କଲେଜର ନବକଳେବର । ଏହି ନବଯୌବନର କାହାଣୀକୁ ଟିକିନିଖି ଭାବରେ ଯିବାପୂର୍ବରୁ ଯେଉଁମାନଙ୍କ ଜାଣିତରେ ବା ଅଜାଣତରେ ସଂସଦ ଆଜି ତା'ର ଏହି ଅଦ୍ୱିତୀୟ ପ୍ରତିଷ୍ଠା ପାଇ ପାରିଛି ସେମାନଙ୍କ କଥା ମନେ ପକାଇଦେବାକୁ ମୁଁ ମୋର ଐତିହାସିକ କର୍ତ୍ତବ୍ୟ ବୋଲି ମନେ କରୁଛି ।

ସୂକ୍ଷ୍ମଭାବରେ, ଅପାତତଃ ଅଦୃଶ୍ୟ ଭାବରେ ଅନେକ ଲୋକ ସମାଜର ପ୍ରଭୂତ ଉନ୍ନତି କରି ଚାଲନ୍ତି ବହୁଲୋକଙ୍କ ଅଗଚୋରରେ । ଆମ ସଂସଦ ଆଜିର ଏହି ରୂପରେ ପହଞ୍ଚିବାରେ ଯେଉଁମାନେ ସୌଖୀନ ଭାବରେ ଏକ ଅନ୍ତଃସ୍ରୋତ ଭଳି ଏହାକୁ ଭିତରୁ ଗଢ଼ି ତୋଳିଛନ୍ତି ସେମାନେ ହେଲେ ଏହି ସଂଗଠନକୁ ବିଭିନ୍ନ ସମୟରେ ଉଦ୍‌ବୋଧନ ଦେଇଥିବା ମହାନ ବ୍ୟକ୍ତିମାନେ । ଏହି ଅନୁଷ୍ଠାନର ସୁବର୍ଣ୍ଣ ଜୟନ୍ତୀ ସମାରୋହକୁ ସାର୍ଥକ କରିଥିଲେ ଆନ୍ତର୍ଜାତିକ ଖ୍ୟାତି ସଂପନ୍ନ କଥାଶୀଳ୍ପୀ, ସରସ୍ୱତୀ ସମ୍ମାନପ୍ରାପ୍ତ ଶ୍ରୀଯୁକ୍ତ ମନୋଜ ଦାସ, ଇସ୍ରାଏଲର ରାଷ୍ଟ୍ରଦୂତ ଇଫ୍ରାଏମ୍ ଡାଉଏକ, ଏହି କଲେଜର ପ୍ରତିଷ୍ଠାତା ଶିକ୍ଷକ ତଥା ଲବ୍‌ଧପ୍ରତିଷ୍ଠ ଐତିହାସିକ ଡକ୍ଟର ମନ୍ମଥନାଥ ଦାସ ଏବଂ ଏକଦା ବାଲେଶ୍ୱରର ଯୁବମାନସକୁ ଆଚ୍ଛନ୍ନ କରିଥିବା ତଥା ଇନ୍ଦିରାଗାନ୍ଧୀଙ୍କ ସମୟରେ ଜାତୀୟସ୍ତରରେ ଯଥେଷ୍ଟ ପ୍ରତିଷ୍ଠା ଲାଭ କରିଥିବା ବାଲେଶ୍ୱରର ପୂର୍ବତନ ସାଂସଦ ଶ୍ରୀଯୁକ୍ତ ଶ୍ୟାମସୁନ୍ଦର ମହାପାତ୍ର । ଦ୍ୱିତୀୟବର୍ଷ (୧୯୯୬)ରେ ଦୀକ୍ଷାର ମନ୍ତ୍ରକୁ ଆଉ ପଦେ ଆଗେଇନେବାକୁ ଆମ ଗହଣରେ ଉପସ୍ଥିତ ହେଇଛନ୍ତି ଉତ୍କଳ ବିଶ୍ୱବିଦ୍ୟାଳୟର କୁଳପତି ବିଶିଷ୍ଟ କବି ଡକ୍ଟର ଗୌର କିଶୋର ଦାସ । ସଂସଦର ସାଂସ୍କୃତିକ ବିବର୍ତ୍ତନର ନୂତନ ପର୍ବର ଉନ୍ମେଷ ଘଟିଛି

ଅନୁଷ୍ଠାନ ପ୍ରେମୀ ଏହି ବିଶାଳ ବ୍ୟକ୍ତିତ୍ୱଙ୍କ ସାନ୍ନିଧରେ । ତୃତୀୟ ବର୍ଷ (୧୯୯୭) ଆମକୁ ଅନୁଷ୍ଠାନ ଗଢ଼ିବାରେ କାହାଣୀ ଶୁଣେଇବାକୁ ଆସିଛନ୍ତି ଓଡ଼ିଶାର ପୂର୍ବତନ ଆଡଭୋକେଟ ଜେନେରାଲ ସାହିତ୍ୟଭାରତୀ ପୁରସ୍କାରର ପ୍ରତିଷ୍ଠାତା ଶ୍ରୀଯୁକ୍ତ ଗଙ୍ଗାଧର ରଥ, ତାଙ୍କର ସହ-ଉଦ୍‌ବୋଧକ ସାଜିଛନ୍ତି ଏହି କଲେଜର ପୁରାତନ ଛାତ୍ର, ସ୍ୱନାମଧନ୍ୟ ପୋଲିସ ମହାନିର୍ଦ୍ଦେଶକ ଗୋବିନ୍ଦ ଚନ୍ଦ୍ର ସେନାପତି । ଅନୁପ୍ରେରଣାର ପରମ୍ପରା ଜାରି ରହେ ଏବଂ ତହିଁ ପରବର୍ଷ (୧୯୯୮) ଆମକୁ କର୍ତ୍ତବ୍ୟନିଷ୍ଠ ଏବଂ ସଠିକ ବାଟ ବତେଇବାକୁ ଆସନ୍ତି ପରିବେଶବିତ୍ ତଥା ଓଡ଼ିଶାର ପୂର୍ବତନ ଅର୍ଥମନ୍ତ୍ରୀ ଶ୍ରୀଯୁକ୍ତ ବାଙ୍କ ବିହାରୀ ଦାସ ଏବଂ ବ୍ୟକ୍ତିତ୍ୱ ଓ ଜ୍ଞାନର 'ତୁଙ୍ଗ ଶିଖରୀଚୂଳରେ' ପହଞ୍ଚି ପାରିଥିବା ପ୍ରଫେସର ତ୍ରିଲୋଚନ ମିଶ୍ର । ଶିକ୍ଷା ତଥା ଶିକ୍ଷାନୁଷ୍ଠାନର ପ୍ରକୃତ ସଂଜ୍ଞା ଏବଂ ସାଧାରଣ ଜୀବନରେ ମୌଳିକ ଚିନ୍ତାଧାରାର ଆବଶ୍ୟକତାକୁ ଆମ ଆଗରେ ଆଉ ଟିକେ ନୂତନ ଆଲୋକରେ ପ୍ରକାଶ କରିବାକୁ ପଞ୍ଚମବର୍ଷ (୧୯୯୯) ଆମ ସହିତ ମିଳିତ ହୁଅନ୍ତି ବିଶିଷ୍ଟ ଶିକ୍ଷାବିତ୍ ଡକ୍ଟର ମନ୍ମଥନାଥ କୁଣ୍ଡୁ ଏବଂ ସାଂସଦ ଶ୍ରୀଯୁକ୍ତ ମହାମେଘବାହାନ ଐର ଖାରବେଳ ସ୍ୱାଇଁ । ମହାବାତ୍ୟା ମାଡ଼ିଆସେ ଅକ୍ଟୋବର ୧୯୯୯ରେ । ସଂସଦର କାର୍ଯ୍ୟଶୈଳୀ ଉପରେ ତା'ର ପ୍ରଭାବ ପଡ଼େ । ଶିକ୍ଷାନୁଷ୍ଠାନରେ ସେ ବର୍ଷ ସାଂସ୍କୃତିକ କାର୍ଯ୍ୟକ୍ରମ ବାରଣ କରାଯାଏ । କେନ୍ଦ୍ର ସାହିତ୍ୟ ଏକାଡେମୀ ଆନୁକୂଲ୍ୟରେ ଫକୀରମୋହନ କଲେଜ ପରିସରରେ ଅନୁଷ୍ଠିତ କବିବର ରାଧାନାଥଙ୍କ ୧୫୦ତମ ଜୟନ୍ତୀ ପାଳନ ଅବସରରେ ସଂସଦ ତା'ର ଷଷ୍ଠବର୍ଷର (୨୦୦୦) ବାର୍ଷିକ ଦାୟିତ୍ୱ ନିଭାଏ । ସରସ୍ୱତୀ ସମ୍ମାନପ୍ରାପ୍ତ ବିଶିଷ୍ଟ କବି ଡକ୍ଟର ରମାକାନ୍ତ ରଥ ଏବଂ ଦିଲ୍ଲୀ ବିଶ୍ୱବିଦ୍ୟାଳୟର ତୁଳନାତ୍ମକ ସାହିତ୍ୟର ପ୍ରଚଣ୍ଡ ପ୍ରତିଭାଧାରୀ ପ୍ରଫେସର ଡକ୍ଟର ଶିଶିର କୁମାର ଦାସ ଆମକୁ ନୂତନ ଦିଗ୍‌ଦର୍ଶନ ଦିଅନ୍ତି । ଆମ ଭିତରେ ନୂତନ କର୍ମପ୍ରେରଣା ଭରି ଦିଅନ୍ତି । ଏହା ଭିତରେ ସଂସଦ ତା'ର ମାତୃଅନୁଷ୍ଠାନର ଋଣ ଫେରାଇବାରେ ବ୍ରତୀ ହୁଏ । ସାଂସଦ ଶ୍ରୀଯୁକ୍ତ ଖାରବେଳ ସ୍ୱାଇଁ, କଲେଜ କର୍ତ୍ତୃପକ୍ଷ, ଛାତ୍ରଛାତ୍ରୀ, ପୁରାତନ ଛାତ୍ରଛାତ୍ରୀ ଏବଂ ବାଲେଶ୍ୱରର ବଦାନ୍ୟ ବ୍ୟକ୍ତିଙ୍କ ସାହାଯ୍ୟ ସହଯୋଗ କ୍ରମେ ନିର୍ମିତ ସୁବର୍ଣ୍ଣ ସ୍ମାରକୀ ଭବନ ବିଧିବଦ୍ଧ ଭାବରେ କଲେଜ କର୍ତ୍ତୃପକ୍ଷଙ୍କୁ ହସ୍ତାନ୍ତରିତ ହୁଏ ବା ତା' ସହିତ ସଂସଦର ସପ୍ତମ ବାର୍ଷିକ (୨୦୦୧) ଉତ୍ସବ ମଧ୍ୟ ପାଳିତ ହୁଏ । ସୁବର୍ଣ୍ଣ ସ୍ମାରକୀ ଭବନ ନିର୍ମାଣରେ ଅନ୍ୟତମ 'ସ୍ଥପତି' ମହାବିଦ୍ୟାଳୟର ପୂର୍ବତନ ଅଧ୍ୟକ୍ଷ ପ୍ରଫେସର କୃଷ୍ଣକାନ୍ତ ଦାସ ଏବଂ ସାଂସଦ ଶ୍ରୀ ସ୍ୱାଇଁ ଆମକୁ ଆହୁରି ନୂଆ କଛି ଗଢ଼ିବାର ସ୍ୱପ୍ନ ଦେଖାନ୍ତି । 'ପ୍ରତିଶ୍ରୁତିର ପ୍ରାବଲ୍ୟ' ଭିତରେ ବାସ୍ତବତା ପେଶି ହୋଇଯାଉଛି କି ନାହିଁ ସତରେ ତା'ର ହିସାବ ନେବାକୁ ଏବଂ ସତରେ ସଂସଦର ବିଭିନ୍ନ କାର୍ଯ୍ୟକ୍ରମର ବିବରଣୀ ସଂଗ୍ରହ କରିବାକୁ ଅଷ୍ଟମ ବାର୍ଷିକ ସମାରୋହ (୨୦୦୨)ରେ ଆମ ଆଗରେ ଛିଡ଼ା ହୁଅନ୍ତି 'ସମ୍ବାଦ'ର ସଂପାଦକ ତଥା ଓଡ଼ିଆଙ୍କ ପାଖରେ ଓଡ଼ିଆଭାଷାକୁ ପହଞ୍ଚେଇ ଦେବାର ନୂତନ ବାର୍ତ୍ତାବହ ଶ୍ରୀଯୁକ୍ତ ସୌମ୍ୟରଞ୍ଜନ ପଟ୍ଟନାୟକ । ତାଙ୍କ ସହିତ ଆମେ ପାଉଁ ସଂସଦର ଜଣେ ଦରଦୀ ବନ୍ଧୁ ତଥା ପୃଷ୍ଠପୋଷକ ସାଂସଦ ଖାରବେଳ ସ୍ୱାଇଁଙ୍କୁ । ଅଷ୍ଟମ ବର୍ଷଠୁ ଆରମ୍ଭ ହୁଏ କୃତୀ ପୁରାତନ ଛାତ୍ରଛାତ୍ରୀଙ୍କୁ ସମ୍ମାନିତ କରିବାର ପରମ୍ପରା । ପ୍ରଥମ ବର୍ଷ ଶ୍ରୀଯୁକ୍ତ ଚିନ୍ତାମଣି ବେହେରା ଏବଂ ଶ୍ରୀମତୀ ସିନ୍ଧୁମତୀ ଦେବୀ ଏଥିପାଇଁ ଯୋଗ୍ୟ ବିବେଚିତ ହୋଇ ଆମକୁ ସୂଚାଇ ଦିଅନ୍ତି ମହାବିଦ୍ୟାଳୟର ବୌଦ୍ଧିକ ବିଶାଳତା । ପୁରାତନ ଛାତ୍ର ସଂସଦର ପ୍ରତିଷ୍ଠା ଦିନକୁ ଦିନ ବଢ଼ିଚାଲେ । ସତରେ ଯେମିତି ଏହାର ସରକାରୀ ସ୍ୱୀକୃତି ଦେବାକୁ ଆଗେଇ ଆସନ୍ତି ଓଡ଼ିଶାର ମୁଖ୍ୟମନ୍ତ୍ରୀ ନବୀନ ପଟ୍ଟନାୟକ, ପ୍ରାକ୍ ହୀରକ ଜୟନ୍ତୀ ପାଳ ଅବସରରେ (୨୦୦୩) । ସାଥିରେ ଆସନ୍ତି ଓଡ଼ିଶାର କୃଷି ଓ ବୈଷୟିକ ବିଶ୍ୱବିଦ୍ୟାଳୟର କୁଳପତି ଶ୍ରୀଯୁକ୍ତ ସହଦେବ ସାହୁ । ସଂସଦର କାର୍ଯ୍ୟକ୍ରମର ଭୂୟସୀ ପ୍ରଶଂସା କରନ୍ତି । ପୂର୍ବ ବର୍ଷଠୁ ଆରମ୍ଭ ହୋଇଥିବା ଛାତ୍ରଗୌରବ, ଛାତ୍ରୀଗୌରବ ସମ୍ମାନ ସହ ନୂତନ ଭାବେ ପ୍ରତିଷ୍ଠାତା ସଭାପତି ପ୍ରଫେସର ପ୍ରଫୁଲ୍ଲ କୁମାର ରଥଙ୍କ ସ୍ମୃତି ଉଦ୍ଦେଶ୍ୟରେ

ସଂସଦର ଯୁଗ୍ମ ସଂପାଦକ ଶେଖ୍ ସାହିରୁଲ୍ ହକଙ୍କ ଦ୍ୱାରା ପ୍ରତିଷ୍ଠା କରାଯାଇଥିବା ପ୍ରଫେସର ପ୍ରଫୁଲ୍ଲ କୁମାର ରଥ ସ୍ମାରକୀ ଶିକ୍ଷକଗୌରବ ସମ୍ମାନ ପ୍ରଦାନକରନ୍ତି । ପ୍ରାକ୍ -ହୀରକ ଜୟନ୍ତୀ ଅବସରରେ ଯେଉଁ ପ୍ରତିଭାଧର ବ୍ୟକ୍ତିମାନେ ସ୍ୱକୀୟ ଜ୍ଞାନଗୁଣରେ ଏ ପୁରସ୍କାରର ଦାବୀଦାର ହୁଅନ୍ତି ସେମାନେ ହେଲେ ବିଶିଷ୍ଟ ଚିତ୍ରଶିଳ୍ପୀ ଶ୍ରୀଯୁକ୍ତ ଅସୀମ ବସୁ, ବିଶିଷ୍ଟ ସମାଜସେବୀ ଶ୍ରୀମତୀ ରାଧାଦେବୀ ଏବଂ ଜ୍ଞାନର ଗନ୍ତାଘର ପ୍ରଫେସର ତ୍ରିଲୋଚନ ମିଶ୍ର । ଏଥି ସହିତ ସମ୍ବର୍ଦ୍ଧିତ ହୁଅନ୍ତି କଲେଜ ତଥା ସାଂସଦକୁ ନୂଆରୂପ ଦେବାର ଅଗ୍ରଣୀ ଭୂମିକା ନିଭେଇଥିବା ସଂସଦର ଦୁଇ ହିତୈଷୀ ବନ୍ଧୁ ତଥା ପୃଷ୍ଠପୋଷକ -ସ୍ୱାଧୀନତା ସଂଗ୍ରାମୀ ଶ୍ରୀଯୁକ୍ତ ରବୀନ୍ଦ୍ରମୋହନ ଦାସ ଏବଂ ସାଂସଦ ଶ୍ରୀଯୁକ୍ତ ଖାରବେଳ ସ୍ୱାଇଁ । ୧୦ବର୍ଷ ଏହା ଭିତରେ ଗଡ଼ିଗଲାଣି । ଅନୁଷ୍ଠାନର ୬୦ବର୍ଷ ପୂର୍ତ୍ତି ଅବସରରେ ସାଂସଦ ପାଳୁଛି ତା'ର ହୀରକ ଜୟନ୍ତୀ । ଏହି ମହାନ ତଥା ଐତିହାସିକ ସମାରୋହରେ ଯେଉଁ ତିନିଜଣ ପ୍ରତିଭାଧାରୀଙ୍କ ସମ୍ବର୍ଦ୍ଧନା ଉତ୍ସବକୁ ଶ୍ରୀମଣ୍ଡିତ କରିବ ସେମାନେ ହେଲେ -ସରସ୍ୱତୀ ସମ୍ମାନପ୍ରାପ୍ତ ଯଶସ୍ୱୀ କଥାଶିଳ୍ପୀ ଶ୍ରୀଯୁକ୍ତ ମନୋଜ ଦାସ (ଛାତ୍ରଗୌରବ ସମ୍ମାନ), ଆନ୍ତର୍ଜାତିକ ଖ୍ୟାତି ସଂପନ୍ନ କବି ଶ୍ରୀଯୁକ୍ତ ଜୟନ୍ତ ମହାପାତ୍ର (ଶିକ୍ଷକଗୌରବ ସମ୍ମାନ) ଏବଂ ବିଶିଷ୍ଟ ସମାଜସେବୀ ଯମୁନାଲାଲ ବଜାଜ ପୁରସ୍କାରପ୍ରାପ୍ତ ଶ୍ରୀମତୀ ଶାନ୍ତି ଦେବୀ (ଛାତ୍ରୀଗୌରବ ସମ୍ମାନ)।

ଏବେ ସାଂସଦର ମାତୃଋଣ ଶୁଝିବାର ଏକ ବିନମ୍ର ପ୍ରୟାସକୁ ଫେରି ଆସୁଚି । ପୁରାତନ ଛାତ୍ର ସଂସଦ ଭଳି ସଂଗଠନଗୁଡ଼ିକ ସାଧାରଣତଃ ଉତ୍ସବରେ ସୀମିତ ହୋଇଥାଏ । କୌଣସି ଏକ ଉତ୍ସବ ପାଳନ ପରେ ଏହା ପ୍ରାସଙ୍ଗିକତା ହରାଇବସେ । ସେ ଦୃଷ୍ଟିରୁ ଆମ ସଂସଦ ଏକ ବ୍ୟତିକ୍ରମ । ସୁବର୍ଣ୍ଣ ଜୟନ୍ତୀ ପାଳନ ପରେ କଲେଜର ସାଂସ୍କୃତିକ, ବୌଦ୍ଧିକ ତଥା ଭିତ୍ତିଭୂମିମୂଳକ ପରିବର୍ତ୍ତନ ପାଇଁ ଏହା ବଞ୍ଚିରହେ କେବଳ ମାତୃ-ଅନୁଷ୍ଠାନର ଋଣ ଶୁଝିବା ପାଇଁ । ସବୁକଥା ପାଇଁ ସମୟର ଅନୁକୂଳତା । ଠିକ୍ ସେମିତି ଏକ ସମୟ ଉପନୀତ ହୁଏ ଜାନୁୟାରୀ ୧୯୯୮ରେ । ଅଧକ୍ଷ କୃଷ୍ଣକାନ୍ତ ଦାସ, ପ୍ରାଧାପକ ଡକ୍ଟର ଦେବେନ୍ଦ୍ର ନାଥ ରାଉତ, ପ୍ରାଧାପକ ଡକ୍ଟର ଭାଗୀରଥି ନାୟକ ଏବଂ ରାସାୟନ ବିଭାଗର ଡେମୋନଷ୍ଟ୍ରେଟର ଶ୍ରୀଯୁକ୍ତ ଜୟନ୍ତ ମହାପାତ୍ର ଏବଂ ମୋର ଉଦ୍ୟମ କ୍ରମେ କଲେଜର ଭିତ୍ତିଭୂମିର ସଂପ୍ରସାରଣ ପାଇଁ ନୂଆ ଏକ ଭବନ ନିର୍ମାଣର ଯୋଜନା ଆରମ୍ଭ ହୁଏ । କଲେଜରେ ଘରୋଇ ଉଦ୍ୟମରେ ଘରଟିଏ ହେବ-କଥାଟି ସମସ୍ତଙ୍କୁ ମନକୁ ପାଇଲା । ହଠାତ୍ ଏକ ନବଜାଗରଣ ଦେଖାଦେଲା । 'ସୁବର୍ଣ୍ଣ ସ୍ମାରକୀ ଭବନ' ନାମରେ ନାମିତ ହବାକୁ ଥିବା ଏ ଭବନ ନିର୍ମାଣ ସତରେ ଏକ ଆନ୍ଦୋଳନରେ ପରିଣତ ହେଲା । କଲେଜର ପରିଚାଳନା ସମିତିର ବୈଠକ ଡକାଗଲା । ଜିଲ୍ଲାପାଳ ବସନ୍ତ କୁମାର ସ୍ୱାଇଁ, ବିଧାୟକ ଶ୍ରୀଯୁକ୍ତ ଅରୁଣ ଦେ ଏବଂ ଉପସ୍ଥିତ ସମସ୍ତ ସଦସ୍ୟ ପ୍ରସ୍ତାବଟିକୁ ଅନୁମୋଦନ କଲେ । ଶେଷରେ ସିଦ୍ଧାନ୍ତ ହେଲା କଲେଜର ସେ ବର୍ଷର ଉଦ୍‌ବୃତ୍ତ ରାଶି, କଲେଜର ଛାତ୍ରଛାତ୍ରୀ, ପୁରାତନ ଛତ୍ରଛାତ୍ରୀ, ବାଲେଶ୍ୱରର ବଦାନ୍ୟ ଜନସାଧରଣ ତଥା ସାଂସଦ ଖାରବେଳ ସ୍ୱାଇଁଙ୍କ ଆଞ୍ଚଳିକ ଉନ୍ନୟନ ପାଣ୍ଠି ସହାୟତାରେ ଏହି ତ୍ରିତଳ ଭବନଟି ନିର୍ମାଣ ହେବ । ତଦନୁସାରେ କଲେଜର ପୁରାତନ ଛାତ୍ର ଇଞ୍ଜିନିୟର ସୌମେନ୍ଦ୍ର ମହାନ୍ତି (ଏସ.ଏମ୍. କନ୍‌ସାଲଟେଣ୍ଟ୍) ଭବନର ନକ୍‌ସା ବିନା ପାରଶ୍ରମିକରେ ଯୋଗାଇଦେଲେ ଏବଂ ବିଭାଗୀୟ କର୍ତ୍ତୃପକ୍ଷଙ୍କ ଅନୁମୋଦନ କ୍ରମେ କାର୍ଯ୍ୟ ଆରମ୍ଭହେଲା । କଲେଜର ଛାତ୍ରଛାତ୍ରୀ କୋଡ଼ିଏ ଟଙ୍କା ଦେଇ ଫକୀରମୋହନଙ୍କ ଫଟୋଟିଏ ନେଲେ ତ, ଅଧକ୍ଷଙ୍କ ଆବେଦନକ୍ରମେ ସମସ୍ତ ବର୍ଗର କର୍ମଚାରୀ ଓ ପୁରାତନ ଛାତ୍ରଛାତ୍ରୀ ଅକୁଣ୍ଠିତ ଚିତ୍ତରେ ଯେ ଯାହା ପାରିଲେ ଦେଇ ଚାଲିଲେ । କର୍ମଚାରୀମାନଙ୍କ ଅବଦାନ ଥିଲା ପାଖାପାଖି ଲକ୍ଷେ ଟଙ୍କା । କଲେଜ କୋଅପରେଟିଭ ଷ୍ଟୋର ମଧ୍ୟ ନିଜ ଲାଭାଂଶରୁ ୨୦ ହଜାର ଟଙ୍କା ଯୋଗାଇଦେଲା । ତେବେ ପ୍ରଥମ ମହଲା ନିର୍ମାଣରେ ବ୍ୟକ୍ତିଗତ ଭାବରେ ଯଦି ବେଶି କେହି ସାହାଯ୍ୟ କରିଥାନ୍ତି ସେ ହଉଛନ୍ତି ଜୟନ୍ତ

ମହାପାତ୍ରଙ୍କ ପରିବାରବର୍ଗ । ସେ, ତାଙ୍କ ସହଧର୍ମିଣୀ ତଥା ସେମାନଙ୍କର ପିଲାମାନେ ପାଖାପାଖି ୩୦ ହଜାର ଟଙ୍କା ଦାନକଲେ । ଅଧ୍ୟକ୍ଷ କୃଷ୍ଣକାନ୍ତ ଦାସ କଲେଜର ବିଭିନ୍ନ ଉଦ୍‌ବୃତ୍ତ ପାଣ୍ଠି ଯୋଗାଇ ଦେଲେ । ଡକ୍ଟର ଭାଗୀରଥି ନାୟକ, ଶ୍ରୀଯୁକ୍ତ ଜୟନ୍ତ ମହାପାତ୍ର ତଥା ମୋର ବ୍ୟକ୍ତିଗତ ଉଦ୍ୟମକ୍ରମେ ସୁବର୍ଣ୍ଣ ସ୍ମାରକୀ ଭବନର ପ୍ରଥମ ମହଲା ଅଗଷ୍ଟ ୧୯୯୮ରେ ସଂପୂର୍ଣ୍ଣ ହେଲା । କୋଠାଟିଏ ନିର୍ମାଣ ହେବାପରେ ଆମେ ବିଭିନ୍ନ ସ୍ୱପ୍ନ ଦେଖିଲୁ । ସ୍ୱପ୍ନଗୁଡ଼ିକୁ ବାସ୍ତବତାରେ ପରିଣତ କରିବାକୁ ମୋ ଅଜାଣତରେ କିଏ କଉଠୁ ଚାଲି ବି ଆସିଲେ । ବନ୍ଧୁ ଅନ୍ତର୍ଯ୍ୟାମୀ ନାୟକ ରେଭେନ୍‌ସାରେ ମୋର ସହପାଠୀ । ହଠାତ୍ ବାଲେଶ୍ୱର ଷ୍ଟେଟବ୍ୟାଙ୍କର ମୁଖ୍ୟଶାଖାରେ ମୁଖ୍ୟ ପରିଚାଳକ ହୋଇ ଯୋଗଦେଲେ । କଲେଜର ଷ୍ଟେଟ ବ୍ୟାଙ୍କଟିଏ ହଉ, ରାସ୍ତାକଡ଼ରେ ଘର ଯୋଗାଇ ଦିଆଯିବ । ସଙ୍ଗେସଙ୍ଗେ ସେ ରାଜିହେଲେ । ଉପରିସ୍ଥ ବିଭାଗୀୟ ଅନୁମୋଦନ କ୍ରମେ ତୁରନ୍ତ ସଂପ୍ରସାରିତ ଶାଖାଟିଏ କଲେଜ ପିରସରରେ ଖୋଲିଲା ଅଗଷ୍ଟ ୨୧, ୧୯୯୮ରେ । ବନ୍ଧୁତ୍ୱର ସକାରାତ୍ମକ ଉପଯୋଗର ଏ ଏକ ନମୁନା ମାତ୍ର । ପ୍ରଥମ ମହଲାରେ ସନ୍ନିବେଶିତ ହେଲା ଷ୍ଟେଟବ୍ୟାଙ୍କ, କୋଅପରେଟିଭ ଷ୍ଟୋର ଏବଂ ପୁରାତନ ଛାତ୍ର ସଂସଦର ଏକ ଅଫିସ ଘର । ପ୍ରଥମ ମହଲା ପରେ ସମସ୍ତେ ଦ୍ୱିତୀୟ ମହଲା ପାଇଁ ଲାଗି ପଡ଼ିଲେ । ଅଧ୍ୟକ୍ଷ କୃଷ୍ଣକାନ୍ତ ଦାସ, ଡକ୍ଟର ଦେବେନ୍ଦ୍ର ନାଥ ରାଉତ, ଡକ୍ଟର ଭାଗୀରଥି ନାୟକ ଏବଂ ମୁଁ, ଛାତ୍ର ସଂସଦର ସଭାପତି ପ୍ରଫେସର ପ୍ରଫୁଲ୍ଲ କୁମାର ରଥଙ୍କ ନେତୃତ୍ୱରେ ବାଲେଶ୍ୱର ସାଂସଦ ଶ୍ରୀଯୁକ୍ତ ଖାରବେଳ ସ୍ୱାଇଁଙ୍କୁ ଦେଖାକଲୁ । ଖୁସିର କଥା ଶ୍ରୀ ସ୍ୱାଇଁ ତତ୍‌କ୍ଷଣାତ ରାଜିହେଲେ । କୋଠାର ପ୍ଲାନ୍ ଏବଂ ଏଷ୍ଟିମେଟ ତିଆରି କରିଦେଲେ ବନ୍ଧୁ ଇଞ୍ଜିନିୟର ସୌମେନ୍ଦ୍ର ମହାନ୍ତି ଏବଂ ସାଂସଦଙ୍କ ଅନୁଦାନ ଅର୍ଥ -୪ ଲକ୍ଷ ୨୬ ହଜାର ଟଙ୍କାରେ ଦ୍ୱିତୀୟ ମହଲା ତିଆରି ସମାପ୍ତ ହେଲା ଡିସେମ୍ବର ୧୯୯୮ରେ । ଅଧ୍ୟାପକଙ୍କ ବିଶ୍ରାମ ପ୍ରକୋଷ୍ଠ ଦ୍ୱିତୀୟ ମହଲାକୁ ସ୍ଥାନାନ୍ତରୀତ ହେଲା । ପୂର୍ବ ପ୍ରକୋଷ୍ଠ ଅଧ୍ୟକ୍ଷଙ୍କ ପ୍ରକୋଷ୍ଠରେ ପରିଣତ ହେଲା । ଅଧ୍ୟକ୍ଷ କୃଷ୍ଣକାନ୍ତ ଦାସ ଅବସର ନେଲେ । ନିର୍ମାଣ କାର୍ଯ୍ୟ ଧିମେଇ ଗଲା । ଡକ୍ଟର ଭାଗୀରଥି ନାୟକ, ବନ୍ଧୁ ଜୟନ୍ତ ମହାପାତ୍ର ଏବଂ ମୋର ବ୍ୟକ୍ତିଗତ ଉଦ୍ୟମ ତଥା ବାଲେଶ୍ୱରର କିଛି ବଦାନ୍ୟ ବ୍ୟକ୍ତିଙ୍କ ସାହାଯ୍ୟ ବଳରେ ଧିରେଧିରେ ତୃତୀୟ ମହଲା ମଧ୍ୟ ସଂପୂର୍ଣ୍ଣ ହେଲା । ଏ ପ୍ରସଙ୍ଗରେ ସବୁଠୁ ଉଲ୍ଲେଖନୀୟ ସାହାଯ୍ୟ ଥିଲା, ଜୟନ୍ତ ମହାପାତ୍ରଙ୍କ -ଏକ ଲକ୍ଷ ତିରିଶ ହଜାର ଟଙ୍କା ଏବଂ ଶ୍ରୀମତୀ ବାସନ୍ତୀ ...ଙ୍କର ପାଖାପାଖି ୩୧ ହଜାର ଟଙ୍କା ଏବଂ ଡକ୍ଟର ଭାଗୀରଥି ନାୟକଙ୍କ ୨୫ ହଜାର । ଏହି ତ୍ରିତଳ ସୁବର୍ଣ୍ଣ ସ୍ମାରକୀ ଭବନ କଲେଜ ସ୍ୱୟଂଶାସିତ ହେବାର ଗୁରୁତ୍ୱପୂର୍ଣ୍ଣ ଭୂମିକା ନିର୍ବାହ କଲା ୟୁ.ଜି.ସି. ଟିମ୍‌କୁ ଉଦ୍‌ବୁଦ୍ଧ କରି । ପରବର୍ତ୍ତୀ ସମୟରେ ସ୍ୱୟଂଶାସିତ ମହାବିଦ୍ୟାଳୟର ପରୀକ୍ଷା ନିୟନ୍ତ୍ରକ ସେହି ତୃତୀୟ ମହଲାରୁ କାର୍ଯ୍ୟ ଆରମ୍ଭ କଲେ ।

ଘରୋଇ ଉଦ୍ୟମରେ କଲେଜର ଉତ୍‌ଥାନ ପର୍ବର କିଛିଦିନ ଭଟ୍ଟା ପଡ଼ିଲା । ପରବର୍ତ୍ତୀ ଅଧ୍ୟକ୍ଷମାନେ ସେ ଦିଗରେ ମନଦେଲେ ନାହିଁ । କିନ୍ତୁ ସବୁ ଭଟ୍ଟାର କ୍ଷତିପୂରଣ ଘଟିଲା ଯେତେବେଳେ ଏ କଲେଜର ପୂର୍ବତନ ପ୍ରାଧ୍ୟାପକ ଡକ୍ଟର ଦେବେନ୍ଦ୍ର ନାଥ ରାଉତ ଅଧ୍ୟକ୍ଷ ହିସାବରେ ଯୋଗଦେଲେ ୨୦୦୨ ଫେବୃୟାରୀରେ । ଯେହେତୁ ସୁବର୍ଣ୍ଣ ସ୍ମାରକୀ ଭବନ ନିର୍ମାଣର ସେ ଅନ୍ୟତମ ପୁରୋଧା ଥିଲେ ଏବଂ ଜଣେ ରସାୟନ ବିଜ୍ଞାନ ଶିକ୍ଷକ ହିସାବରେ ଆଦିମ ଯୁଗର ଏକ ତଥାକଥିତ ପ୍ରୟୋଗଶାଳାରେ ହନ୍ତସନ୍ତ ହେଉଥିଲେ, ଯୋଗଦାନ କରିବା ପରେ ପ୍ରଥମ କାର୍ଯ୍ୟକ୍ରମ ହିସାବରେ ସେ ଏକ ବିଜ୍ଞାନ ଭବନ ଗଢ଼ିବାର ଇଚ୍ଛା ପ୍ରକାଶ କଲେ । ସେତେବେଳକୁ ପୁରାତନ ଛାତ୍ର ସଂସଦ ଘରୋଇ ଉଦ୍ୟମରେ ସରକାରୀ ଅନୁଷ୍ଠାନର ଭିତିଭୂମି ସ୍ଥାପନରେ ବେଶ୍ ଅନୁଭୂତି ସମ୍ପନ୍ନ ହୋଇଗଲାଣି । କଲେଜ କର୍ତ୍ତୃପକ୍ଷ ଏବଂ ପୁରାତନ ଛାତ୍ର ସଂସଦର ଅପୂର୍ବ ସମନ୍ୱୟରୁ ଖୁବ୍ କମ୍ ସମୟ ଭିତରେ ସୃଷ୍ଟି ହେଲା ବିଜ୍ଞାନ ଭବନ । ସାଂସଦ ଖାରବେଳ ସ୍ୱାଇଁଙ୍କ ଆଞ୍ଚଳିକ ପାଣ୍ଠି, ଶ୍ରୀଯୁକ୍ତ ଜୟନ୍ତ ମହାପାତ୍ରଙ୍କ ସହଯୋଗରେ ତଳମହଲାର କାର୍ଯ୍ୟ ସମ୍ପନ୍ନ ହେଲା

ନଭେମ୍ବର ୨୦୦୨ରେ । ଜରାଜୀର୍ଣ୍ଣ 'ଉତ୍ତରାୟଣ ମଞ୍ଚ', ଜଡ଼ି ହଲ୍, ୨୪ ନମ୍ବର ପ୍ରକୋଷ୍ଠ ଭଙ୍ଗା ହେବାରୁ ଏ ନିର୍ମାଣ ସମ୍ଭବ ହେଲା । ଦ୍ୱିତୀୟ ମହଲା, ଯାହା ଏକ ଆଧୁନିକ ରୁଚିଶୀଳ ସଭାକକ୍ଷର ରୂପନେବ - କାର୍ଯ୍ୟ ଶେଷ ଅବସ୍ଥାରେ । ଖୁବ ଶୀଘ୍ର ତୃତୀୟ ମହଲା ମଧ୍ୟ ସଂପୂର୍ଣ୍ଣ ହେବ । ଡକ୍ଟର ରାଉତ କଲେଜର ଭିତ୍ତିଭୂମିର ସଂପ୍ରସାରଣ ପାଇଁ ଖାଲି ଯେ ସାଂସଦଙ୍କୁ ଅନୁରୋଧ କରିଥିଲେ ତାହା ନୁହେଁ, ତାଙ୍କର ଅନୁରୋଧ, ପୁରାତନ ଛାତ୍ର ସଂସଦର ଉଦ୍ୟମକ୍ରମେ ଜଣେ ପୁରାତନ ଛାତ୍ର ହିସାବରେ ବାଲେଶ୍ୱର ବିଧାୟକ ଶ୍ରୀଯୁକ୍ତ ଜୀବନ ପ୍ରଦୀପ ଦାଶ ମଧ୍ୟ ଆଗେଇ ଆସିଛନ୍ତି କଲେଜର ଶ୍ରୀବୃଦ୍ଧି ପାଇଁ । ତାଙ୍କ ଉନ୍ନୟନ ପାଣ୍ଠିରୁ ଏକ ଲକ୍ଷଟଙ୍କା ତଥା ଏହି କଲେଜର ଅନେକ ପୁରାତନ ଛାତ୍ରଙ୍କ ଅବଦାନ କ୍ରମେ ତିଆରି ହୋଇଚି ନୂତନ ପୋଷ୍ଟ ଅଫିସ ଗୃହ ଯାହା ପୂର୍ବରୁ ପ୍ରାଣୀ ବିଜ୍ଞାନଗାର ନିକଟରେ କାର୍ଯ୍ୟ କରୁଥିଲା ।

ଗୃହ ନିର୍ମାଣ ଛଡ଼ା ସଂସଦର ଉଦ୍ୟମକ୍ରମେ ପରିତ୍ୟକ୍ତ ଓ ଅବହେଳିତ ଅବସ୍ଥାରେ କଲେଜ ପରିସରରେ ପଡ଼ିଥିବା ପ୍ରାଚୀନ ପ୍ରସ୍ତର ମୂର୍ତ୍ତିଗୁଡ଼ିକୁ ମୁଖ୍ୟ ଫାଟକ ପାଖରେ ସଂସଦ ପକ୍ଷରୁ ଯତ୍ନ ସହକାରେ ସୁସଜ୍ଜିତ ଓ ସୁରକ୍ଷିତ ଅବସ୍ଥାରେ ରଖା ଯାଇଛି । ଖାଲି କୋଠାବାଡ଼ି ନିର୍ମାଣରେ ଯେ ପୁରାତନ ଛାତ୍ର ସଂସଦ କାର୍ଯ୍ୟ କରିଛି ତା' ନୁହେଁ । କଲେଜର ସଂପତ୍ତିର ରକ୍ଷଣାବେକ୍ଷଣ, ଏକ ସୁନ୍ଦର ଶୈକ୍ଷିକ ବାତାବରଣ ସୃଷ୍ଟି, କଲେଜ ପରିସରରେ ଶାନ୍ତି ପ୍ରତିଷ୍ଠା-ବିଭିନ୍ନ ସମୟରେ ବିଭିନ୍ନ ପ୍ରକାରେ ସଂସଦ ତା'ର ଦାୟିତ୍ୱ ନିଭାଇ ଆସିଚି । ଗୋଟାଏ ଦୁଇଟି ଉଦାହରଣ ଦିଆଯାଇପାରେ । କଲେଜ ସଂଲଗ୍ନ ବ୍ରହ୍ମସମାଜ ଜମି ବହୁଦିନରୁ କଲେଜପାଇଁ ଅଧିଗ୍ରହୀତ ହେବା କଥା । କିଛି ନ୍ୟସ୍ତସ୍ୱାର୍ଥ ଗୋଷ୍ଠୀଙ୍କ ଚକ୍ରାନ୍ତ ତଥା କଲେଜ କର୍ତ୍ତୃପକ୍ଷଙ୍କ ଉଦାସୀନତା ଯୋଗୁ ପ୍ରସ୍ତାବଟି ଏକ ନିର୍ଦ୍ଦିଷ୍ଟ ସମୟ ଅତିବାହିତ ହେଲା ପରେ ବାତିଲ୍ ହୋଇଗଲା । ପୁରାତନ ଛାତ୍ର ସଂସଦ ତଥା ଡକ୍ଟର ରାଉତଙ୍କ ଉଦ୍ୟମ କ୍ରମେ ପ୍ରସ୍ତାବଟିକୁ ପୁନଃର୍ଜୀବିତ କରାଗଲା ଏବଂ ଆଜି ବଜାରମୂଲ୍ୟରେ ଦୁଇକୋଟି ଟଙ୍କାର ସମ୍ପତ୍ତି ମାତ୍ର ୧୭ ଲକ୍ଷ ଟଙ୍କାରେ କଲେଜ ପାଇପାରିଚି । ଏଥିପାଇଁ ପୁରାତନ ଛାତ୍ର ସଂସଦ ତଥା ବାଲେଶ୍ୱର ଯେଉଁ କେତେଜଣ ମହାନ୍ ବ୍ୟକ୍ତି ଏ ଦିଗରେ ସାହାଯ୍ୟ କରିଛନ୍ତି ସେମାନେ ହେଲେ ସ୍ୱାଧୀନତା ସଂଗ୍ରାମୀ ଶ୍ରୀଯୁକ୍ତ ରବୀନ୍ଦ୍ରମୋହନ ଦାସ, ଅବସରପ୍ରାପ୍ତ ଅତିରିକ୍ତ ଜିଲ୍ଲାପାଳ ଶ୍ରୀଯୁକ୍ତ ବୈଦ୍ୟନାଥ ଷଡ଼ଙ୍ଗୀ, ଆଡ୍‌ଭୋକେଟ ଚନ୍ଦ୍ରକୁମାର ମହାନ୍ତି, କବି ଶ୍ରୀଯୁକ୍ତ ବ୍ରଜନାଥ ରଥ, ପୂର୍ବତନ ବିଧାୟକ ଶ୍ରୀଯୁକ୍ତ ମହେଶ୍ୱର ବାଗ ଏବଂ ଡାକ୍ତର ହରିଶ୍ଚନ୍ଦ୍ର ଜେନା । ଶୈକ୍ଷିକ ତଥା ଶାନ୍ତିପୂର୍ଣ୍ଣ ବାତାବରଣ ପ୍ରତିଷ୍ଠା ଦିଗରେ ଉପରୋକ୍ତ ସଦସ୍ୟମାନଙ୍କ ଭୂମିକା କିଛି କମ ନୁହେଁ । ନିର୍ବାଚନ ରାଜନୀତିରୁ କଲେଜ ପରିସରକୁ ମୁକ୍ତ କରିବା ପାଇଁ ଡକ୍ଟର ଦେବେନ୍ଦ୍ର ନାଥ ରାଉତ ଯେତେବେଳେ ବୈଠକ ଡକାଇଲେ, ପୁରାତନ ଛାତ୍ର ସଂସଦ ତାଙ୍କୁ ପୂର୍ଣ୍ଣ ପ୍ରାଣରେ ସାହାଯ୍ୟ କଲା ଏବଂ ପରବର୍ତ୍ତୀ ସମୟରେ ଯେତେବେଳେ ଛାତ୍ର ଅଶାନ୍ତି ଦେଖାଦେଲା ଡକ୍ଟର ରାଉତଙ୍କ ପଛରେ ରବୀନ୍ଦ୍ରମୋହନ ଦାସଙ୍କ ସମେତ ସମଗ୍ର ସଂସଦ ଛିଡ଼ାହେଲା । ପିଲାମାନେ ସେମାନଙ୍କ ଭୁଲ ବୁଝି ପାରିଲେ, କଲେଜକୁ ପୁଣି ଶାନ୍ତି ଫେରିଆସିଲା ।

ବଦାନ୍ୟତା ଖାଲି ଏକ ଉନ୍ନତ ରୁଚିର ପରିଚାୟକ ନୁହେଁ, ଗୋଟିଏ ସଭ୍ୟତାର ଉତ୍କର୍ଷର ମାପକାଠି ମଧ୍ୟ । ସ୍ୱକୀୟ ବଦାନ୍ୟ ଦୃଷ୍ଟିଭଙ୍ଗୀ ପ୍ରଦର୍ଶନ କରି ବାଲେଶ୍ୱର ବାସୀ ତଥା ପୁରାତନ ଛାତ୍ର ସଂସଦର ସଦସ୍ୟମାନେ ପ୍ରମାଣ କରିଦେଇଛନ୍ତି ସେମାନଙ୍କ ମାନସିକ ଉତ୍କର୍ଷତା । ଯେଉଁ କେତେଜଣଙ୍କ ଅବଦାନ ସ୍ମରଣୀୟ ସେମାନେ ହେଲେ ଅବସରପ୍ରାପ୍ତ ଡେମୋନଷ୍ଟ୍ରେଟର ଶ୍ରୀଯୁକ୍ତ ଜୟନ୍ତ ମହାପାତ୍ର ଏବଂ ତାଙ୍କର ପରିବାର, ବିଶିଷ୍ଟ ଶିଳ୍ପପତି ଶ୍ରୀଯୁକ୍ତ ସୁଧାସିନ୍ଧୁ ପଣ୍ଡା, ଇଞ୍ଜିନିୟର ସୌମେନ୍ଦ୍ର ମହାନ୍ତି, ବିଶିଷ୍ଟ ଶିଳ୍ପପତି ତଥା ସଂସଦର ଉପସଭାପତି ଶ୍ରୀଯୁକ୍ତ ହିମାଂଶୁ ଦାସ ଓ କ୍ଷୀରଚୋରା ମାର୍ବଲସ ଅନୁଷ୍ଠାନ ।

ଆର୍ଥିକ ସାହାଯ୍ୟ ଏକମାତ୍ର ସାହାଯ୍ୟ ନୁହେଁ । ଯେଉଁମାନଙ୍କ ସାହାଯ୍ୟ ଆର୍ଥିକ ସାହାଯ୍ୟଠୁ ବହୁ ଉର୍ଦ୍ଧ୍ୱରେ, ସୂକ୍ଷ୍ମ ତଥା ଅଦୃଶ୍ୟପ୍ରାୟ ଭାବରେ ଯେଉଁମାନେ ଖାଲି ପ୍ରେରଣା ବଳରେ ଅନୁଷ୍ଠାନ ଗଢ଼ି

ଦେଇପାରନ୍ତି, ଯେଉଁମାନଙ୍କ ପାଇଁ ପୁରାତନ ଛାତ୍ର ସଂସଦ ଆଜି ଏହି ପର୍ଯ୍ୟାୟରେ ପହଞ୍ଚିଛି ସେମାନଙ୍କୁ ହୀରକ ଜୟନ୍ତୀ ପାଳନ ଅବସରରେ ସ୍ମରଣ କରିବା ମୋର କର୍ତ୍ତବ୍ୟ ମନେ କରୁଛି । ମାତ୍ର ଦୁଇଜଣଙ୍କ ନାମ ନେବି । ସଂସଦର ପ୍ରତିଷ୍ଠାତା ସଭାପତି ସ୍ୱର୍ଗତଃ ପ୍ରଫେସର ପ୍ରଫୁଲ୍ଲ କୁମାର ରଥ ଏବଂ ବାଲେଶ୍ୱରର ବିବେକ ତଥା ବାଲେଶ୍ୱର ଶିକ୍ଷା ସମାଜର ପ୍ରାଣକେନ୍ଦ୍ର ପ୍ରବୀଣ ସ୍ୱାଧୀନତା ସଂଗ୍ରାମୀ ଶ୍ରୀଯୁକ୍ତ ରବୀନ୍ଦ୍ରମୋହନ ଦାସ । ଏହି ମହାନ ବ୍ୟକ୍ତିମାନଙ୍କ ପ୍ରେରଣା ଆମକୁ ଏତିକି ବାଟ ଆଗେଇ ଆଣିଛି ଏବଂ ଆଜି ଆମେ ଯାହା ବି କରିଛୁ ବା କରୁଛୁ ସବୁଥିରେ ଶ୍ରେୟ ଏଇ ମାନଙ୍କର । ପୁରାତନ ଛାତ୍ର ସଂସଦ ତରଫରୁ ଏହି ମହାପୁରୁଷ ମାନଙ୍କ ପାଖରେ ମୁଁ ମୋର କୃତଜ୍ଞତା ଜ୍ଞାପନ କରୁଛି ।

• ପ୍ରଧାପକ, ଇଂରାଜୀ ଭାଷା ଓ ସାହିତ୍ୟ,<br>ଫକୀରମୋହନ ମହାବିଦ୍ୟାଳୟ, ବାଲେଶ୍ୱର

# ଛାତ୍ର-ଶିକ୍ଷକ ସଂପର୍କ : ସେ କାଳର ସ୍ମୃତି

ଶ୍ରୀ ତ୍ରିଲୋଚନ ମିଶ୍ର

**ସେ**କାଳର ସ୍ମୃତି

ସେ କାଳ କହିଲେ ଯେ ସାଧାରଣ ଭାବରେ ସବୁ ପୁରାତନ ଦିନ ଗୁଡ଼ିକୁ ମନେ କରୁଛି, ତାହା ନୁହେଁ, ବରଂ ଆଦର୍ଶଗତ ଦୃଷ୍ଟିରୁ ଭିନ୍ନ ଏକ ଅତୀତର କଥା କହୁଛି । ମୋ କହିବା ଅନୁସାରେ ସେଇ ଅତୀତ କାଳଟିର ସମୟ ବିଗତ ଶତାବ୍ଦୀର ପଞ୍ଚମ ଦଶକ । ଏହାପରେ ପ୍ରାୟ ପଚାଶ ବର୍ଷ ବିତିଗଲାଣି । ସମାଜିକ ପରମ୍ପରା କିଛି ପରିମାଣରେ ବଦଳିଲାଣି । ସମୟର ଚକି ଘୁରିଘୁରି କେତୋଟି ମୋଡ଼କାଟି ଏ କାଳରେ ପହଞ୍ଚି ଯାଇଛି । ଏବେକାର ବସ୍ତୁବାଦୀ ପରିବେଶ ମଧ୍ୟରୁ ଆଖି ଫେରାଇ ତେବେକାର ଭାବାବେଗପୂର୍ଣ୍ଣ ପାରିପାର୍ଶ୍ୱିକ ଆଡ଼କୁ ଦୃଷ୍ଟି ପକାଇଲେ କାଲି ଓ ଆଜି ଭିତରେ ଥିବା ପାର୍ଥକ୍ୟଟି ସ୍ୱଷ୍ଟ ଧରାପଡ଼େ । ଏହି ପାର୍ଥକ୍ୟ କେବଳ ବାହ୍ୟ କିମ୍ବା ଭୌତିକସ୍ତରରେ ସୀମିତ ହୋଇ ରହିନାହିଁ; ପରନ୍ତୁ ଏହା ସାମାଜିକ ଓ ମାନବିକ ସଂପର୍କକୁ ଯଥେଷ୍ଟ ପ୍ରଭାବିତ କରିଛି । ଏହି ପରିପ୍ରେକ୍ଷୀରେ ଚାଲନ୍ତୁ ଆମେ ବିଂଶ ଶତାବ୍ଦୀରେ ଚତୁର୍ଥ-ପଞ୍ଚମ ଦଶକ ଆଡ଼କୁ ଆଖି ପକାଇବା ।

ଚତୁର୍ଥ ଦଶକଟି ଅନେକ ଦିଗରୁ ଗୁରୁତ୍ୱପୂର୍ଣ୍ଣ । ଅବଶ୍ୟ, ସ୍ୱାଧୀନତା -ପ୍ରାପ୍ତି ଏହି ଦଶନ୍ଧିର ଚରମ ସିଦ୍ଧି । ମାତ୍ର ସାଧାରଣ ଭାବରେ ବିଚାର କଲେ ଏହି ସମୟଟି ବହୁ ସାଧନରେ ମଣ୍ଡିତ । ଏହା ହେଉଛି ପୂର୍ବତନ ସାମାଜିକ ଆଦର୍ଶର ପରିପୂର୍ଣ୍ଣତାର ସମୟ । ବ୍ୟକ୍ତିଗତ ଜୀବନରେ ମୂଲ୍ୟବୋଧ ଓ ଆଦର୍ଶପରାୟଣତା, ସାମାଜିକ ଜୀବନରେ ଏକତା ଓ ସଚେତନତା ଏବଂ ରାଜନୈତିକ ସ୍ତରରେ ସଂଗ୍ରାମ ଓ ସଂକଳ୍ପ ଏହି ସମୟର ବୈଶିଷ୍ଟ୍ୟ । ଅନ୍ୟାନ୍ୟ ବିଭାଗଗୁଡ଼ିକ ମଧ୍ୟରେ ଯେଉଁ କେତୋଟି ଯୁଗ ଲକ୍ଷଣ ପ୍ରଣିଧାନଯୋଗ୍ୟ ସେଥି ମଧ୍ୟରୁ ଜନଜୀବନରେ ଉତ୍ସାହ ଓ ଉନ୍ମାଦନା ଏବଂ ଆଞ୍ଚଳିକସ୍ତରରେ ଆଶା ଆକାଂକ୍ଷା ପୂରଣର ପ୍ରତ୍ୟାଶା ଓ ପ୍ରୟାସ ପ୍ରଧାନ । ମୋଟାମୋଟି ଭାବରେ କହିବାକୁ ଗଲେ ବିଂଶ ଶତାବ୍ଦୀର ଚତୁର୍ଥ ଦଶକଟି ଥିଲା ଜନ-ଜାଗରଣ ସମୟ । ସାହିତ୍ୟ ଓ କଳା କ୍ଷେତ୍ରରେ ଏହି ଦଶକଟି ଆଧୁନିକତାର ଅଭ୍ୟୁଦୟ କାଳ । ଉଚ୍ଚଶିକ୍ଷାର ଅଭିବୃଦ୍ଧି ମଧ୍ୟ ଆରଂଭ ହୁଏ ଏହି ସମୟରୁ । ଉତ୍କଳ ବିଶ୍ୱବିଦ୍ୟାଳୟର ସ୍ଥାପନା ହୁଏ ୧୯୪୩ରେ । ସେହି ସମୟରୁ ଆରମ୍ଭ କରି ସ୍କୁଲ କଲେଜମାନ କ୍ରମଶଃ ବହୁ ସଂଖ୍ୟାରେ ଗଢ଼ିଉଠେ । ତରୁଣ ମାନସରେ ଜାଗେ ନୂତନତାର ସ୍ୱପ୍ନ, ନୂତନ ଉଦ୍ଦୀପନା । ଏହି ଭାବାବେଗମୟ ଧାରାଟି ପରବର୍ତ୍ତୀ ଦଶକ ମଧ୍ୟଭାଗ ପର୍ଯ୍ୟନ୍ତ ଯେନତେନ ପ୍ରକାରେ ଅତୁଟ ରହେ । ମାତ୍ର ଶେଷ ଆଡ଼କୁ ଜାଗି ଉଠୁଥିବା ନୈରାଶ୍ୟବୋଧ ଘନୀଭୂତ ହୁଏ । ସୁରୁ ହୁଏ ପ୍ରତିକ୍ରିୟାର ପର୍ବ । ସମୟ ଭିନ୍ନ ମୋଡ଼ ନିଏ । ପରବର୍ତ୍ତୀ ଦଶକଟି କାଳ-ସନ୍ଧିର ସମୟ । ତାହା ପରଠାରୁ ଏ କାଳର ସୂତ୍ରପାତ ବୋଲି କୁହାଯାଇ ପାରେ ।

ମୋର ସୌଭାଗ୍ୟ ଯେ ମୁଁ ସେ କାଳରୁ ଏ କାଳ ପର୍ଯ୍ୟନ୍ତ ଅଧାପନା କରିବାର ସୁଯୋଗ ପାଇଛି । ଅଧାପକୀୟ ଆଦ୍ୟବାଚନ ପ୍ରସ୍ତୁତ କରିଥିଲି ସେ କାଳରେ । ୧୯୪୮ ମସିହା ଜୁଲାଇ ମାସ । ଇଂରାଜୀର ଅଧାପକ ରୂପେ ଯୋଗଦେଇ ଥିଲି ବାଲେଶ୍ୱର କଲେଜରେ । ସେତେବେଳକୁ କଲେଜଟି ମାତ୍ର ୪ ବର୍ଷର ଏକ ବଢ଼ନ୍ତ ଶିଶୁ ଅନୁଷ୍ଠାନ । ଏଥିରେ ଥାଏ କେବଳ କଳା ବିଭାଗ - କେତୋଟି ପ୍ରଧାନ ବିଷୟରେ ସମ୍ମାନ ଶ୍ରେଣୀ ପର୍ଯ୍ୟନ୍ତ । ପହିଲି ବେଚ୍‌ର ଛାତ୍ର-ଛାତ୍ରୀ ବି.ଏ. ପାଶ୍ କରି ଚାଲିଯାଇଥାନ୍ତି । ପ୍ରସ୍ତୁତ ହେଉଥାନ୍ତି ଦ୍ୱିତୀୟ ବ୍ୟାଚ୍ । ପରବର୍ଷ ଅର୍ଥାତ୍ ୧୯୪୯ରେ କଲେଜର ନାମକରଣ ହୁଏ ଫକୀରମୋହନଙ୍କ

ନାମାନୁସାରେ ଏବଂ ବିଜ୍ଞାନ ଶ୍ରେଣୀ ଆରମ୍ଭ କରାଯାଏ । ଅନୁଷ୍ଠାନ ଥାଏ ଆକାରରେ ମଧ୍ୟମ ଧରଣର । ଚୁପ୍‌ଚାପ୍ ଦିନ କଟିଗଲା ପରି ଏତେ ଛୋଟ ନୁହେଁ, କି ଦୈନନ୍ଦିନ ଶୃଙ୍ଖଳା ରଖିବା ପାଇଁ ଅସମ୍ଭାଳ ହେଲାପରି ବଡ଼ ନୁହେଁ । ମୁଁ ଯୋଗଦେଲା ବେଳେ ଛାତ୍ର ସଂଖ୍ୟା ପାଞ୍ଚଶହରୁ ଟିକିଏ କମ୍; ଅଧ୍ୟକ୍ଷଙ୍କୁ ଲଗାଇ ଅଧ୍ୟାପକମାନଙ୍କ ସଂଖ୍ୟା ତେର । ମୁଁ କଲେଜରୁ ବିଦାୟ ନେଲାବେଳକୁ ଛାତ୍ରସଂଖ୍ୟା ଛଅଶହରୁ ସାମାନ୍ୟ ବେଶି । ଅଧ୍ୟାପକ ସଂଖ୍ୟା ଛବିଶ କି ସତେଇଶ । ଅଧ୍ୟକ୍ଷ, ଅଧ୍ୟାପକ, ଛାତ୍ର-ଛାତ୍ରୀ ଆମେ ସମସ୍ତେ ପରିଚୟ ସୂତ୍ରରେ ବନ୍ଧା - ସତେ ଯେପରି ଗୋଟିଏ ବଡ଼ ଯୌଥ ପରିବାରର ସଦସ୍ୟମଣ୍ଡଳୀ । ସୌଭାଗ୍ୟବଶତଃ ଏପରି ଏକ ଅନ୍ତରଙ୍ଗ ପରିବେଶରେ ଅଧ୍ୟାପକ ଜୀବନର ପ୍ରଥମ ଚାରିବର୍ଷ କାଟାଇଛି ପ୍ରବୀଣ ଓ ନବୀନ ଅଧ୍ୟାପକ ବନ୍ଧୁମାନଙ୍କ ଗହଣରେ; ଶିକ୍ଷାଦାନ କରିଛି ତାରୁଣ୍ୟଦୀପ୍ତ, ଶ୍ରଦ୍ଧାଳୁ ଦଳଦଳ ଛାତ୍ର-ଛାତ୍ରୀ ଏବଂ ଶୁଭେଚ୍ଛା ଲାଭ କରିଛି ବହୁ ବରିଷ୍ଠ ନାଗରିକମାନଙ୍କର । ସେଦିନର ସେହି ସ୍ମୃତି ଯେତିକି ନିବିଡ଼ ସେତିକି ମାର୍ମିକ ।

ସେ ସମୟର ଛାତ୍ର-ଶିକ୍ଷକ, ବିଶିଷ୍ଟ ବ୍ୟକ୍ତିତ୍ୱ ଓ ବିଶେଷ ଘଟଣାବଳୀର ସ୍ମୃତିଚାରଣ କରିବା ଆଜି ଏ ଲେଖାର ଉଦ୍ଦେଶ୍ୟ ନୁହେଁ । ଏ ସବୁ ବିଷୟରେ ଯାହା ଯାହା ସ୍ମରଣରେ ଅଛି, ତାହା ଏଥିପୂର୍ବରୁ ଫକୀରମୋହନ ସାହିତ୍ୟ ପରିଷଦ ର ସ୍ମରଣିକା ଓ ପୁରାତନ ଛାତ୍ର-ସଂସଦର 'ପ୍ରାକ୍ତନିକା'ରେ ଲେଖି ସାରିଛି । ଏଥର ଯେଉଁ ବିଷୟରେ ସୂଚନା ଦେବାକୁ ଚାହୁଁଛି ତାହ ହେଉଛି ସେକାଳର ଛାତ୍ର-ଶିକ୍ଷକ ସଂପର୍କ । ଏହା ସେଦିନର ଏକ ମୂଲ୍ୟବାନ ଉପଲବ୍ଧି ଯାହା କ୍ରମଶଃ ନଷ୍ଟ ହୋଇଯାଇଛି ।

କେତେକଙ୍କ ମତରେ ସେ କାଳର ଛାତ୍ର-ଶିକ୍ଷକ ସଂପର୍କ ଗୁରୁକୁଳ ଆଦର୍ଶରେ ଅନୁପ୍ରାଣିତ ଥିଲା । ମୋ ମତରେ ଏହା ସଂପୂର୍ଣ୍ଣ ଠିକ୍ ନୁହେଁ ଯଦିଚ ସେହି ଆଦର୍ଶ ଆମ ଶିକ୍ଷା ପରମ୍ପରାର ମୂଳଭିତ୍ତି ବୋଲି ଧରି ନିଆଯାଇପାରେ । ଆମେ ଗୁରୁ ଶବ୍ଦଟିର ଅପପ୍ରୟୋଗ କରି ଚାଲିଛେ । ଧର୍ମଶାସ୍ତ୍ରରେ ଶିକ୍ଷକ ଅର୍ଥରେ ତିନୋଟି ପ୍ରତିଶବ୍ଦ ମିଳେ - ଗୁରୁ, ଆଚାର୍ଯ୍ୟ ଓ ଉପାଧ୍ୟାୟ । ଆଚାର୍ଯ୍ୟ ଆଚାର ଓ ଆଚରଣଗତ ଶିକ୍ଷାଦାନ ସହିତ ଅବୈତନିକ ବେଦାଧ୍ୟୟନ କରାଉଥିବା ସ୍ଥଳେ ଉପାଧ୍ୟାୟ ବୃତ୍ତି ନିମନ୍ତେ ବେଦର କୌଣସି ଅଂଶ ଅଧ୍ୟାପନା କରନ୍ତି । କିନ୍ତୁ ଗୁରୁଙ୍କର ଦାୟିତ୍ୱ ସାମୂହିକ - ସେ ଲୌକିକ, ବୈଦିକ ଓ ଆଧ୍ୟାତ୍ମିକ ଶିକ୍ଷାଦାନ କରନ୍ତି । ଅଜ୍ଞାନତା ନିବାରଣ ଓ ଧର୍ମାଦି ଉପଦେଶ ଦ୍ୱାରା ଛାତ୍ରର ଉଦ୍‌ଗମନ ଅର୍ଥାତ୍ ଉନ୍ନତି (uplift) ବିଧାନ କରୁଥିବାରୁ ସେ ଗରୀୟାନ ବା ଗୁରୁ । ଗୁରୁକୁଳ ଏକ ଆବାସିକ ଅନୁଷ୍ଠାନ ଯେଉଁଠି ଗୁରୁ ଦୈନନ୍ଦିନ ଭୋଜନ ଦାନପୂର୍ବକ ବିଧିସମ୍ମତ ଅଧ୍ୟାପନା କରନ୍ତି । ସେହିପରି କୁଳପତି ଦଶ ସହସ୍ର ଛାତ୍ରଙ୍କର ଭୋଜନ ଓ ଅଧ୍ୟୟନର ପ୍ରାବଧାନ ସହିତ ନିଜେ ଅଧ୍ୟୟନ ଓ ଅଧ୍ୟାପନା କରୁଥିଲେ । ଏ ସବୁ ବୈଦିକ ଓ ପୌରାଣିକ ଯୁଗର ସଂସ୍ଥା । ଆମ୍ଭେମାନେ ଗୁରୁପଦବାଚ୍ୟ ନୋହୁଁ, କେବଳ ଅଧ୍ୟାପକ ଅଥବା ଶିକ୍ଷକ ମାତ୍ର ।

ଆଉ ଗୋଟିଏ କଥା । ଗୁରୁ ନିର୍ଦ୍ଦେଶ ବା ଉପଦେଶ ଦେଲେ ଶିଷ୍ୟମାନେ ପ୍ରଶ୍ନ କରୁନଥିଲେ, ବିନା ଚର୍ଚ୍ଚା ଓ ଆଲୋଚନାରେ ତାହା ଗ୍ରହଣ କରି ନେଉଥିଲେ । ଗୁରୁବାକ୍ୟ ଶିରୋଧାର୍ଯ୍ୟ ଥିଲା । ଆମ ଶିକ୍ଷାପଦ୍ଧତି ପରବର୍ତ୍ତୀ ଯୁଗର । ଏଥିରେ ଛାତ୍ର ଓ ଶିକ୍ଷକ ଉଭୟେ ଖୋଲାମନରେ ବୌଦ୍ଧିକ ଦିଗରୁ ଆଲୋଚନା କରିପାରନ୍ତି । ଶିକ୍ଷକ ଦିଗ୍‌ଦର୍ଶନ ଦିଅନ୍ତି ସତ କିନ୍ତୁ ଛାତ୍ରମାନେ ଜିଜ୍ଞାସା ମାଧ୍ୟମରେ ନୂତନ ଦିଗ ଉନ୍ମୋଚନ କରିବାରେ ସହାୟକ ହୁଅନ୍ତି ।

ଯୁଗାନୁଯାୟୀ ପାର୍ଥକ୍ୟ ଯାହା ହେଇ ଥାଉନା କାହିଁକି ସେ କାଳ ପର୍ଯ୍ୟନ୍ତ ଆମ ଶିକ୍ଷା ପରମ୍ପରାରେ ଗୁରୁକୁଳର ଅନେକଗୁଡ଼ିଏ ଆଦର୍ଶ ସଂରକ୍ଷିତ ଥିଲା । ଶ୍ରଦ୍ଧା, ଶୁଚିତା, ନିଷ୍ଠତା ଓ ଶୃଙ୍ଖଳା ତନ୍ମଧ୍ୟରୁ ପ୍ରଧାନ ।

ଅଧ୍ୟୟନ ଓ ଅଧ୍ୟାପନାର ମାପକାଠି ଥିଲା ଶ୍ରଦ୍ଧା, ଆଗ୍ରହ, ଆନ୍ତରିକତା ଓ ଅଧ୍ୟବସାୟ । ଶ୍ରଦ୍ଧା

ଉଭୟ ଛାତ୍ର ଓ ଶିକ୍ଷକର ଜ୍ଞାନର୍ଜନ ପାଇଁ ଓ ପରସ୍ପର ପ୍ରତି । ଏହାକୁ କେନ୍ଦ୍ରକରି ସେମାନଙ୍କର ସଂପର୍କ । ସେଦିନ ଆମେ ଯେଉଁ ମୁଷ୍ଟିମେୟ କେତେଜଣ ଅଧ୍ୟାପକ ଥିଲୁ ସମସ୍ତେ ଶିକ୍ଷାଦାନକୁ ଖାଲି ବୃତ୍ତି ଭାବରେ ନୁହେଁ ଜୀବନର ବ୍ରତଭାବରେ ବାଛି ନେଇଥିଲୁ । ଚତୁର୍ଥ ଦଶକରେ ତାତ୍‌କାଳୀକ ଆଦର୍ଶକୁ ଦୃଷ୍ଟିରେ ରଖି ଜଣେ ଶିକ୍ଷିତ ଯୁବକର ଉଚ୍ଚାଭିଳାଷ ଥିଲା ଅଧ୍ୟାପକ ହେବା, ଠିକ୍ ଯେପରି ସର୍ବଭାରତୀୟ ପ୍ରଶାସନିକ ସେବାରେ ନିଯୁକ୍ତ ହେବା ପଞ୍ଚମ ଦଶକରେ ଆଦର୍ଶରୂପେ ପରିଗଣିତ ହେଲା । ସେଦିନ କଲେଜ କେବଳ ଏକ ଉଚ୍ଚତମ ଶିକ୍ଷାନୁଷ୍ଠାନ ନୁହେଁ ପରନ୍ତୁ ସାମାଜିକ ଓ ସାଂସ୍କୃତିକ ବିକାଶର ପ୍ରସ୍ତୁତି କେନ୍ଦ୍ରରୂପେ ସ୍ୱୀକୃତ ହେଉଥିଲା । ଅନ୍ୟ କଥାରେ କଲେଜ ଥିଲା ଜାତୀୟ ପ୍ରସ୍ତୁତିର ପ୍ରୟୋଗଶାଳା ଏବଂ ଅଧ୍ୟାପକ ମାନଙ୍କର ଭୂମିକା ଥିଲା ଉକ୍ତ ପ୍ରୟୋଗଶାଳାର ପରିଚାୟକ ଓ ନିର୍ଦ୍ଦେଶକର ଦାୟିତ୍ୱବହନ କରିବା ।

ଅଧ୍ୟୟନ ପ୍ରତି ଛାତ୍ରମାନଙ୍କ ଶ୍ରଦ୍ଧା କହିଲେ ନସରେ । ସକାଳ ସାତଟାରେ ତଲେଜ ବସେ । ବାଲେଶ୍ୱରରେ ଶୀତର ପ୍ରାଦୁର୍ଭାବ ସାମାନ୍ୟ ବେଶି । ମାତ୍ର ସହରର ବିଭିନ୍ନପ୍ରାନ୍ତରୁ ଓ ବାହାରୁ ଛାତ୍ରମାନେ କିଛି ସାଇକେଲ ଯୋଗେ, ଅନ୍ୟ ସମସ୍ତେ ପାଦରେ ଚାଲି କଲେଜରେ ଉପସ୍ଥିତ ହୁଅନ୍ତି ସାତଟା ପୂର୍ବରୁ । ଉପସ୍ଥାନ ପ୍ରାୟ ଶତକଡ଼ା ଶହେ । ତା'ପରେ ମନୋଯୋଗର ପ୍ରଶ୍ନ; ସେଥିରେ ସାମାନ୍ୟତମ ବ୍ୟତିକ୍ରମର ଦୃଷ୍ଟାନ୍ତ ମଧ୍ୟ ବିରଳ । ଅଧ୍ୟୟନ ସମୟରେ ଶ୍ରେଣୀଗୃହରେ ଶୋରିଷ ପଡ଼ିବା ଶବ୍ଦ ଶୁଭିଲା ଭଳି ନୀରବତା; ଶ୍ରେଣୀ ବାହାରେ ସୌହାର୍ଦ୍ଦ୍ୟ, ଶିଷ୍ଟତା ଓ ଶୃଙ୍ଖଳା । ଏଯୁଗରେ ଏହା ଅତିଶୟୋକ୍ତି ବୋଲି ମନେ ହେବ ।

୧୯୪୮ ମସିହାର କଥା କହୁଛି । ସନ୍ତୋଷଜନକ ଭାବରେ ପାଠ୍ୟକ୍ରମ ସମାପ୍ତ ହେବାର ଆଶଂକା ହେଲା । ସେତେବେଳେ ପୂଜାଛୁଟି ହେଉଥାଏ ପ୍ରାୟ ଛ' ସପ୍ତାହ କାଳ । ଆମେ ଅଧ୍ୟାପକମାନେ ଠିକ୍ କଲୁ ଯେ ଛୁଟିରେ ଏକ୍ସଟ୍ରା (extra) କ୍ଲାସ କରି ପାଠ୍ୟକ୍ରମ ଶେଷ କରିଦେବୁ । କେବଳ ପୂଜାର କେତୋଟି ଦିନ ବାଦ ଦେଇ କ୍ଲାସ ନେଲୁ । ଛାତ୍ରମାନଙ୍କ ଆଗ୍ରହ ଆହୁରି ଅଧିକ । ଛୁଟିରେ ସେମାନେ ଘରକୁ ଯିବା ବନ୍ଦ କରିଦେଲେ । ମୋ ଭାଗରେ ଇଂରାଜୀ ପାଶ କ୍ଲାସ ସକାଳ ୭ଟାରୁ ୯ଟା; ପୁନଶ୍ଚ ଅନର୍ସ କ୍ଲାସ ତିନିଟାରୁ ପାଞ୍ଚଟା । ସନ୍ଧ୍ୟାରେ ତହିଁ ପରଦିନ ଅଧ୍ୟାପନା ସକାଶେ ପ୍ରସ୍ତୁତି । ଦିନ ପରେ ଦିନ ଅତୁଟ ଆଗ୍ରହରେ ଆମେ ଶିକ୍ଷକ ଓ ଛାତ୍ର କ୍ଲାସ କରିଛୁଁ ଅଧ୍ୟୟନରେ ଶ୍ରଦ୍ଧା ରଖି ଓ ପରସ୍ପର ପ୍ରତି ହୃଦୟରେ ସ୍ନେହ ଓ ଭକ୍ତିଭାବ ପୋଷଣ କରି । ପଞ୍ଚମ ଦଶକରେ ମଧ୍ୟ କିଛି ଅତିରିକ୍ତ କ୍ଲାସ ନେଇଛି ରେଭେନ୍‌ସା କଲେଜରେ । କିନ୍ତୁ ପୂର୍ବର ଶ୍ରଦ୍ଧା ଓ ଆଗ୍ରହ କମିକମି ଆସୁଥିବାର ଲକ୍ଷ୍ୟ କରିଛି । ପାଠ୍ୟାତିରିକ୍ତ ବିଷୟରେ ସାନ୍ଧ୍ୟ ବକ୍ତୃତାରେ (extramural lecture) ଆୟୋଜନ କରୁଥିଲୁଁ ଫକୀରମୋହନ କଲେଜରେ । ଉପସ୍ଥାନ ପାଇଁ ଭିଡ଼ କହିଲେ ନସରେ । ହଲ୍ ବାହାରେ ମଧ୍ୟ ପିଲାମାନେ ଜମା ହୁଅନ୍ତି ଶୁଣିବା ପାଇଁ - ମନରେ ଭରପୂର ଆଗ୍ରହ, ଆଖିରେ ଜିଜ୍ଞାସା ! ଷଷ୍ଠ ଦଶକ ବେଳକୁ ଚିତ୍ରଟି ସଂପୂର୍ଣ୍ଣ ଭିନ୍ନ ପ୍ରକାର । ବାହାରୁ ନିମନ୍ତ୍ରିତ ପ୍ରଖ୍ୟାତ ବିଦ୍ୱାନ ବକ୍ତାମାନଙ୍କ ସଭାରେ ଭାଷଣ ଶୁଣିବା ପାଇଁ ଶ୍ରୋତା ଅଭାବ ହେତୁ ଛାତ୍ରବାସମାନଙ୍କୁ ଅନୁରୋଧ ଜଣାଇ ଅନ୍ତେଃବାସୀମାନଙ୍କୁ ସମବେତ କରି ସଭାର ଆୟୋଜନ କରିବାକୁ ପଡ଼େ ।

ସେ କାଳରେ ଛାତ୍ରମାନଙ୍କ ଆଚରଣ ସମ୍ବନ୍ଧରେ କୌଣସି ପ୍ରଶ୍ନ ଉଠିବାର ନୁହେଁ । ଶୁଦ୍ଧ ଆଚରଣ ଏକ ଛାତ୍ରସୁଲଭ ଗୁଣ । ଶିକ୍ଷକ ଓ ଗୁରୁଜନମାନଙ୍କୁ ସମ୍ମାନ ଛାତ୍ରମାନଙ୍କର ପ୍ରକୃତିଗତ ବୈଶିଷ୍ଟ୍ୟ ଥିଲା । ବିଶେଷକରି ଫକୀରମୋହନ କଲେଜରେ ଆମେ ଅଧ୍ୟାପକମାନେ ଅଧିକାଂଶ ଥିଲୁ ଅର୍ବାଚୀନ । ଛାତ୍ରମାନେ ଆମ ସହିତ ସହଜରେ ମିଶି ପାରୁଥିଲେ । ଗୁରୁତ୍ୱ ବଜାୟ ରଖିବା ସକାଶେ ଆମେ ଦୂରତ୍ୱ ରକ୍ଷା କରୁ ନଥିଲୁ । ପରୀକ୍ଷାରେ ପ୍ରାୟ କେହି ଅସାଧୁତା ଅବଲମ୍ବନ କରୁନଥିଲେ । ଯଦି କାଁ ଭାଁ ଏପରି କେହି କରୁଥିଲା ତ ତାହାକୁ ସାଧାରଣ ଛାତ୍ର ଘୃଣାଚକ୍ଷୁରେ ଦେଖୁଥିଲେ ।

ମାଦକଦ୍ରବ୍ୟର କଥା ଉଠୁନାହିଁ । ଗୁରୁଜନମାନଙ୍କ ସମ୍ମୁଖରେ ତ କେବେନୁହେଁ, ଏପରିକି ଧୂମପାନ କରିବା କାର୍ଯ୍ୟଟିକୁ ଛାତ୍ରମାନେ ଗର୍ହିତ ବୋଲି ବିଚାରୁଥିଲେ । ଥରକର କଥା । ମୁଁ ଥାଏ କଲେଜ ନାଟ୍ୟ ପରିଷଦର ଉପସଭାପତି । ଜଣେ ଛାତ୍ର ବାରିପଦା କଲେଜରୁ ଆସି ଦ୍ୱିତୀୟ ବାର୍ଷିକ ଶ୍ରେଣୀରେ ଯୋଗଦେଲେ । ବାର୍ଷିକ କଲେଜ ଡ୍ରାମାରେ ତାଙ୍କୁ ଗୋଟିଏ ପ୍ରମୁଖ ଭୂମିକାରେ ଅଭିନୟ କରିବାକୁ ଦିଆଯାଇଥାଏ । ସେ ଗୋଟିଏ ଦୃଶ୍ୟରେ ଷ୍ଟେଜ ଆସିବାକୁ ଡେରି କଲେ । ମିନିଟିଏ କି ଦୁଇ ମିନିଟ ଆଲୁଅ ଲିଭିଗଲା । ଆଲୁଅ ଜଳିଲା ବେଳକୁ ଦେଖିଲି ସେ ଲୁହଭରା ଆଖିରେ ଅଭିନୟ କରିବାକୁ ପ୍ରବେଶ କଲେ । ଆବେଗପୂର୍ଣ୍ଣଭାବରେ ଅଭିନୟ ବି କଲେ ଏବଂ ପ୍ରଶଂସାସୂଚନକ କରତାଳି ମଧ୍ୟ ପାଇଲେ । ପରେ ଜାଣିଲି ସେ ଗ୍ରୀନ୍‌ରୁମ୍‌ରେ ସର୍ବସମକ୍ଷରେ ଧୂମପାନ କରିବାପାଇଁ ଜିଦ୍ କରିଥିଲେ ଏବଂ ସହ-ଅଭିନେତାମାନେ ଅନ୍ୟବାଟ ନଦେଖି ତାଙ୍କ ଉପରକୁ ହାତ ଉଠାଇଥିଲେ । ଏହି ଘଟଣାଟି ତାଙ୍କର ଜଣେ ବନ୍ଧୁ ଅନ୍ୟଭାବରେ ସ୍ୱରଚିତ ଏକ ପୁସ୍ତକରେ ପ୍ରକାଶ କରିଛନ୍ତି ।

ଆଉ ଏକ ହାସ୍ୟାସ୍ପଦ କଥା ମନେ ପଡୁଛି । John Keatsଙ୍କର ଏକ ଦୀର୍ଘ କବିତା Eve of St.Agnes ଇଂରାଜୀ ପାଠ୍ୟର ଅନ୍ତର୍ଭୁକ୍ତ ଥାଏ । କୀଟ୍‌ସ ଜଣେ ଇନ୍ଦ୍ରିୟାନୁଭୂତି-ପ୍ରବଣ (Sensuous) କବି । ଉକ୍ତ କବିତାରେ ନାୟକ Porphyro ନାୟିକା Madelineକୁ ତାହାର ଶୟନକକ୍ଷରେ ସାକ୍ଷାତ କରେ । କବିତାର ଦିଓଟି stanzaରେ କକ୍ଷର ଝରକା, ଜହ୍ନ ଆଲୁଅ, ଶଯ୍ୟାର ପରିପାଟି ଓ ସଞ୍ଚିତ ଖାଦ୍ୟସାମଗ୍ରୀର ସୁନ୍ଦର ଚିତ୍ତସ୍ପର୍ଶୀ ବର୍ଣ୍ଣନା ଦିଆଯାଇଛି । ଶ୍ରେଣୀ ପରୀକ୍ଷାରେ ପ୍ରଶ୍ନଥାଏ -'କୀଟସ୍ ଜଣେ ଇନ୍ଦ୍ରିୟାନୁଭୂତିପ୍ରବଣ କବି, ଏହା ପାଠ୍ୟ କବିତାରୁ ପ୍ରତିପାଦନ କର ।' ପ୍ରଭାକର ବୋଲି ଜଣେ ଛାତ୍ର ଉତ୍ତରରେ ଲେଖିଥିଲେ ଯେ କୀଟସ୍ ଜଣେ ନୀତି-ବିହୀନ କବି (immoral poet)। ପଢ଼ାଉଥିଲି । ମୁଁ ତେଣୁ ସେ ଉତ୍ତରକୁ ଉଲ୍ଲେଖକରି ଇନ୍ଦ୍ରିୟଗ୍ରାହିତା (sensuousness) ଓ ଯୌନଚିନ୍ତା (sensuality) ଦୁଇଟି ଶବ୍ଦର ପାର୍ଥକ୍ୟ ବୁଝାଇଲି । ପ୍ରଭାକରଙ୍କୁ ନିଶ୍ଚିତ ବାଧିଲା । ଅପ୍ରତ୍ୟାଶିତ ଭାବରେ ସେ ଗୋଟିଏ ଦିଓଟି କ୍ଲାସରେ ଅନୁପସ୍ଥିତ ରହିଲା । ଦିନେ ଦେଖା ହେଲାରୁ ପଚାରିଲି, କାହିଁକି କ୍ଲାସକୁ ଆସୁନାହିଁ ? ପ୍ରଭାକର କାନ୍ଦି ପକାଇଲା । ସମ୍ଭବତଃ ନିଜକୁ ଦୋଷୀ ଭାବିନେଲା । କେତେ ସରଳ ! ସେ କାଳର ଛାତ୍ର-ଶିକ୍ଷକ ସଂପର୍କ ଏକ ସମନ୍ୱିତ ସଂପର୍କ । ସଂଘର୍ଷତ ଦୂରର କଥା, ଏପରିକି ଉଚ୍ଚ-ବାଚ୍ୟ ଅଥବା ବାକ୍ୟ ବିନିମୟର କୌଣସି ଘଟଣା ଜଣାନାହିଁ । ପ୍ରଥମ ଛାତ୍ର ଆନ୍ଦୋଳନ ହୁଏ ୧୯୫୧ ମସିହା ସରକାରଙ୍କ ଦରମା ବଢ଼ାର ବିରୋଧ କରି । ମନେରଖିବାକୁ ହେବ ଯେ ଏହା ଛାତ୍ରମାନଙ୍କ ସ୍ୱାର୍ଥ ସପକ୍ଷରେ ଓ ସରକାରୀ ସିଦ୍ଧାନ୍ତ ବିପକ୍ଷରେ ପ୍ରତିବାଦ । ଫକୀରମୋହନ କଲେଜରେ ଏହି ଆନ୍ଦୋଳନରେ ନେତୃତ୍ୱ ନିଅନ୍ତି ଦୁଇଜଣ ଛାତ୍ରନେତା ଶ୍ୟାମସୁନ୍ଦର ମହାପାତ୍ର ଓ ଦୈତାରୀ ଦାସ । ଆନ୍ଦୋଳନକୁ ସମର୍ଥନ କରିବାକୁ ଆସନ୍ତି କଟକ ଲ' କଲେଜର ଛାତ୍ର ପ୍ରବୀର ପାଲିତ ଓ ଆଉଜଣେ ଦୁଇଜଣ । ଅଧ୍ୟକ୍ଷ ଥାନ୍ତି ସୁନ୍ଦରମ୍ । କଲେଜ ହଲରେ ଷ୍ଟ୍ରାଇକ୍‌ର ସପକ୍ଷ ଓ ବିପକ୍ଷରେ ସେ ଗୋଟିଏ ଛାତ୍ରସଭା ଡକାନ୍ତି ଏବଂ ଛାତ୍ରନେତାମାନଙ୍କ ଯୁକ୍ତି କାଟିବା ପାଇଁ ପ୍ରତିଯୁକ୍ତି କରନ୍ତି । ତର୍ଜମା କରିବାରେ ମଧ୍ୟ ଟିକିଏ ଏପଟ ସେପଟ କରିଦିଅନ୍ତି । ଛାତ୍ରନେତାମାନଙ୍କ ବକ୍ତବ୍ୟ ଥାଏ ଯେ ଦରମା ଦେଲାବାଲା ଓ ନେଲାବାଲା ଅର୍ଥାତ୍ ଛାତ୍ର ଓ ସରକାରଙ୍କ ମଧ୍ୟରେ ଏହା ଏକ ସଂଘର୍ଷ ଏବଂ ଦରମା ବଢ଼ାଇବା ଏକ ଶୋଷଣ ପ୍ରକ୍ରିୟା । ଅଧ୍ୟକ୍ଷଙ୍କର ବକ୍ତବ୍ୟ ଛାତ୍ର ଓ ଶିକ୍ଷକ ଉଭୟେ ଶିକ୍ଷାବ୍ରତୀ, ଏଣୁ ଗୋଟିଏ ଗୋଷ୍ଠୀ ଏବଂ ଶୋଷଣ ର ପ୍ରଶ୍ନ ନାହିଁ । ବ୍ୟୟ ବଢ଼ିଲେ ଆୟ ମଧ୍ୟ ବଢ଼ିବା ଉଚିତ । ଏପରି ଛାତ୍ରସଭା ଡକାଇ, ଯୁକ୍ତି କରି ଆନ୍ଦୋଳନର ଯଥାର୍ଥତା ନିରୂପଣ କରିବା ଗୋଟାଏ ସଂପୂର୍ଣ୍ଣ ନୂଆକଥା ।

ସେ କାଳରେ ଛାତ୍ରମାନଙ୍କ ଅଭିରୁଚି, ଶିଷ୍ଟତାର ଓ ଶୃଙ୍ଖଳାବୋଧ ଏକପ୍ରକାର ଉଚ୍ଚକୋଟୀର

ଥିଲା । କେବଳ ପି.ଏସ୍.ସୁନ୍ଦରମ୍ ଅଧ୍ୟକ୍ଷ ଥିବା ସମୟରେ ଗୋଟିଏ କି ଦିଓଟି ବ୍ୟତିକ୍ରମ ଆମ ଦୃଷ୍ଟିକୁ ଆସେ । ଏ ବିଷୟଟି ଏପରି ଯେ ଉଭୟ ପକ୍ଷକୁ ସମର୍ଥନ କରି ବହୁତ କିଛି କୁହାଯାଇ ପାରିବ । ସମଗ୍ର କଲେଜଟିକୁ କର୍ତ୍ତବ୍ୟ ଓ ଶୃଙ୍ଖଳାବୋଧରେ ଅନୁପ୍ରାଣିତ କରିବା ଅଧ୍ୟକ୍ଷ ହିସାବରେ ସୁନ୍ଦରମ୍‌ଙ୍କର ଅବଦାନ । ସେ ଜଣେ ଦକ୍ଷ ପ୍ରଶାସକ, ମାତ୍ର ତାଙ୍କ ଅନୁସୃତ ପ୍ରସାଶନର ଧାରଟି ଏକମାତ୍ର ଧାରା ନୁହେଁ। ପରୀକ୍ଷାର୍ଥୀମାନଙ୍କୁ ଆବଶ୍ୟକତା ଅନାବଶ୍ୟକତା ନିର୍ବିଶେଷରେ ସୌଚାଳୟକୁ ନ ଛାଡ଼ିବାରୁ ହିଁ ଜଣେ ଛାତ୍ର ଶୃଙ୍ଖଳା ଭଂଗକରି ପ୍ରତିବାଦ ଜଣାଇଲା । ପୂର୍ବାପର ଘଟଣା ବିଚାର ନକରି ଏହାକୁ ସ୍ପଷ୍ଟଭାବରେ ବିଶୃଙ୍ଖଳା ବୋଲି କହୁଯାଇ ନପାରେ । ଅଧ୍ୟକ୍ଷଙ୍କ ନିଷ୍ପତ୍ତିରେ ଆପତ୍ତି କରିଥିବାରୁ ସେ ଜଣେ ଛାତ୍ରକୁ ବହିଷ୍କୃତ କରନ୍ତି । ଏହି ଘଟଣାଟି ମଧ୍ୟ ବିଶୃଙ୍ଖଳାର ଦୃଷ୍ଟାନ୍ତ ହିସାବରେ ବିତର୍କର ବଳୟକୁ ଆସେ । ଶୃଙ୍ଖଳା ସେଇଠାରେ ସଫଳ ହୁଏ ଯେଉଁଠାରେ ଶ୍ରଦ୍ଧା ରହିଥାଏ ।

ସେ କାଳର କଥା କହିଲେ ସ୍ୱାଭାବିକ ଭାବରେ ଏ କାଳର କଥା କହିବାକୁ ପଡ଼େ । ଅନେକଙ୍କ ମତରେ ଏକାଳରେ ଛାତ୍ର-ଶିକ୍ଷକଙ୍କର ଅଭାବନୀୟ ଅବନତି ଘଟିଛି । ଛାତ୍ର ଓ ଶିକ୍ଷକ ଉଭୟଙ୍କ କ୍ଷେତ୍ରରେ ମୂଲ୍ୟବୋଧର ଅବକ୍ଷୟ ସହିତ ଶ୍ରଦ୍ଧା, ଶୁଚିତା, ସିଷ୍ଟାଚାର ଓ ଶୃଙ୍ଖଳାବୋଧର ବିର୍ପଯୟ ମାଡ଼ି ଆସୁଛି । ଏହା କାଳର ଗତି, ଉଣା ଅଧିକେ ସ୍ୱୀକାର କରିବାକୁ ପଡ଼ିବ । କିନ୍ତୁ ମୋ ମତରେ ଏହା ମଧ୍ୟ ସଂପୂର୍ଣ୍ଣ ଠିକ୍ ନୁହେଁ । ସ୍ଥାନ, ବ୍ୟକ୍ତି ଓ କ୍ଷେତ୍ର ବିଶେଷରେ ଏବେ ମଧ୍ୟ ଆଦର୍ଶ ସଂପର୍କଟି ସୁରକ୍ଷିତ ଅଛି । ଯାହା ସାଧାରଣରେ ପରିବ୍ୟାପ୍ତ ଥିଲା ତାହ ସୀମିତ ଅବସ୍ଥାରେ ବଜାୟ ଅଛି । ଏହା ମୋର ନିଜସ୍ୱ ଅନୁଭୂତି । ପରିଶେଷରେ ଏ କାଳର ଛାତ୍ର-ଶିକ୍ଷକ ସଂପର୍କରେ ଆମେ ଯେଉଁ ପରିବର୍ତ୍ତନ ଧାରାଟି ଲକ୍ଷ୍ୟକରୁ, ତାହାର କାରଣ ସନ୍ଧାନରେ ଧାଡ଼ିଏ କହିବି । ୧୯୫୧ର ଛାତ୍ର ଆନ୍ଦୋଳନ ଛାତ୍ର ସମାଜର ନୈରାଶ୍ୟବୋଧର ପ୍ରଥମ ସୂଚନା । ପଞ୍ଚମ ଦଶକରେ ଶିକ୍ଷକ ଓ ବୁଦ୍ଧିଜୀବୀ ସେମାନଙ୍କ ନେତୃତ୍ୱ ହରାଇ ବସନ୍ତି । ଶିକ୍ଷା ଜୀବିକାର୍ଜନର ସନ୍ଧାନ ଦେଇପାରେନାହିଁ। ସେହି ଆଳରେ ରାଜନୈତିକ ନେତା ଓ ସେମାନଙ୍କ ସହଯୋଗୀ ଏଇ ନେତୃତ୍ୱଟି ଛଡ଼ାଇ ନିଅନ୍ତି ଯାହା ଫଳରେ ଛାତ୍ର ଶିକ୍ଷକକୁ ଛାଡ଼ି ରାଜନୈତିକ ବ୍ୟକ୍ତିକୁ ଅନୁସରଣ କରେ । ସଂପର୍କର ଅବନତିର ଦ୍ୱିତୀୟ ପର୍ଯ୍ୟାୟ ଘଟେ ସପ୍ତମ ଓ ଅଷ୍ଟମ ଶତକରେ । ଯାନ୍ତ୍ରିକ ଅଭିବୃଦ୍ଧି ଫଳରେ ସହଜରେ ପୁସ୍ତକମାନ ସୁଲଭ ମୂଲ୍ୟରେ ମିଳିଯାଏ । ଶିକ୍ଷକ ତାର ବ୍ୟକ୍ତିଗତ ଗୁରୁତ୍ୱ ହରାଇ ବସେ । କ୍ଲାସ କରିବା ବଦଳରେ ଛାତ୍ର ପେପରବ୍ୟାକ୍ ବହି ଯୋଗାଡ଼ କରେ । ଛାତ୍ରମାନଙ୍କ ନେତୃତ୍ୱ ହରାଇ ଏବଂ ଶିକ୍ଷାଦାନର ଗୁରୁତ୍ୱ ହରାଇ ଶିକ୍ଷକ ସ୍ଥାଣୁ ପାଲଟି ଯାଏ । ଛାତ୍ର-ଶିକ୍ଷକ ସଂପର୍କର ପୁନରୁଦ୍ଧାର କରିବାକୁ ହେଲେ ଶିକ୍ଷକ ଓ ଛାତ୍ର ଉଭୟଙ୍କୁ ବ୍ୟକ୍ତିଗତ ସଂପର୍କ ଏବଂ ମୂଲ୍ୟବୋଧ ଭିତ୍ତିକ ଓ ବୌଦ୍ଧିକ ଆଦାନପ୍ରଦାନ ଉପରେ ଗୁରୁତ୍ୱ ଦେବାକୁ ହେବ ।

• 'ଲାବଣ୍ୟମ୍'
ଶହୀଦ ନଗର, ଭୁବନେଶ୍ୱର

# Listening to the Wind

*Jayanta Mohapatra*

One lives on with one's memories. As a human being I find a strange sense of fulfillment because of my memories, with the bonds I can have with the happenings of a seemingly forgotten past. And this grants me a completeness of living, I realize.

I will go back thirty-five years, to a time when I stood poised on the edge of this strong urge for the writing of poetry, when I wasn't sure I had either the strength or the talent to write them. I didn't know I would need the lifelong support of poetry for me to move ahead with my life. There had been a lot of turbulence in my personal life then. At this critical period of time I was posted as a Reader in Physics at the Fakir Mohan College in Baleswar. I had no idea where I was going to, and what I would do. I had only just begun writing poetry, and I was very unsure of myself.

The afternoon I reached the Baleswar Railway Station, I took a rickshaw straight to the college with the single handbag I carried. I didn't have anywhere definite to go. But the simple thought that I was in the birthplace of Fakir Mohan Senapati thrilled me. There seemed to be some unseen gaze in the air. And some voice in the atmosphere that kept whispering in my ears. Perhaps Baleswar would let me want some things in life I had not got until then. I did not know I would crave for words and for poetry so intensely, as I started settling down in my new surroundings.

I met the Principal, Professor K.P.A. Pillai, joined, my post and walked over to the department of physics . And I felt at home at once with my colleagues and the staff. I distinctly recollect the attendant Prahlada, who suggested that I spend the night in the laboratory instead of searching for lodgings in Baleswar.

Baleswar was both a village and a town in 1969. I couldn't shake off the feeling that I belonged there. The Dutch, the British, has all left their marks everywhere. Wherever I looked, I seemed to face a layer of history. There was a certain pride I experienced as I wandered about the ill-paved roads and breathed the air of Baleswar . It opened up a door for me to pass outward into a different realm of meaning.

The newness of Baleswar was exciting. Here, I was alone,



ରୌପ୍ୟ ଜୟନ୍ତୀ ପାଳନ ଅବସରରେ କଲେଜ ଅଧକ୍ଷ ରାମଚନ୍ଦ୍ର ପଟ୍ଟନାୟକଙ୍କ ସହ ଅନ୍ୟାନ୍ୟ ଅଧ୍ୟାପକ, ଛାତ୍ର ୟୁନିୟନ ଏବଂ ପୁରାତନ ଛାତ୍ର ସଂସଦର କର୍ମକର୍ତ୍ତାଗଣ

# ସ୍ମୃତିର ଚିତ୍ରଲିପି



ରୌପ୍ୟ ଜୟନ୍ତୀ ୧୯୭୧-୭୨ ପାଳନ ଅବସରରେ ଛାତ୍ରଛାତ୍ରୀ, ଜନସାଧାରଣ ତଥା ମହାବିଦ୍ୟାଳୟର ଶିକ୍ଷକ ଶିକ୍ଷୟିତ୍ରୀମାନଙ୍କୁ ଉଦ୍‌ବୋଧନ ଦେଉଛନ୍ତି ଓଡ଼ିଶାର ବରପୁତ୍ର ବିଜୁ ପଟ୍ଟନାୟକ



ରୌପ୍ୟ ଜୟନ୍ତୀ ୧୯୭୧-୭୨ ପାଳନ ଅବସରରେ ଛାତ୍ରଛାତ୍ରୀ ତଥା ଜନସାଧାରଣଙ୍କୁ ମୁଖ୍ୟ ଅତିଥି ପ୍ରଫେସର ମନ୍ମଥନାଥ ଦାସଙ୍କ ଉଦ୍‌ବୋଧନ

# ସ୍ମୃତିର ଚିତ୍ରଲିପି



ସୁବର୍ଣ୍ଣ ଜୟନ୍ତୀ (୧୫.୧.୯୫) ପାଳନ ଅବସରରେ ଅଧ୍ୟକ୍ଷ ଗୋପାଳ ଘୋଷଙ୍କ ଏବଂ ପୁରାତନ ଛାତ୍ର ସଂସଦର କର୍ମକର୍ତ୍ତାଙ୍କ ସହମୁଖ୍ୟ ଅତିଥି ଶ୍ରୀଯୁକ୍ତ ମନୋଜ ଦାସ





ସୁବର୍ଣ୍ଣ ଜୟନ୍ତୀ ପାଳନ ଅବସରରେ (୧୬.୧.୯୩) ସମ୍ମାନିତ ଅତିଥି ଡକ୍ଟର ମନ୍ମଥନାଥଙ୍କ ଉଦ୍‌ବୋଧନ



ପୁରାତନ ଛାତ୍ର ସଂସଦ ପକ୍ଷରୁ ସ୍ୱାଧୀନତା ସଂଗ୍ରାମୀ ରବୀନ୍ଦ୍ର ମୋହନ ଦାସଙ୍କ ଦ୍ୱାରା ବିଦାୟୀ ଅଧ୍ୟକ୍ଷ ଡକ୍ଟର ଦେବେନ୍ଦ୍ରନାଥ ରାଉତଙ୍କୁ ବିଦାୟ ସମ୍ବର୍ଦ୍ଧନା

## ସ୍ମୃତିର ଚିତ୍ରଲିପି



ପୁରାତନ ଛାତ୍ର ସଂସଦର ଦ୍ୱିତୀୟ ବାର୍ଷିକ ସମାରୋହ (୨୧.୧.୯୬) ଅବସରରେ ମୁଖ୍ୟ ଅତିଥି ଉତ୍କଳ ବିଶ୍ୱବିଦ୍ୟାଳୟର କୁଳପତି ପ୍ରଫେସର ଡକ୍ଟର ଗୌରକିଶୋର ଦାସଙ୍କ ସହ ଅଧ୍ୟକ୍ଷ ଗୋପାଳ ଘୋଷ, ସଭାପତି ପ୍ରଫେସର ପ୍ରଫୁଲ୍ଲ କୁମାର ରଥ, ସଂପାଦକ ଡକ୍ଟର ରମାକାନ୍ତ ନାୟକ, କୋଷାଧ୍ୟକ୍ଷ ସୁବାସ ଚନ୍ଦ୍ର ପାତ୍ର, ସଂସଦର ଅନ୍ୟ କର୍ମକର୍ତ୍ତା – ଆଡ୍‌ଭୋକେଟ୍ ଚନ୍ଦ୍ରକୁମାର ମହାନ୍ତି, ଡକ୍ଟର ପ୍ରହ୍ଲାଦ ଚରଣ ମହାନ୍ତି, ମହେଶ୍ୱର ବାଗ ଓ ଡଃ ହରିଶ୍ଚନ୍ଦ୍ର ଜେନା ପ୍ରମୁଖ



ସୁବର୍ଣ୍ଣ ଜୟନ୍ତୀ ପାଳନ (୧୫.୧.୯୫) ଅବସରରେ ମୁଖ୍ୟ ଅତିଥି ତଥା କଲେଜର ପୁରାତନ ଛାତ୍ର ଶ୍ରୀଯୁକ୍ତ ମନୋଜ ଦାସଙ୍କ ଅନୁଷ୍ଠାନକୁ ବିନମ୍ର ଶ୍ରଦ୍ଧାଂଜଳି



ସୁବର୍ଣ୍ଣ ଜୟନ୍ତୀ ପାଳନ (୧୬.୧.୯୫) ଅବସରରେ ମୁଖ୍ୟ ଅତିଥି ଇସ୍ରାଏଲର ରାଷ୍ଟ୍ରଦୂତ ଇଫ୍ରାଏମ ଭାଉଏଙ୍କ ଉଦ୍‌ବୋଧନ




ପୁରାତନ ଛାତ୍ର ସଂସଦର ତୃତୀୟ ବାର୍ଷିକ ସମାରୋହ, ଜାନୁଆରୀ ୧୯୯୭ରେ ମୁଖ୍ୟ ଅତିଥି ଶ୍ରୀଯୁକ୍ତ ଗଙ୍ଗାଧର ରଥଙ୍କ ସହ ଅଧ୍ୟକ୍ଷ ପ୍ରଫେସର ଗୋପାଳ ଘୋଷ, ସଭାପତି ପ୍ରଫେସର ପ୍ରଫୁଲ୍ଲ କୁମାର ରଥ ଓ ସଂପାଦକ ଡକ୍ଟର ରମାକାନ୍ତ ନାୟକ



ଚତୁର୍ଥ ବାର୍ଷିକ ସମାରୋହ (ଜାନୁଆରୀ, ୧୯୯୮) ପାଳନ ଅବସରରେ କଲେଜ ହଲ୍ ସମ୍ମୁଖରେ ମୁଖ୍ୟ ଅତିଥି ବାଙ୍କ ବିହାରୀ ଦାସ, ସମ୍ମାନିତ ଅତିଥି ପ୍ରଫେସର ତ୍ରିଲୋଚନ ମିଶ୍ରଙ୍କ ଗହଣରେ ସଂସଦର କର୍ମକର୍ତ୍ତାଗଣ

# ସ୍ମୃତିର ଚିତ୍ରଲିପି



ସଂସଦର ୫ମ ବାର୍ଷିକ ସମାରୋହ (୭.୨.୯୯) ପାଳନ ଅବସରରେ ବିଶିଷ୍ଟ ଶିକ୍ଷାବିତ୍
ଡକ୍ଟର ମନ୍ମଥନାଥ କୁଣ୍ଡୁଙ୍କ ଅଭିଭାଷଣ




ସଂସଦର ୬ଷ୍ଠ ବାର୍ଷିକ ସମାରୋହ ପାଳନ ଅବସରରେ ମୁଖ୍ୟ ଅତିଥି ଶ୍ରୀଯୁକ୍ତ ରମାକାନ୍ତ ରଥ,
ସମ୍ମାନିତ ଅତିଥି ଡକ୍ଟର ଶିଶିର କୁମାର ଦାସଙ୍କ ସହ ଅଧ୍ୟକ୍ଷ ଡକ୍ଟର ହରିଦାସ ଦତ୍ତ, ସଭାପତି ପ୍ରଫେସର
ପ୍ରଫୁଲ୍ଲ କୁମାର ରଥ, ଉପସଭାପତି ମହେଶ୍ୱର ବାଗ ଓ ସଂପାଦକ ଡକ୍ଟର ରମାକାନ୍ତ ନାୟକ



ସଂସଦର ୭ମ ବାର୍ଷିକ ସମାରୋହ (୪.୨.୨୦୦୧) ପାଳନ ଅବସରରେ ମୁଖ୍ୟ ଅତିଥି ସାଂସଦ ଖାରବେଳ ସ୍ୱାଇଁ ଓ ସମ୍ମାନିତ ଅତିଥି ପୂର୍ବତନ ଅଧ୍ୟକ୍ଷ ପ୍ରଫେସର କୃଷ୍ଣକାନ୍ତ ଦାସଙ୍କ ଗହଣରେ ରବୀନ୍ଦ୍ର ମୋହନ ଦାସ, ଚନ୍ଦ୍ରକୁମାର ମହାନ୍ତି, ବ୍ରଜନାଥ ରଥ, ଅଧ୍ୟକ୍ଷ ତରୁଣ କୁମାର ସିହ୍ନା, ସଭାପତି ପ୍ରଫେସର ପ୍ରଫୁଲ୍ଲ କୁମାର ରଥ ଓ ସଂପାଦକ ଡକ୍ଟର ରମାକାନ୍ତ ନାୟକ ପ୍ରମୁଖ



ସଂସଦର ୮ମ ବାର୍ଷିକ ସମାରୋହ (୨୦.୧.୨୦୦୨) ପାଳନ ଅବସରରେ ମୁଖ୍ୟ ଅତିଥି 'ସମ୍ବାଦ'ର ସଂପାଦକ ସୌମ୍ୟରଂଜନ ପଟ୍ଟନାୟକଙ୍କ ଦ୍ୱାରା ଫକୀରମୋହନଙ୍କ ତୈଳଚିତ୍ର ସମ୍ମୁଖରେ ପ୍ରଦୀପ ପ୍ରଜ୍ୱଳନ

living in a kind of mess close to the college with three of my colleagues, yet I did not feel lonely or isolated. I hadn't brought my wife along with me so as not to disrupt the studies of our only son who was in a school in Cuttack. I felt I was riding a new wave of life. There was a freedom I sensed when I looked up at the random stars or sat by myself on the bank of the Budhabolonga, watching the tide go back and the level of the river fall. I watched as the mud-skippers danced into the slime at the tide's edge. There was a repose here, a dream-like silence that sat inside my heart.

This mysterious world opened up new feelings. I was also learning to write poetry. I spent almost all my time in the college, setting up new experiments for the Physics Honours students. And when I was free from Physics teaching, I turned to the college library for sustenance. Here I found old copies of The Times Literary Supplement (London) and other literary periodicals, from which I learnt much. To my good fortune (I do consider it as such), the Principal Professor Pillai entrusted me with the editorship of The Fakir, the yearly college magazine. It was a first time for me, for I did not know what editing was; and it was the first time that a man with a science background had been given such a task.

I was happy with my assignment. It seemed to be a recognition of my abilities. I was truly thankful. I had not forgotten that at Bhubaneswar and Cuttack, college teachers of English were wary about my writing. And I realized I had to work hard to complete the job, I had to reach deeper into myself in order that the Fakir wouldn't be a failure .

Today there is much to remember and to write. This is certain: that both the college and the place helped me to overcome my inherent temperamentalness. They urged me on toward a positive direction in life — and I began to write and live in earnest.

Here it was too that I submitted a poem to an international poetry contest- held in London and which won me my first recognition as a poet, the Second Prize with a 200-dollar cheque. Here too, I wrote some of my more fulfilling poems, from my aimless wanderings around Baleswar and Chandipur. A poem titled "The Abandoned British Cemetery at Balasore" was also published by Professor C. B. Cox in his distinguished journal Critical Quarterly in England.

Each little event, each voice, each sunset, each moment of pain or joy, add up toward an understanding of the total

meaning of the world. And so it is that my time at Fakir Mohan College in Baleswar gave me an inner strength to pursue my poetic career. The drifts of life adopt one. And at this stage of my life I realize that hadn't the then-DPI, Professor Bidhu Bhusan Das transferred me from the BJB College Bhubaneswar (where a post of Reader was vacant) to the F.M. College, Baleswar in 1969, I wouldn't have been where I find myself now.

In Cuttack, today, two hundred kilometers away, as I sit under the mango tree, I can still hear the slow sweep of the tide along the Budhabolonga, and hear the pheasant's sombre call from the bushes, and the voices of my old students. Time must be wearing away the graves and the broken crosses of the young dead English girls in the old cemetery, but I know young boys and girls shall go on trembling like green stalks in the paddy fields when the gentle wind of Fakir Mohan's words blows across the land.

• Tinkonia Bagicha,
Cuttack

# Down the Memory Lane

*Dr. Shree Gopal Mohanty*

The thrill of entering a college was sky high. But the concern about my limitation to jump into an arena different from my village school surrounding was equally deep. True to my apprehension, I faced V. V. John's English lectures without understanding a word. Yet I was drawn to the college for being the symbol of higher learning. Its tall auditorium hall uplifted my spirit from my diminutive existence in Nua Bazar. There in that hall, I attended a good many lectures by Sj. Khitish Dev, Trilochan Mishra, Gopal Patnaik, Ram Patnaik and others; wrote my tests and examinations, listened to learned talks by eminent scholars like Suniti Chatterji, and witnessed cultural programmes by renowned artists like Shankar Purohit.

While the hall provided the projection of expanded space and vastness, it was the small southeast corner room, where invariably all Mathematics classes were held, gave a sense of comfort and security among a very limited number of classmates. My interest in Mathematics undoubtedly became stronger in this room under the personal guidance of several teachers, more particularly by Sj. Shiba Kumar Panda. For me, he was a village "abadhana" - an able and affectionate guru.

There were others. Not only they taught us, but often guided us through our turbulent and fragile state of adolescence. In a seemingly difficult stage of my transition, I had a God-given opportunity to be closely associated with Sj. Trilochan Mishra, who joined the college soon after a year of my entrance. He treated me as his younger brother and became my mentor in every sense of the word during my college days and later. This closeness had its natural origin in that he happened to be a student of my father in his childhood days. On one hand, Shiba Babu nurtured my passion for Mathematics and on the other hand, Trilochan Babu carefully tutored to strengthen me in English, my weakest subject. Its net result was a great boon for me that I passed B.A. (Hons) in first class securing the first position in Mathematics among those from Arts stream. Should I say I was damn Lucky !

Lucky yes. More than that was the prevalence of a genuine attitude of sincerity, culture of helpfulness and to certain degree

and economic: local, national and international. The discussions sometimes continued till the wee hours of the night without any rancor or ill feeling. Himansu was extremely committed ideologically and enjoyed every bit of our differences. In short we agreed to disagree on almost all matters. Himansu used to visit his village very often as he was from north Balasore. Each time he returned from his village, he brought the dry snacks prepared by his mother in large quantities to last a few months at least till his next visit. The snacks never lasted for more than a couple of days as Durga and I liberally drew upon the stock and even freely distributed to other friends and opponents of Student Federation of India. Himansu never grudged it and never expressed annoyance and carried on the relationship as usual.

Among other inmates of the hostel was Parsuram Panigrahi, who is presently a member in the Orissa Assembly. He never took any active interest in student politics then. His cousin Bijay has retired as Chief Engineer in Govt. Of Orissa.

They were serious students and following Science stream. Consequently they had more homework to do as against the free time we had to indulge in other activities. Prasanna Mishra was another inmate who is now a leading writer in Oriya. Prasanna and Durga always raced from the hostel to the dining hall, to have an extra helping of food from the cook. Both of them successfully cajoled, corrupted, and coerced the cook to show them unusual favour while serving food. It was all fun. No one resented this oneupmanship. Eatables and consumables were shared without much fuss. I remember how the BG Phos tonic sent by my mother regularly for my health was mostly consumed by other inmates without even a nod for approval or consent from my side. We were always short of money and journey to home periodically necessitated borrowing from others.

My NCC days were very interesting, though limited. I had to join in order to get hostel accommodation. The NCC drill in the beginning was rather difficult. My biggest problem was how to put my feet into shoes which was not exactly my size and perhaps made of hard leather. I remember it used to take almost 15 to 20 minutes to struggle with the shoes before going to the parade. In the beginning the NCC discipline did not arouse any interest in me and I was indifferent to the lessons. However, the greatest attraction was the wholesome snacks and sweets being served after the exercise.

We attended a summer camp somewhere near Khurda. It happened to be a joint camp of boys and girls. I remember the

large contingent from S.B. Women's College. It was a unique experiment keeping in view the conservative outlook and prevailing traditions then in Orissa. However, everything went off well and both boys and girls could mix socially and conducted themselves with dignity. It was a big surprise to me when I was selected as one of the escorts to lead the chief guest in a slow march for the guard of honour. Who recommended my name for the job and with what objective in view remains a mystery to me. On return to the College after summer vacation I was thrilled to see in the college notice board an order indicating my promotion in the NCC as LCPL. We had a very capable and friendly NCC officer Mr. D.K. Nanda who was lecturer in Zoology. He motivated many of us to take NCC seriously.

I had to participate in another camp before leaving the college as minimum attendance was mandatory to enable to appear in the examination. The camp was held somewhere near Choudwar and my participation in the evening entertainment programme was a big hit with all the NCC cadets. I enacted Johny Walker's song from the film "Pyassa". Later in the night it was repeated inadvertently by some innocent cadets after the dinner near one of the tents housing cadets from Sambalpur District. This was somehow misinterpreted leading to tension between the two groups of cadets. The officer In-charge very tactfully defused the situation and as a punishment all the cadets attending the camp were ordered to march 15 kilometers with haversack and rifle. It was quite a punishment and remembered by all and helped to not only defuse the situation but also renew the friendship. Suffering brought every one to realize the folly. That was my last association with NCC but it helped me develop a sense of time management, sense of belongingness to a group, discipline, as also a smart gait.

We had very healthy and tough competition among the students. Due to the encouragement of my friends, I played and represented the College both in football and Cricket. Those were times when indulgence in sports and games was not encouraged by the family lest it may affect studies. Unlike now-a-days sports alone never offered job opportunities. I came to Cuttack to participate in Inter-college football tournament and preferred to stay with other team mates rather than with my family residing in Cuttack those days. I was good in table tennis and missed some of my classes which could be attributed to my addiction to table tennis. My constant companion in table tennis was a

Gujarati boy - Harsad Doshi belonging to a business family of Balasore and Niladri who joined the State Bank later.

Then finally came the annual competitions for the essay, short story, poem and elocution. I was not very confident in the beginning as there were many capable competitors but in order to asses my ability, I participated in all and to the surprise of all concerned won prizes in all of them. The theme of my poem for the competition was loneliness of Laica- the dog that orbited in space in the Russian space ship Sputnik, forerunner of Challenger etc. long before the landing of man on the moon. That was a pathbreaking event reflecting human kind's aspiration, dream and endeavour. This brought me to the limelight and made me quite popular and a soughtafter personality. This also groomed me to be an amateur singer and I became a member of the contingent to participate in inter-college youth festival. Consequently, some of the student organizations contemplated to support me in the next college union election. That was not to be as I left the college to join an honours class in Ravenshaw College. Late Samarendra Kundu who belonged to Balasore once invited me to his house and we had a very long discussion on the need for consolidating student movement in Orissa and to organize a democratic, secular and socialist student front. I was somehow by inclination a liberal democrat and got involved in student politics and became the president of Utkal Union of Students at a later stage. Results of college union election in 50s were not influenced by money and muscle power. It was more on personal popularity, oratory and ideological inclination. Of course, there was little bit of regionalism.

The College authorities in those days organised excursion for students at subsidized rates. I joined the group led by history professor Sri N. K , Mishra to visit South and Western India. Travelling by Train was not that easy or comfortable those days and reservation of berth was next to impossible from Balasore. Somehow we managed. Our itinerary included Vizag, Madras, Bangalore, Mysore, Bombay, Pune, Aurangabad, Ajanta and Ellora. We could see ports at Vizag and Bombay getting an idea of the infrastructure then existing. Production of atomic energy and research in Bombay, and national chemical laboratories, military academy in Pune, also small scale industries in Karnatak alongwith palaces in Mysore and frescos and temple in Ajanta and Ellora. In retrospect, I think this was an excellent itinerary for students making them familiar with both old and new India.

During those years Hirakud Dam was also dedicated to

the nation as modern temple of India by Jawahararlal Nehru. This event had aroused lot of interest and expectations amongst us. All the hostel inmates had gathered around the old radio in the common room of the hostel to listen to proceedings of the event and the speech of former Prime Minister. It was a very inspiring speech and we were hopeful that the dam will bring prosperity to Orissa and lay the foundation of a modern economy and will save people of Orissa from the usual natural calamities like flood etc. Radio was then the only contact with the outside world. That was an era without television, cellular telephone, DVD, VCD, cordless telephone, computer, supersonic jets and rest of the technological miracles which we see today.

Principal Prahlad Pradhan - simple, erudite, dhoticlad was always with a smile. His room was opened for all. We had also Mr. A. K. Bir, again user of spotless white dhoti and kurta. As against this, we had Prof. N. K. Misra and others who were immaculately dressed in western style. Dress was then indicative of preferences and not symbol of status.

As I look back - life was simple and less complicated. We were not bereft of emotion, sentiment, innocence. There was more camaraderie and fellow feeling with healthy competitions. Fakir Mohan College provided opportunities for many of us to shape our outlook and destiny.

• Former Ambassador of India

# Fond Memories Of My Almamater

*Dr. Harish Chandra Jena*

Get lost from my class and do not enter again. I was puzzled and looking here and there to know to whom the teacher is aiming. "Mr. ..where are you looking ? I ask you to leave my class." I was really astonished to know such unusual order of my professor. This happened so suddenly, no body could know anything.

It was Aug. 1955, Sri Khitish Ch. Dev, Lecturer in English was taking English class and was teaching Enocharden, an non-detailed study. I was sitting in the third line. First line was meant for girl students (number was only six) and second line was meant for local students or the students passing out from the Zilla School because most of them were having extra curricular activities. My teacher was completely emotional and almost dancing while teaching when a paper-made rocket hit his forehead. It was thrown from the back bench and just crossed over my head. Naturally my teacher took it for granted that I am the culprit. I had to abide by his order calmly. He used to take two classes per week and I was not allowed to attend his classes. In our time we did not miss a single class unless some unavoidable circumstances arose. While he was taking the class I used to stand on the verandah by the side of a window of the class room from which I was listening to his lecture. One month passed on this way. When he could see me standing there, he came running and threatened to take me to the principal (Prof. Prahallad Pradhan) for disciplinary action. There was a lot of noise and my friend Sri Gour Gopal Dandpat came forward.. He was very brilliant and daring and was in the habit of harassing girls. He confessed politely before Sri Dev, that on that day he was throwing the rocket to first line and unfortunately that hit him. He requested Sri Dev in an apologetic manner to punish him instead of punshing an innocent boy (me).

I remembered the face of my lecturer. It was pale and gloomy. He asked me why I did not protest his illegal order. I was just sobbing. He took me to the class room and asked me to sit in the first bench and announced that he is very sorry for this. He also pardoned Dandpat on that day. This naughty Dandpat is no one else, but our beloved friend Dr. Gour Gopal Dandpat who just returned one year back as Secretary University Grants

Commission, New Delhi. In our time specially the students from peripheral school were very much afraid of facing the teachers and hardly they got the opportunity of seeing the principal from close proximately.

In North Hostel Sitaram Nayk, Chittaranjan Sahu, Benudhar Tripathy and myself were allotted single rooms in IIyr science. N.C. C was compulsory for hostelers. Captain Bhubananda Ray was the superintendent of the hostel. We four students were very much disinterested in N.C.C. Under Officer Sri Sudarsan Naik (present President of Alumni Association, F.M. College) and Arun Pattaniak were terror personified. Nepalese N.C.C. demonstrators were more frightening for us. Irrespective of the size of the foot, big shoes were provided. Benudhar was a short stature boy. One Sunday morning he was late in attending the N.C.C. class. He was asked by the demonstrator for double march. After few rounds he fell down and was crying loudly. Though we had the tremendous desire to see him from close range but were not allowed. Anyhow we stood in a line. Benudhar wanted his shoes to be removed. To our surprise a mouse was found inside and being tortured had bitten the feet all over. He tolerated the pain of the biting and could not open his mouth out of fear.

• Tarini Nursing Home
Balasore

# My Principals, Teachers and Friends at F. M. College (1959-65)

*Bankim Chandra Moharana*

The year 1959 saw the restructuring of the under - graduate classes of Utkal university. The first year, the Pre-University year started in the academic session 1959 - 60. The next year course was named first year degree course .For science stream it was also known as pre-professional course, for it led the student to professional careers like engineering and medical. The next two years were named as second year degree and third year degree course respectively. There was university examination at the end of each year. There was no burden of curricula of two years. A one-year course was less burdensome. Students heaved sigh of relief at the end of each year.

Ours was the first batch of pre-university class. In the science stream, we were 128 in number and there were 20 boys and girls who had had first division in their high school career. The college science gallery could accommodate only 128 students and the laboratories 16 students in a batch. A small botanical garden, a small reserve of guinea-pigs and toads for experiment and a photography room were the pride possessions of the science portion of the college. The gas tank had its majestic presence in a corner of the campus. There were no B. Sc. classes.

But, we never felt that we were in a small or junior college. Under the undiluted tutelage of brilliant teaching personnel, we felt we were at safe hands. Sri M.A. John, the principal, was taking zoology class quite eagerly. A peon used to sit there behind the door all through the period. He cleaned the black-board before the principal came, did so in the middle when he felt that the chalk-work on it was no more necessary and after the principal had left the class, he cleaned the board once again and left. The class looked like a principal's class.

Dr. Trinath Ratho had just returned from Germany. But quite gladly he took P. U. classes in physics. The job, he thought, was no small. He had his brilliant Ph.D. Principal Ajoy Ch. Bir (may his tribe increase), joined the college after M. A. John, took

classes in physics without fail, but he did away with the presence of a peon during the class-time. It was quite a different picture to see a principal clad in khadar dhoti and punjabi, dusting his hands and rubbing the black-board himself. We knew he was a scholar in his subject, a strict disciplinarian and a man of method.

Their brilliant academic career apart, they were punctual and regular teachers, quite aware of the need of the students under their care. Poor students like me never felt helpless. Brilliant students, never felt that their thirst went unquenched. Let me cite the example of Late-lamented Rajkishore Roy, a doyen of Oriya literature. He was on transfer from F. M. College. The farewell-giving ceremony was to be held on Saturday. But in the first period that day, in the early hours of forenoon at 7 A. M, he took the first class in M.I.L. in P. U. Sc. class and taught zealously the poem 'SHIVAJINKA UTSAHA BANI" with his usual style. His artistic stature, his grave tone, his rectangular eyes were all impressive. What a seriousness!

I reminisce our first class in Math. It was being taught by Smt. Sindhu Devi, who later retired as Principal K. K Women's College, Balasore. Wrapped in spotless white saree she came like a Sadhwee to the class and with no loss of time started her discourse on Variation .The book authored by Mukherjee was with her. And the boys started whispering, side-pushing to see a young lady as their teacher. But there she taught unperturbed knowing that this was only a temporary phase. She broke her teaching in the middle and asked her first question to me. My answer was prompt and correct. She looked at me from under her lenses and turned to face the board and resumed teaching. Our tutorial class in Math was also under her care. There were periodical assessments and 20 marks out of 100 of the paper were to be drawn from these assessments for final calculation of score in the paper. When I scored 18/20 in all her assignments, she was pleased. Often I went to her residence on Arta Kabiraj Road to clear my doubts and to do some advance studies. Her help is to be seen to be believed. I adore her as my mother till today. I am fortunate to have a teacher like her. I owe all my success in Math to her and to her only.

Today when, as matured person, we evaluate them their goodnesses stand the test. What more for a teacher !

I have spoken only a few words about the teachers of those days. And friends? My friends were kind to a poor student like me. I was too poor to arrange two meals a day, I had to go to every nook and corner of the town for private tuition. With the

paltry sum I could pay for my night meal. Friends, by turn, invited me for the meal at 11 AM when the college classes were over. Sometimes local friends invited me to their home on festive occasions to save me from the agony of arranging my food. I had no text books . I had no wherewithal to own them. I shared the books of my friends. Even the friends who competed with me in studies did not hide any book from me.

It was time to fill up the forms and deposit fees for the Ist. yr. Degree Exam, 1961. My scholarship sum had not reached the college. Wherefrom to arrange the exam fees? How to maintain for two to three months after the test Exam? How to have study materials like paper, aid-books etc.? Another strange thing happened which added much to my misery. I had private tuition at Sunhat. I used to put on half-pants, for I had no money for trousers. The elder brother of the girl was an advocate of repute. One evening he told me to come to the tuition session with trousers, for it was not proper for a young man to sit before a growing girl with half pants on. It was through reasonable but beyond my means to comply with and much to my distress the only source of income went out.

Vexed with these problems I decide to give up my studies, I came home bag and baggage. Nothing I could do to sort out the problem which was indeed a hard nut to crack. And lo ! One fine warm noon of January I saw my friend Susil Kumar Mohapatra, with my father in our village market . I was depressed to see Susil, a dear fried of mine, with a letter from Prasanna Das Chouwdhary, another beloved friend. Along with it he carried the message from my revered teacher Capt. Dhirendra Kumar Nanda, Lecturer in Zoology that my scholarship sum up to Dec has come. Mr. Karunakar Panigrahi, an M.L.A of that time had arranged a sum of seventy rupees from the District Flood Relief fund for me. Capt. Nanda had told Sushil to take me back to the college to fill the form for the examination paying default fine.

I felt as if Captain Nanda is commanding me with his usual N.C.C. Officer style to halt drifting from the career making path, make an about-turn and march doubly back to the college. I did so and Sushil brought me back. I filled up the form next day. Captain Nanda with his broad smile thanked me for my return but not without mild reproach for my being irresponsible. But a more surprising offer awaited me. Sushil's father, who was an LMP doctor of that time, offered a room of his house to stay there till the exam was over and I was asked to have my food everyday

